# ମୁଖବନ୍ଧ

ମାଲୟାଲମ-ସାହିତ୍ୟ ଏବଂ ଉପନ୍ୟାସ ଲେଖକମାନଙ୍କ ମଧ୍ୟରେ ଶ୍ରୀ ପି.କେଶବଦେବଙ୍କ ସ୍ଥାନ ଖୁବ୍ ଉଚ୍ଚରେ । ତାଙ୍କର 'କାନ୍ନାଡି' (ଆଇନା) ନାମକ ଉପନ୍ୟାସର ଭୂମିକା ଲେଖିବାରେ ମୁଁ ଅତ୍ୟନ୍ତ ଗର୍ବ ଅନୁଭବ କରୁଛି । କାରଣ ବାସ୍ତବରେ କେଶବଦେବ ଭୂମିକା ବା ଭୂମିକା ଲେଖକଙ୍କ ଉପରେ ବିଶ୍ୱାସ ରଖନ୍ତି ନାହିଁ । ତାଙ୍କର ଦାବୀ ଏତିକି ଯେ କେହି ଯଦି ତାଙ୍କର ପୁସ୍ତକ ଗୁଡିକର ମୁଖବନ୍ଧ ଲେଖିପାରେ ତେବେ ସେ କେବଳ ନିଜେ । ସମାଲୋଚନା ସାହିତ୍ୟ ସୃଷ୍ଟିରେ ସହାୟକ ହୁଏ ନାହିଁ ବୋଲି ତାଙ୍କର ବିଶ୍ୱାସ । ତେଣୁ ତାଙ୍କର ଏହି ରଚନାର ଭୂମିକା ଲେଖିବାରେ ମୁଁ ଗୌରବ ଅନୁଭବ କରୁଛି । କିନ୍ତୁ ମୁଁ ଏଠାରେ ସ୍ପଷ୍ଟ ଭାବରେ କହିବାକୁ ଚାହେଁ ଯେ, ତକାଷିଙ୍କର 'ଏଣିପପଡିକଲ', ଏମ୍.ଟି. ବାସୁଦେବନ୍ ନାୟାରଙ୍କର 'ନାଲୁକେଟ୍ଟୁ, ପାରପୁରତ୍ତୁଙ୍କର 'ଅରନାଷିକନେରମ୍' ଆଦି ରଚନା ଭଳି କେଶବଦେବଙ୍କ 'କାନ୍ନାଡି' ଅନ୍ୟ ଯେ କୌଣସି ପ୍ରାଦେଶିକ ଭାଷାରେ ଅନୁବାଦ କରିବା ଯୋଗ୍ୟ ନୁହେଁ । ଏ ଭଳି ରଚନା 'ଅୟଲକ୍କାର' ବା ' ଓଡୟିଲ୍କ ନିନ୍ନୁ' ସହିତ ତୁଳନା କରାଯାଇପାରେ । ଏ ଦୁଇଟି ହେଉଛି କେଶବଦେବଙ୍କ ସଫଳ ସୃଷ୍ଟି । ଏବଂ ଏ ଦୁଇଟି ସୃଷ୍ଟି ପାଇଁ ସେ ଚିରସ୍ମରଣୀୟ । 'କାନ୍ନାଡି' ହେଉଛି ତାଙ୍କ ସାହିତ୍ୟ ଉପାସନାର ପରିଚାୟକ ମାତ୍ର । ସେଥିରେ କେଶବଦେବଙ୍କ ବ୍ୟକ୍ତିତ୍ୱ ନାହିଁ ବୋଲି କହିବା ଭୁଲ ହେବ । ମୋ କହିବାର ତାତ୍ପର୍ଯ୍ୟ ଏହି ଯେ ଏ ପୁସ୍ତକଟି କେଶବଦେବଙ୍କ ବହୁମୁଖୀ ପ୍ରତିଭାକୁ ଦେଖାଇବାରେ ସମ୍ପୂର୍ଣ୍ଣ ସମର୍ଥ ହୋଇପାରିନାହିଁ । ବୋଧହୁଏ କୌଣସି ଟେକନିକାଲ ବା ଅନ୍ୟାନ୍ୟ କିଛି ଅସୁବିଧା ଯୋଗୁଁ ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ ତାଙ୍କର ସେ ଦୁଇଟି ବହି ନିର୍ବାଚିତ କରିବାକୁ ସକ୍ଷମ ହୋଇ ପାରିନାହାନ୍ତି ।

1904 ମସିହା ଅଗଷ୍ଟ ମାସରେ ଜନ୍ମ ହୋଇଥିବା ନଲେଙ୍ଗତ୍ତୁ ପଦ୍ମନାଭ ପିଲ୍ଲେ କେଶବ ପିଲ୍ଲେ ପରେ 'କେଶବଦେବ' ନାମରେ ପରିଚିତ ହୋଇଥିଲେ (କେଶବଦେବଙ୍କ ଜନ୍ମତାରିଖ ପ୍ରକାଶ କରିଥିବାରୁ ସେ ଯେପରି ମୋ ଉପରେ ଅସନ୍ତୁଷ୍ଟ ନ ହୁଅନ୍ତି) । ଅବଶ୍ୟ ଏହା ପଛରେ ଗୋଟିଏ କାହାଣୀ ରହିଛି । କେଶବଦେବଙ୍କୁ ଯେତେବେଳେ ଅଠରବର୍ଷ ବୟସ, ସେତେବେଳେ ସେ ଆର୍ଯ୍ୟ ସମାଜରେ ଯୋଗ ଦେଇଥିଲେ । ସମାଜର ଅନାଚାର ଏବଂ ଅନୀତି ବିରୁଦ୍ଧରେ ଲଢ଼ିବା ସକାଶେ ଥିବା ଅଦମ୍ୟ ଲାଳସା ହୁଏତ ତାଙ୍କୁ ଏହା କରିବା ପାଇଁ ପ୍ରେରଣା ଯୋଗାଇ ଥାଇପାରେ । ଆର୍ଯ୍ୟ ସମାଜରେ ଯୋଗଦେବା ସମୟରେ ସେତେବେଳେ ସଦସ୍ୟ ମାନଙ୍କୁ ନୂଆ ନାମ ନେବାର ବିଧି ପ୍ରଚଳିତ ଥିଲା । ସେ ଅନୁସାରେ ସଂସ୍ଥାର କର୍ମକର୍ତ୍ତା ତାଙ୍କୁ ଋଷିରାମ ପଚାରିଲେ –

''ଆପଣ 'ଦେବ' ହେବାକୁ ଚାହୁଁଛନ୍ତି ନା 'ଦାସ' ହେବାକୁ ଇଚ୍ଛା କରୁଛନ୍ତି ?''

ହଠାତ୍ କେଶବ ପିଲ୍ଲେ ଉତ୍ତର ଦେଲେ –

''ମୁଁ ଦେବ ହେବାକୁ ଚାହେଁ, ଦାସ ନୁହେଁ ।''

ଏ ଘଟଣା ଏଠାରେ ଅବତାରଣା କରିବାର ଉଦ୍ଦେଶ୍ୟ ହେଉଛି, ଏହା ପରବର୍ତ୍ତୀ ଅବସ୍ଥାରେ କେଶବଦେବଙ୍କ ଜୀବନ ତଥା ସାହିତ୍ୟ ସାଧନା ଉପରେ ଆଲୋକପାତ କରିପାରେ । କେଶବଦେବ ହେଉଛନ୍ତି ବିରୋଧ ବା ପ୍ରତିବାଦର ନେତା । ବିରୋଧ କରିବା ବା ପ୍ରତିବାଦ କରିବା ହିଁ ତାଙ୍କର ନୀତି । ଯେଉଁ କେଶବଦେବ ପ୍ରଥମେ କେରଳ କମ୍ୟୁନିଷ୍ଟ ପାର୍ଟିର ଜଣେ ପ୍ରଚାରକ ଥିଲେ, ସେହି କେଶବଦେବ ପରେ ତାହାର ଜଣେ ମୁଖ୍ୟ ବିରୋଧୀ ହୋଇଗଲେ । ଦିନ ଥିଲା ଯେତେବେଳେ ସେ ସାହିତ୍ୟିକମାନଙ୍କୁ ପୁରସ୍କାର ବା "ଆଓ୍ବାର୍ଡ" ଦେବା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ କିନ୍ତୁ ପରେ ସେ ନିଜେ କେନ୍ଦ୍ରୀୟ ସାହିତ୍ୟ ଏକାଡେମୀର ପୁରସ୍କାର ଗ୍ରହଣ କରିନେଲେ । ବୋଧହୁଏ କେବଳ ସମାଲୋଚନା ସମ୍ପର୍କରେ ତାଙ୍କର ମତ କେବେହେଲେ ବଦଳି ନାହିଁ । ସେ ସମାଲୋଚକମାନଙ୍କ ବିରୁଦ୍ଧରେ ଥିଲେ – ଏବେ ବି ଅଛନ୍ତି ଏବଂ ଭବିଷ୍ୟତରେ ସେଇଭଳି ରହିବେ ।

ମାଲୟାଲମ ଉପନ୍ୟାସ ଜଗତରେ କେଶବଦେବଙ୍କ ସ୍ଥାନ ନିର୍ଦ୍ଧାରଣ କରିବା ସମୟରେ ମାଲୟାଲମ ଉପନ୍ୟାସର ଇତିହାସ ସମ୍ପର୍କରେ ସାମାନ୍ୟ ବିଚାର ଆଲୋଚନା କରିବା ବୋଧହୁଏ ଅସଙ୍ଗତ ହେବ ନାହିଁ । ଭାରତବର୍ଷରେ ଉପନ୍ୟାସର ଇତିହାସ କେବଳ 175 ବର୍ଷର ; ଏବଂ ମାଲୟାଲମ ଉପନ୍ୟାସ କ୍ଷେତ୍ରରେ ତାହା ଭାରତ ଇତିହାସର ଅର୍ଦ୍ଧେକ ! 1801 ମସିହାରେ ବଙ୍ଗଳା ଭାଷାରେ ପ୍ରକାଶିତ ହୋଇଥିବା 'ପ୍ରତାପାଦିତ୍ୟ ଚରିତ୍ରମ୍" ଉପନ୍ୟାସକୁ ଭାରତର ପ୍ରଥମ ଉପନ୍ୟାସ ବୋଲି କୁହାଯାଏ । ଯେଉଁ ଗଦ୍ୟ ସାହିତ୍ୟର ଜନ୍ମ ବଙ୍ଗଳାଭାଷାରେ ହୋଇଥିଲା, ତାହା ଆସ୍ତେ ଆସ୍ତେ ହିନ୍ଦୀ-ଉର୍ଦ୍ଦୁ ଏବଂ ମରାଠୀ ଭାଷାରେ ପଲ୍ଲବିତ ଏବଂ ପୁଷ୍ପିତ ହେଲା । କିନ୍ତୁ ଦକ୍ଷିଣ ଦିଗକୁ ତାର ବ୍ୟାପ୍ତି ବଡ ମନ୍ଥର ଭାବରେ ହୋଇଥିଲା । 1793 ମସିହାରେ ତାମିଲ ଭାଷାରେ ବାଇବେଲ ଅନୁବାଦ ହୋଇଥିଲା ବୋଲି କୁହାଯାଏ । କିନ୍ତୁ ପ୍ରଥମ ଉପନ୍ୟାସ ରଚନା ହେଲା 1879 ମସିହାରେ । ତାମିଲ ସାହିତ୍ୟ କ୍ଷେତ୍ରରେ ପଦ୍ୟ ସାହିତ୍ୟ, ଏବଂ କାବ୍ୟ ସାହିତ୍ୟର ପ୍ରଭାବ ଯୋଗୁଁ ଏହା ହୋଇଥିଲା ବୋଲି କୁହାଯାଏ । କେରଳରେ ଉପନ୍ୟାସର ଜନ୍ମ କ୍ଷେତ୍ରରେ ଆଉ ସାମାନ୍ୟ ବିଳମ୍ବ ହୋଇଥିଲା । କିନ୍ତୁ 1889 ମସିହାରେ 'ଆୟାରତ୍ତୁ' ଚନ୍ଦୁ ମେନନ୍ ଯେତେବେଳେ "ଇନ୍ଦୁଲେଖା" ରଚନା କଲେ ସେତେବେଳେ ମାଲୟାଲମ ଗଦ୍ୟ ସାହିତ୍ୟର ଉଦ୍‌ଘାଟନ ହେଲା । ଏଠାରେ ଉଲ୍ଲେଖ କରିବାର ବିଷୟ ଏହି, ଯେ ଚନ୍ଦୁ ମେନନ୍‌ଙ୍କୁ 'ଇନ୍ଦୁଲେଖା' ଲେଖିବା ସକାଶେ ଡିସ୍ରେଲୀଙ୍କ 'ହେନ୍ରିଏଟା ଟେମ୍ପଲ'ରୁ ପ୍ରେରଣା ମିଳିଥିଲା । ଏହିଭଳି ଭାବରେ ସାର ଓ୍ବାଲଟାର ସ୍କଟଙ୍କ 'ଆଇଭାନ୍ ହୋ' ଦ୍ୱାରା ପ୍ରଭାବିତ ହୋଇ ସି.ବି.ରାମନ୍ ପିଲେ ମଧ୍ୟ "ମାର୍ତ୍ତାଣ୍ଡବର୍ମା" ରଚନା କରିଥିଲେ । ମାଲୟାଲମ ଉପନ୍ୟାସ ସାହିତ୍ୟିକମାନେ ବିଶେଷକରି ଇଂରାଜୀ ସାହିତ୍ୟର ପ୍ରଭାବରେ ପ୍ରଭାବିତ ହୋଇଥିଲେ । ମାଲୟାଲମ ଉପନ୍ୟାସ, କ୍ଷୁଦ୍ରଗଳ୍ପ, ନାଟକ, ପ୍ରବନ୍ଧ ସମାଲୋଚନା, ଜୀବନୀ, ଭ୍ରମଣ ବୃତ୍ତାନ୍ତ ଇତ୍ୟାଦି ଯେତେସବୁ ସାହିତ୍ୟିକ କୃତିମାନ ଲେଖାଯାଇଛି, ସେ ସବୁଥିରେ ଇଂରାଜୀ ସାହିତ୍ୟର ସମାନ୍ତରାଳ ଛାପ ପଡିଛି ବୋଲି କହିଲେ ଭୁଲ ହେବ ନାହିଁ । ଉପନ୍ୟାସ କ୍ଷେତ୍ରରେ ତାର ଏକ ବିଶେଷ ସ୍ୱାତନ୍ତ୍ର୍ୟ ରହିଛି । ଅନ୍ୟାନ୍ୟ ସାହିତ୍ୟିକ ବିଭାଗ ଲାଗି ମାଲୟାଲମ ଭାଷାରେ ଅଲଗା ଅଲଗା ଶବ୍ଦ ରହିଛି, କେବଳ 'ଉପନ୍ୟାସ' ଶବ୍ଦ ନାହିଁ । ମାଲୟାଲମ ଭାଷରେ ଉପନ୍ୟାସ ପାଇଁ 'ନୋଭେଲ' ଶବ୍ଦ ହିଁ ପ୍ରଚଳିତ । 'ଆଖ୍ୟାୟିକା' ଶବ୍ଦ ବର୍ତ୍ତମାନ ତ ବିଲୁପ୍ତ ହୋଇଯାଇଛି ।

ଉନବିଂଶ ଶତାବ୍ଦୀର ଶେଷ ଦଶକରେ ଚନ୍ଦୁ ମେନନ୍ ଏବଂ ସି.ବି.ରମଣ ପିଲେ ସାହିତ୍ୟ ଜଗତର ରଙ୍ଗମଞ୍ଚ ଉପରକୁ ଆସିଥିଲେ । କିନ୍ତୁ ସେମାନଙ୍କ ପରେ ପ୍ରାୟ ତିରିଶବର୍ଷ ପର୍ଯ୍ୟନ୍ତ ଉପନ୍ୟାସ ସାହିତ୍ୟ ରଚନା କ୍ଷେତ୍ରରେ

ଅଭାବ ପରିଲକ୍ଷିତ ହେଉଥିଲା । ଏହା ସ୍ୱୀକୃତ ଯେ ଗଢାଳା ସାହିତ୍ୟର ପ୍ରରୋଚନାକୁ ହିଁ ଅନାଇ ରହିଥିବା କେରଳୀୟ ଲେଖକଗଣଙ୍କୁ ବିଶ୍ୱସାହିତ୍ୟର ବିଶାଳ କ୍ଷେତ୍ର ପ୍ରତି ଆକୃଷ୍ଟ କରିବାର କୃତୀତ୍ୱ ହେଉଛି ଶ୍ରୀ ଏ.ବାଲକୃଷ୍ଣ ପିଲ୍ଲେ, "କେଶରୀ"ଙ୍କର ହିଁ ପ୍ରାପ୍ୟ । ସେ ଇଉରୋପୀୟ ସାହିତ୍ୟରେ ଅଗାଧ ପାଣ୍ଡିତ୍ୟ ହାସଲ କରିଥିଲେ । ଏବଂ ସେଇଥିପାଇଁ ସେ ନବଯୁବକ ଲେଖକମାନଙ୍କର ଶିକ୍ଷକ (ଗୁରୁ), ବନ୍ଧୁ, ଏବଂ ପଥ ପ୍ରଦର୍ଶକ ହୋଇଯାଇଥିଲେ । ପାଶ୍ଚାତ୍ୟ ଜଗତର କେତେକ ବିଶିଷ୍ଟ ସାହିତ୍ୟ କୃତିକୁ 'କେଶରୀ' କେରଳ ବାସୀଙ୍କ ନିକଟରେ ପରିଚିତ କରାଇଥିଲେ ଏବଂ ସେଥିରୁ ପ୍ରେରଣା ପାଇ ନୂତନ ସାହିତ୍ୟ ସୃଜନା କରିବା ଦିଗରେ ତଥା ସାହିତ୍ୟ କ୍ଷେତ୍ରରେ ନୂତନ ଶୈଳୀ, ନୂତନ ରୀତି ଗ୍ରହଣ କରିବା ଲାଗି ମଧ୍ୟ ସହାୟକ ହୋଇଥିଲେ, ଏଥିରେ ଆଦୌ ସନ୍ଦେହ ନାହିଁ ।

ମାଲୟାଲମ ସାହିତ୍ୟରେ ପରିବର୍ତ୍ତନ ହେବାର ଅନ୍ୟ ଏକ କାରଣ ମଧ୍ୟ ରହିଛି । 1937 ମସିହାର ପ୍ରାରମ୍ଭରେ ଭାରତର ସ୍ୱାଧୀନତା ତଥା ଦେଶୀୟ ଆନ୍ଦୋଳନ ରାଷ୍ଟ୍ରର ନେତାମାନଙ୍କ ହାତରେ ସୁରକ୍ଷିତ ହୋଇ ସାରିଥିଲା । ନୂତନ ଯୁବ ଲେଖକମାନଙ୍କୁ ବାମପନ୍ଥୀ ବିଚାରଧାରା – ବିଶେଷକରି ମାର୍କସବାଦୀ ଏବଂ କମ୍ୟୁନିଷ୍ଟ ଚିନ୍ତାଧାରା ଆକର୍ଷିଣ କରିବାକୁ ଲାଗିଥିଲା । ତାଙ୍କ ପୂର୍ବ ପୁରୁଷଙ୍କର ପ୍ରଧାନ ସମସ୍ୟା ଥିଲା – ଭାରତୀୟ ସାହିତ୍ୟର ଆଚାର, ବିଚାର ପଦ୍ଧତି ସହ ପାଶ୍ଚାତ୍ୟ ସଭ୍ୟତାର ସଂଘର୍ଷ । ସେଇ ଲେଖକମାନେ ମଧ୍ୟ ଯୁଗୀୟ ଚିନ୍ତାଧାରାରେ ବଶବର୍ତ୍ତୀ ସ୍ୱପ୍ନବିଳାସୀ ଦୃଷ୍ଟିକୋଣ ଏବଂ ଆଦର୍ଶପ୍ରେମରେ ସୀମାବଦ୍ଧ ଥିଲେ । କିନ୍ତୁ ନୂଆ ଲେଖକମାନେ, ଯେଉଁମାନେ ନିଜକୁ 'ପ୍ରଗତିବାଦୀ' ବୋଲି କହୁଥିଲେ, ସେମାନେ ସମାଜର ଦାରିଦ୍ର୍ୟ, ଦୁଃଖ, କଷ୍ଟ, ଶୋଷଣ, ଦମନ, ଅତ୍ୟାଚାର ପ୍ରତି ଦୃଷ୍ଟିଦେବା ସଙ୍ଗେ ସଙ୍ଗେ ସେଠାରୁ ପ୍ରେରଣା ପାଇ ଲେଖିବାକୁ ଲାଗିଲେ । ଏଇ ପରିବର୍ତ୍ତନ ପ୍ରକ୍ରିୟାରେ ଯେଉଁମାନେ ନେତୃତ୍ୱ ନେଉଥିଲେ ସେମାନଙ୍କ ମଧ୍ୟରେ ଅଗ୍ରଣୀଥିଲେ ସ୍ୱୟଂ କେଶଦେବ ।

କେଶବଦେବଙ୍କ ଗର୍ବ ଏହିଯେ ସେ ଧନୀକ ଏବଂ ମଧ୍ୟବିତ୍ତ ଶ୍ରେଣୀର ଡ୍ରଇଂରୁମରୁ ଉପନ୍ୟାସକୁ ଆଣି ଗରୀବର କୁଡିଆରେ ପହଞ୍ଚାଇବାକୁ ଉଦ୍ୟମ କରିଥିଲେ । ତାଙ୍କର ବିଶ୍ୱାସ, ସେ ହିଁ ନିଜେ ସର୍ବପ୍ରଥମେ ମାଲୟାଲମ ସାହିତ୍ୟକୁ ସାମୁହିକ ଚିନ୍ତନ ଦ୍ୱାରା ଗୌରବାନ୍ୱିତ କରିଛନ୍ତି ଏବଂ ତହିଁରେ ଆର୍ଥିକ ବିଷମତାର ଚିତ୍ରଣ କରିଛନ୍ତି । ପୁନଶ୍ଚ ସେ ଦାବୀ କରନ୍ତି ଯେ ଅନ୍ୟ କେହି ତାଙ୍କ ପରି ଏଭଳି ବ୍ୟାପକ ରୂପରେ ଜୀବନର ସର୍ବପ୍ରକାର କ୍ଷେତ୍ରକୁ ନିଜସ୍ୱ ଦୃଷ୍ଟିଭଙ୍ଗୀରୁ ନିରୂପଣ କରିନାହିଁ । କେଶବଦେବ ପ୍ରାୟ ପଚିଶଟି ଉପନ୍ୟାସ, ପନ୍ଦରଟି ଗଳ୍ପ ସଙ୍କଳନ, ଏଗାରଟି ନାଟକ, ସାତୋଟି ଏକାଙ୍କିକା ସଂଗ୍ରହ, ଚାରୋଟି ଆତ୍ମକଥା ସମ୍ପର୍କୀୟ ଗ୍ରନ୍ଥ, ଗୋଟିଏ କବିତା ସଂକଳନ, ଏବଂ ଗୋଟିଏ ସମାଲୋଚନା ପୁସ୍ତକ ରଚନା କରିଛନ୍ତି । ଏହିଭଳି ଏତେବେଶୀ ଲେଖୁଥିବା ବହୁମୁଖୀ ପ୍ରତିଭା କେବଳ ମାଲୟାଲମ ସାହିତ୍ୟରେ କାହିଁକି, ଅନ୍ୟ ଭାଷାରେ ମଧ୍ୟ କ୍ୱଚିତ୍ ଦେଖିବାକୁ ମିଳେ । ବୋଧହୁଏ ସେ ସାହିତ୍ୟର ଅନ୍ୟ ଗୋଟିଏ ବିଭାଗକୁ ସମ୍ପୂର୍ଣ୍ଣଭାବରେ ଛାଡି ଯାଇଛନ୍ତି ତାହା ହେଲା - କବିତା ।

ମାଲୟାଲମ ଭାଷାର ପ୍ରଥମ ସର୍ବହରା ସାହିତ୍ୟିକ ହେଉଛନ୍ତି କେଶବଦେବ ! ଏ କଥା କହିବା ସମୟରେ ଶ୍ରୀ ତକଷି ଶିବଶଙ୍କର ପିଲ୍ଲେ, ଯେ କି ଜଣେ ବିଶିଷ୍ଟ କଳାକାର ଭାବରେ ଅଧିକ ପରିମାଣରେ ସୁପରିଚିତ, ତାଙ୍କ ପ୍ରତି ଆଦୌ ଅବମାନନା ପ୍ରକାଶ କରାଯାଉନାହିଁ । ମୋର ଏ କଥା କହିବାର ତାତ୍ପର୍ଯ୍ୟ ହେଉଛି ଯେ,

କେଶବ ଦେବ ହିଁ ସମାଜବାଦୀ ସଂସ୍ଥାଗୁଡିକୁ ସଂଗଠନ କରିବାରେ ନେତୃତ୍ୱ ନେଇଥିଲେ, ଏବଂ ସେଥିରୁ ପ୍ରେରଣା ପାଇ ସେ ଅନେକ କିଛି ରଚନା କରିଥିଲେ । କେଶବଦେବ ଧନୀ-ଦରିଦ୍ରର ସାମୂହିକ ସମ୍ପର୍କ ତଥା ଅନିବାର୍ଯ୍ୟ ସଂଘର୍ଷକୁ ଐତିହାସିକ ପୃଷ୍ଠଭୂମିରୁ ଦେଖିଥିଲେ ଏବଂ ଉଦ୍ଦେଶ୍ୟ ପ୍ରେରିତ ହୋଇ ତାହାର ଚିତ୍ରଣ କରିଥିଲେ । କାରଣ କେରଳରେ ଯେତେବେଳେ 'ଶ୍ରମିକ ଇଉନିଅନ୍' ଆରମ୍ଭ କରାଗଲା ସେତେବେଳେ ଯେଉଁମାନେ ନେତୃତ୍ୱ ଦେଇଥିଲେ ସେମାନଙ୍କ ମଧ୍ୟରୁ କେଶବଦେବ ଥିଲେ ଅନ୍ୟତମ । ସେଇଥିପାଇଁ ସେ କୋଚିନ୍ ଏବଂ ଆଲପୁଝାର ଶ୍ରମିକମାନଙ୍କୁ ସଂଘବଦ୍ଧ କରି ପାରିଥିଲେ ଏବଂ ସେମାନଙ୍କର ଦୁଃଖ, କଷ୍ଟ ତଥା ଜୀବନକୁ ଭଲ ଭାବରେ ବୁଝିବାପାଇଁ ସେ ନିଜେ ଶ୍ରମିକ ପରି ଶ୍ରମିକମାନଙ୍କ ସହିତ ରହୁଥିଲେ । ଆମ୍ଭେମାନେ ଯେପରି ତକଷି ଶିବଶଙ୍କର ପିଲେଙ୍କ ଠାରେ ପରିସ୍ଥିତିର କଳାତ୍ମକ ଆବିଷ୍କାର, ଏବଂ ନିଜେ ଅନୁଭବ କରିଥିବା ଦୃଷ୍ଟିକୋଣର କଳାତ୍ମକ ରୂପ ଦେବାକୁ ଚାହୁଁ, ଠିକ୍ ସେହିପରି ଭାବରେ କେଶବଦେବଙ୍କ ସାହିତ୍ୟିକ କୃତିରେ ସାମୁହିକ ପ୍ରତିବିମ୍ବ ଏବଂ ସାମୁହିକ ଭାବ ଦେଖିବାକୁ ପାଉଁ ।

ନିଜ ସମସ୍ୟା କେବେହେଲେ ସାହିତ୍ୟ ନୁହେଁ । ଏହା ହେଉଛି ଜୀବନ । ଏ କଥା ବୋଧହୁଏ କେଶବଦେବ କେବେହେଲେ ତାଙ୍କ ପାଠକମାନଙ୍କ ପାଖରୁ ଲୁଚାଇବାକୁ ଚାହିଁନାହାନ୍ତି । ଏ ସମ୍ପର୍କରେ ଯେବେ ତାଙ୍କୁ କିଛି ସୁବିଧା ସୁଯୋଗ ମିଳିଛି , ତାକୁ ସେ ପ୍ରତିପାଦନ କରିବାକୁ ଚେଷ୍ଟା କରିଛନ୍ତି । 'କାଣ୍ଣାଡି' (ଆଇନା)ର ଭୂମିକାରେ ସେ ଏକଥା ମଧ୍ୟ ଲେଖିଛନ୍ତି ଯେ – "ମୁଁ ଯାହା ଲେଖୁଛି ତାହା ସାହିତ୍ୟ ସୃଷ୍ଟି କରିବାର ଉଦ୍ଦେଶ୍ୟ ନେଇ ଲେଖୁ ନାହିଁ । ସାହିତ୍ୟିକ ହେବାର ଇଚ୍ଛା ନେଇ ଲେଖୁନାହିଁ । ସାହିତ୍ୟ ମୋ ସମ୍ମୁଖରେ କେବେହେଲେ ଏକ ପ୍ରଶ୍ନ ହୋଇ ଦେଖାଦେଇ ନାହିଁ । ମୋ ସମ୍ମୁଖରେ ଯେଉଁ ପ୍ରଶ୍ନ ଅଛି, ତାହା ଜୀବନର ପ୍ରଶ୍ନ । ମୁଁ ହେଉଛି ଜୀବନର ସମାଲୋଚକ ଏବଂ ତାର ବ୍ୟାଖ୍ୟା କରୁଛି । ତେଣୁ ମୁଁ ଯେତେବେଳେ ମୋର ସମାଲୋଚନା ଏବଂ ବ୍ୟାଖ୍ୟା ଜନସାଧାରଣଙ୍କ ସମ୍ମୁଖରେ ଉପସ୍ଥାପନ କରୁଛି ତାହା ଆପେଆପେ ସାହିତ୍ୟ ହୋଇଯାଉଛି ।" ଏ କଥା ଯେଉଁ ଲେଖକ କହିଛନ୍ତି, ଯେତେବେଳେ ତାଙ୍କ ସହିତ କଥାବାର୍ତ୍ତା ହେଲା, ସେତେବେଳେ ସେ ଏହାର ପୁନରାବୃତ୍ତି କଲେ ମାତ୍ର – "ସାହିତ୍ୟ ମୋର ପ୍ରଶ୍ନ ନୁହେଁ, ମୋର ପ୍ରଶ୍ନ ହେଉଛି ଜୀବନ । ଜୀବନରେ ଦୁଃଖର ବିନାଶ କରି, ସୁଖ ବଢ଼ାଇବା ହେଉଛି - - ମୋର ଅନ୍ତିମ ଲକ୍ଷ୍ୟ । ଏଇଥିପାଇଁ ମୁଁ ଲେଖୁଛି ଏବଂ ଭାଷଣ ମଧ୍ୟ ଦେଉଛି । ଏହିଭଳି ଭାବରେ ମୁଁ ଜଣେ ସାହିତ୍ୟିକ ମଧ୍ୟ ହୋଇଯାଇଛି । ସମାଜ ସହିତ ମୋର ଯାହା ସମ୍ବନ୍ଧ ତାହା ମୋତେ ଲେଖିବା ପାଇଁ ପ୍ରେରଣା ଯୋଗାଇ ଆସିଛି ।"

କେଶବଦେବ ଜଣେ ବିଶିଷ୍ଟ ସାହିତ୍ୟିକ । ସାମୁହିକ ପରିବର୍ତ୍ତନକୁ ଲକ୍ଷ୍ୟ ନ କରି ସେ କେବେ ଲେଖା ଲେଖନ୍ତି ନାହିଁ । ବାସ୍ତବରେ ତାଙ୍କର ଲେଖା, ତାଙ୍କ ସାଧନାର ଲକ୍ଷ୍ୟର ପ୍ରତୀକ । ଜୀବନରୂପୀ ପ୍ରଶ୍ନର ଉତ୍ତର ଦେବା ସକାଶେ ସେ ଭାଷଣ ଦିଅନ୍ତି, ଲେଖା ଲେଖି କରନ୍ତି, ବିଭିନ୍ନ ସାମୁହିକ ସଂସ୍ଥାର କର୍ମକର୍ତ୍ତା ମଧ୍ୟ ହୁଅନ୍ତି ଏବଂ ସେଭଳି ଭାବରେ ଜୀବନ ମଧ୍ୟ ବିତାଇ ଥାଆନ୍ତି । ସେ ସାହିତ୍ୟର କୌଣସି ଗୋଟିଏ ବିଭାଗକୁ ଯେ ଖୁବ୍ ଭଲ ପାଆନ୍ତି ତାହା ନୁହେଁ, ନିଜର ବିଚାରଧାରାକୁ ସ୍ପଷ୍ଟ କରିବା ସକାଶେ ଯେଉଁ ପଥ ତାଙ୍କୁ ଖୁବ୍ ଭଲ ଲାଗେ ସେ ତାକୁହିଁ ବାଛିନିଅନ୍ତି । ନାଟକ, ଉପନ୍ୟାସ, ଗଳ୍ପ, ଏକାଙ୍କିକା, ପ୍ରବନ୍ଧ ଇତ୍ୟାଦି ରଚନା କରିବାରେ ସେ ସିଦ୍ଧହସ୍ତ । ସେ ନିଜର ପକ୍ଷପାତିତାକୁ କେବେହେଲେ ଲୁଚାଇ ରଖନ୍ତି ନାହିଁ, ହୁଏତ ସେ ସେଇଥିପାଇଁ ଏତେ ବେଶୀ ପରିମାଣରେ ସ୍ପଷ୍ଟ । ସାହିତ୍ୟର କଳାତ୍ମକ ସୃଜନୀ ତଥା ଆବଶ୍ୟକସ୍ଥଳେ ସେ ଉପଯୁକ୍ତ କଠୋର ଭାଷା ବ୍ୟବହାର କରିବାକୁ କେବେହେଲେ ପଛଘୁଞ୍ଚା ଦିଅନ୍ତି ନାହିଁ ।

କେଶବଦେବ ଯେତେବେଳେ ଦଳିତ, ପୀଡ଼ିତ ମାନଙ୍କ ପକ୍ଷକୁ ସମର୍ଥନ କରି ତାଙ୍କର ସାହିତ୍ୟ ସୃଷ୍ଟି ଆରମ୍ଭ କରିଥିଲେ ସେତେବେଳେ ସେ 'ରିଏଲିଜମ୍' ବା ବାସ୍ତବବାଦକୁ ସ୍ୱୀକାର କରିନେଇଥିଲେ । ମାଲୟାଲମ ସାହିତ୍ୟରେ 'ରିଏଲିଷ୍ଟବାଦ' ବା 'ବାସ୍ତବବାଦ'ର ଅଗ୍ରଣୀ ଥିଲେ ସ୍ୱୟଂ କେଶବଦେବ । ପରେ ଯେଉଁ ପ୍ରଗତିବାଦୀ ସାହିତ୍ୟ ସୃଷ୍ଟି ହେଲା ତାର ସଂସ୍ଥାପକ ଥିଲେ ତକଷି ଏବଂ ଦେବ । ଯେତେବେଳେ ମୁଁ ଏ କଥା କହୁଛି ସେତେବେଳେ ପୋନକୁମେଭ୍ର୍କି, ବେକମ୍ ମହମ୍ମଦ ବଷୀର, ଏମ୍.ପି.ପିଲେ ଆଦି ଲେଖକ ମାନଙ୍କ କଥା ଆଦୌ ଭୁଲି ନାହିଁ । ମୋର ଏ କଥା କହିବାର ତାତ୍ପର୍ଯ୍ୟ ହେଉଛି ଯେ, ସାମୁହିକ ଏବଂ ସଂଘବଦ୍ଧ ଭାବେ ହେଉଥିବା ଅନେକ ଅତ୍ୟାଚାର ବିରୁଦ୍ଧରେ ଜନସାଧାରଣଙ୍କୁ ଛିଡ଼ା କରିବାରେ ଯେଉଁମାନେ ଆଗେଇ ଆସିଥିଲେ ସେମାନଙ୍କ ମଧ୍ୟରେ ସେ ଥିଲେ ଅଗ୍ରଗଣ୍ୟ ।

ଏବେ ତ ମୁଁ କହିଛି ଯେ, କେଶବଦେବ ଜଣେ ପକ୍କା ରିଏଲିଷ୍ଟ ବା ବାସ୍ତବବାଦୀ ଏବଂ ପ୍ରଗତିବାଦୀ ଥିଲେ । କିନ୍ତୁ ସେ ଜଣେ ରୋମାଣ୍ଟିଷ୍ଟ ଏକଥା ମଧ୍ୟ ସତ୍ୟ । ଉଦାହରଣ ସ୍ୱରୂପ ତାଙ୍କର ପ୍ରସିଦ୍ଧ ଉପନ୍ୟାସ 'ଓଡୋୟିଲ୍ ନିନ୍ନୁ' ଅପରିଷ୍କାର ପାଣିର ନର୍ଦ୍ଦମା ନିଆଯାଉ । ଏ ଉପନ୍ୟାସ ରଚନା କରାଯାଇଥିଲା 1942 ରେ । ଏହି ଉପନ୍ୟାସରେ ପପ୍ପୁ (ପଦ୍ମନାଭନ୍) ନାମକ ରିକ୍ସାବାଲାର ତ୍ୟାଗ, ସହୃଦୟତା, ଏବଂ ମନୁଷ୍ୟତ୍ୱର କାହାଣୀ ଲିପିବଦ୍ଧ ହୋଇଛି । କଷ୍ଟ ଓ ଯାତନାର ଅଗାଧ ଗର୍ଭରେ ମନୁଷ୍ୟରୂପୀ ଜୀବ ଛଟପଟ ହେଉଥିଲେ ହେଁ, ସେ କିପରି ମାନବୀୟ ଗୁଣକୁ ଅପଣାର କରିପାରେ, ଉପନ୍ୟାସ ଜରିଆରେ ସେ ବାର୍ତ୍ତା ଦେଇଥିଲେ ଦେବ । ଏହାକୁ ଅବିଷ୍କାର କରିବାରେ ପୂର୍ଣ୍ଣମାତ୍ରାରେ ସେ ସଫଳ ମଧ୍ୟ ହୋଇଥିଲେ । କିନ୍ତୁ ଦେବଙ୍କ ମଧ୍ୟରେ ଲୁଚି ରହିଥିବା ରିଏଲିଷ୍ଟ ଯେ ଏଥିରେ ମୁଣ୍ଡଟେକି ଉଠିନାହିଁ ସେ କଥା କହି ହେବ ନାହିଁ । ଅପରିଷ୍କାର ପାଣିର ନାଳରୁ ପପ୍ପୁ ଯେଉଁ ଗରୀବ ଝିଅକୁ ଉଦ୍ଧାର କରିଛି, ପରେ ସେଇ ଝିଅ ଜଣେ ଧନୀର ପୁଅକୁ ନିଜର ପ୍ରେମିକ କରିଛି – ଏହା କ'ଣ ପୁରୁଣା ସିନ୍‌ଡ୍ରେଲା ଛାୟାରେ ଲିଖିତ ନୁହେଁ କି ? ଏହି ଭଳି ଭାବରେ ପପ୍ପୁର ଚରିତ୍ର ଚିତ୍ରଣ କରିବାରେ ଅଧିକ ମାତ୍ରାରେ ଅତି ଭାବୁକତାର କଟୁରଙ୍ଗ ଦିଆ ଯାଇଛି । ପ୍ରକୃତ ଆତ୍ମାଭିମାନର ପ୍ରତୀକ ପପ୍ପୁ ହେଉଛି ଆଦର୍ଶବାଦୀତାର ସାର୍ଥକ ସୃଷ୍ଟି – ଏ ଭଳି ଚରିତ୍ର ଗଳୀରେ ଦେଖାଯାଉଥିବା ସାଧାରଣ ରିକ୍ସାବାଲା ନିକଟରେ ଦେଖାଯାଏ ନାହିଁ । ବାସ୍ତବରେ କେଶବଦେବ ପପ୍ପୁର ଜୀବନକୁ ଯଥାର୍ଥରେ ଅପରିଷ୍କାର ପାଣିର ନାଳରୁ ଉଠାଇ ତାକୁ ଆଦର୍ଶବୋଧର ଉପରେ ଛିଡ଼ା କରାଇଛନ୍ତି । 'ଅଡୋୟିଲ୍ ନିନ୍ନୁ' କେବଳ ଉପନ୍ୟାସ ନୁହେଁ, 'ଜଣେ ସୁନ୍ଦରୀର କଥା' । ସ୍ୱପ୍ନ ଆଦି ରଚନାରେ ଅତି ଭାବୁକତାର ଗଭୀର ରଙ୍ଗ ମଧ୍ୟ ଦେଖାଦେଇଛି । ହୁଏତ ଏହା କେଶବଦେବଙ୍କର ମାନସିକ ଅଭିଳାଷ ଗୁଡ଼ିକର ବା 'ଅନନୁଭୂତ ଜୀବନର' ଆବିଷ୍କାର ହୋଇପାରେ । ଯାହା ହେଉନା କାହିଁକି, କେଶବଦେବଙ୍କ ରଚନାରେ ଝଲକଭଳି ଦେଖାଯାଉଥିବା ଅତିଭାବୁକତା ତାଙ୍କର ପ୍ରବଳ ଯଥାର୍ଥବୋଧ ଉପରେ ଗଭୀର ଛାୟା ପକାଇଛି କହିଲେ ଅତ୍ୟୁକ୍ତି ହେବନାହିଁ ।

ଦେବଙ୍କ କହିବା କଥା ହେଉଛି, ସେ ହେଉଛନ୍ତି ପୁରାତନ ବିରୁଦ୍ଧରେ ଲଢୁଥିବା ସଂଗ୍ରାମୀ ସୈନିକ । ଏ କଥା ମଧ୍ୟ ଠିକ୍ । କିନ୍ତୁ ସେ ସମୟରେ ସେ ମଧ୍ୟ ପୁରାତନ ଶୈଳୀର ଜଣେ ଆଦର୍ଶବାଦୀ । ତାଙ୍କର ପ୍ରିୟପାତ୍ର ସର୍ବଦା ଜଣେ ସଦାଚାରବାଦୀ ତଥା ଆଦର୍ଶବାଦୀ ପୁରୁଷ ହେଉ ଏହା ତାଙ୍କର ଲକ୍ଷ୍ୟ । ପପ୍ପୁର ସନ୍ମାର୍ଗନିଷ୍ଠା ତାଙ୍କ ଜୀବନରେ ସ୍ପଷ୍ଟ ଭାବରେ ଦେଖାଦେଇଛି । ଏହିପରି ଭାବରେ ହେ ଭବାନୀ, ଜଣେ ସୁନ୍ଦରୀର କଥା ଇତ୍ୟାଦି ସ୍ୱତଃ ମନକୁ ଆସୁଛି । ନିଜ ସୃଷ୍ଟିର ଚରିତ୍ର ଉପରେ ସାମାନ୍ୟତମ ଆଞ୍ଚ ନ ପହଞ୍ଚି ସେ ସମାଜର

ଶୀର୍ଷକୁ ମଧ୍ୟ ଉଠି ପାରିଛି । ଏଠାରେ କୁହାଯାଇପାରେ ଯେ, ଦେବ ଯେଉଁ ଗୁଣ୍ଡା କଥା ଲେଖିଛନ୍ତି, ସେ ମଧ୍ୟ ଗୁଣ୍ଡାମାନଙ୍କ ମଧ୍ୟରେ ରାଜକୁମାର । ଯେତେବେଳେ ସେ ହିଂସାର ପ୍ରତୀକ ଛୁରୀ ପିନ୍ଧି ଦେଇଛି ସେତେବେଳେ ସେ ଜୀବନର ଧର୍ମବୋଧ, ବୁଝାମଣା ଇତ୍ୟାଦିକୁ ଆପଣାର କରିବା ସକାଶେ ପ୍ରସ୍ତୁତ ହୋଇ ଯାଇଛି ।

ଯଥାର୍ଥ ବୋଧ ଏବଂ ଧର୍ମ ବୋଧର ସଂଘର୍ଷ ମଧ୍ୟରେ ଦେବଙ୍କର କେତେକ ରଚନା କଳାତ୍ମକ ଦୃଷ୍ଟି କୋଣରୁ ଫିକା ହୋଇ ଆସୁଛି ବୋଲି ମାନିବାକୁ ପଡିବ । ଦେବ ଏବଂ ତକଷିଙ୍କ ମଧ୍ୟରେ ଏହାହିଁ ହେଉଛି ମୋଟାମୋଟି ପାର୍ଥକ୍ୟ । 'ଚେମ୍ମିନ୍' ଉପନ୍ୟାସରେ ତକଷି କେବଳ ରୋମାଣ୍ଟିଷ୍ଟର ପୋଷାକ ପିନ୍ଧିଛନ୍ତି । ବାକି ପ୍ରାୟ ଅନ୍ୟାନ୍ୟ ସମସ୍ତ କୃତିରେ ସେ ଦେବଙ୍କଠାରୁ ବଡ ଯଥାର୍ଥବାଦୀ । ଯଦି ଆମ୍ଭେମାନେ କେତେବେଳେ କଳ୍ପନାକରୁ ଯେ, କେଶବଦେବଙ୍କ ବଦଳରେ ତକଷି ହିଁ 'ଅତୋୟିଲ୍ଲ ନିନ୍ନୁ' ରଚନା କରିଛନ୍ତି, ତା ହେଲେ ସେ ପାର୍ଥକ୍ୟ ଭଲଭାବରେ ଜଣାପଡିବ । ଯଦି ପପ୍ପୁ ତକଷିଙ୍କର ମାନସପୁତ୍ର ହୋଇଥାଆନ୍ତା, ତା ହେଲେ ସେ ଜୀବନର କଠୋର ନୀତିର ଅଧୀନ ହୋଇ ନିଜର ପାଳିତ ପୁତ୍ରୀକୁ ପାଳୁଥାଆନ୍ତା, ଭିକାରୀ ହୋଇ ଗଳି ଗଳିରେ ଭିକ ମାଗୁଥାଆନ୍ତା, ହୁଏତ 'ଅତୋୟିଲ୍ଲ ନିନ୍ନୁ' ତକଷିଙ୍କର କଳାତ୍ମକ ଦୃଷ୍ଟି କୋଣରୁ ଉତ୍କୃଷ୍ଟ ମଧ୍ୟ ହୋଇ ପାରିଥାନ୍ତା । କିନ୍ତୁ ସେଥିରେ ଦେବଙ୍କର ରଚନାରେ ଥିବା ସାମୁହିକ ଭାବ କେବେହେଲେ ମିଳନ୍ତା ନାହିଁ ବା ସାଧାରଣ ଜନତାର ପାଟି ଫିଟାଇବାରେ ବା ଦୁଃଖ କମାଇବାରେ ଓ ଆତ୍ମବିଶ୍ୱାସ ସୃଷ୍ଟିକରିବାରେ କେବେହେଲେ ସଫଳ ହୋଇ ନ ଥାଆନ୍ତା । ଦେବଙ୍କର ଲକ୍ଷ୍ୟବୋଧ ଏବଂ ତକଷିଙ୍କର କଳାବୋଧ ମଧ୍ୟରେ ଯେଉଁ ପାର୍ଥକ୍ୟ ପରିଲକ୍ଷିତ ହୁଏ ତାହା ଅଧିକ ଭାବରେ ହୁଏତ ପ୍ରକଟିତ (ପ୍ରସ୍ଫୁଟିତ) ହୋଇ ଥାଆନ୍ତା ।

ମୋଟାମୋଟି ଭାବରେ କେଶବଦେବଙ୍କର ଉପନ୍ୟାସକୁ ଦୁଇଟି ବିଭାଗରେ ବିଭକ୍ତ କରାଯାଇପାରେ । ରୋମାଣ୍ଟିକ ପ୍ରେମ ଉପନ୍ୟାସ ଏବଂ ରିଏଲିଷ୍ଟ ବା ବାସ୍ତବବାଦୀ ଉପନ୍ୟାସ । କିନ୍ତୁ ଏହି ବିଭାଗ ମଧ୍ୟ ଅସଙ୍ଗତ ଜଣାପଡୁଛି । କାରଣ ଦୁଇଟି ଶୈଳୀର ମିଶ୍ରଣରେ କେତୋଟି ରଚନା ମଧ୍ୟ ହୋଇଛି । ପ୍ରଥମ ବିଭାଗରେ 'ଆତୋୟିଲ ନିନ୍ନୁ', 'ଏକ ସୁନ୍ଦରୀ କି କଥା, 'ସ୍ୱପ୍ନ', 'ପ୍ରେମମୂର୍ଖ ' ଆଦି ଆସେ । ଦ୍ୱିତୀୟ ବିଭାଗରେ 'ଅୟଲକାକାର' (ପଡୋଶୀ)', 'କଣ୍ଟ୍ରୋଡ୍', 'ଅଧିକାର', 'କିସ୍ କେ ଲିଏ' (କାହାପାଇଁ), ଆଉ କିଏ (କିସ୍ଔର) ଇତ୍ୟାଦି ଅନ୍ତର୍ଭୁକ୍ତ । କେଶବଦେବ ପ୍ରଥମେ ବିପ୍ଲବୀ ତଥା ପ୍ରଚାରଧର୍ମୀ ଲେଖାଲେଖି ଜୀବନ ଆରମ୍ଭ କରିଥିଲେ । ଏଣୁ ସେ ପାଠକମାନଙ୍କ ସହିତ ସିଧା ସଳଖ ସମ୍ବନ୍ଧ ସ୍ଥାପନ କରିବା ସକାଶେ ଚାହିଁଥାଆନ୍ତି ।

କାହାପାଇଁ ଓ ଆଉ କିଏ ଉପନ୍ୟାସ ଦୁଇଟିରେ ସିମ୍ବଲିଜମ୍ ବା ପ୍ରତୀକବାଦର ପ୍ରୟୋଗ ପାଠକ ମାନଙ୍କ ସମ୍ମୁଖରେ ବଡ ପ୍ରଭାବ ପକାଇଥାଏ । ପ୍ରଚଳିତ ଦେଶଜ ସରଳ ଶବ୍ଦର ପ୍ରୟୋଗରେ ମନୁଷ୍ୟ ହୃଦୟରେ କେଉଁଆଡ଼େ ତୋଫାନ୍ ଉଠାଇବାର ଶୈଳୀ ଦେବଙ୍କୁ ଜଣା ଅଛି ଏବଂ ତାହା ତାଙ୍କର ରଚନା ମାଧ୍ୟମରେ ହିଁ ସମ୍ଭବ, ତେଣୁ ସେ ବହୁକ୍ଷେତ୍ରରେ ଅନେକଙ୍କର ଈର୍ଷା ପାତ୍ର । ଯେତେବେଳେ ସେ ଜୀବନର ସାଧାରଣ ଘଟଣାର ଚିତ୍ର ମାମୁଲି ପ୍ରଚଳିତ ଶବ୍ଦ ମାଧ୍ୟମରେ ପ୍ରକାଶ କରନ୍ତି ସେତେବେଳେ ଆମ୍ଭେମାନେ ମନ୍ତ୍ରମୁଗ୍ଧ ହୋଇଯାଉ । ଜୀବନରେ କାବ୍ୟ ସୌନ୍ଦର୍ଯ୍ୟ ଆବିଷ୍କାର କରିବାରେ ସେ ପ୍ରବୀଣ ଏହା ଜାଣିବା ମଧ୍ୟ ଉଲ୍ଲେଖଯୋଗ୍ୟ ଘଟଣା । କିନ୍ତୁ ତାଙ୍କ ଜୀବନକାବ୍ୟର ପ୍ରଣୟଗୀତ ଅପେକ୍ଷା ପ୍ରୟାଣଗୀତ ଅଧିକ ସମାନତା ରକ୍ଷା କରେ ।

କେଶବଦେବ ସାମୁହିକ ଭାବଧାରାରେ ଉଦ୍‌ବୁଦ୍ଧ ଜଣେ ଉଚ୍ଚଶ୍ରେଣୀର ଲେଖକ । ଯେତେବେଳେ ସେ ନିଜ ସମୟର ସମାଜିକ ତଥା ରାଜନୈତିକ କଥାର ଚିତ୍ରଣ କରିଛନ୍ତି ସେତେବେଳେ ସେ ସମ୍ପର୍କରେ ନିଜ ମତ ବ୍ୟକ୍ତ କରିବାକୁ କେବେହେଲେ ଦ୍ୱିଧା ବୋଧ କରିନାହାନ୍ତି । କାରଣ ଦେବ ନିଜେ ସାମୁହିକ ଏବଂ ରାଜନୈତିକ ଆନ୍ଦୋଳନରୁ ସୃଷ୍ଟି ହୋଇଛନ୍ତି । ଏହି କାରଣରୁ ଏଥିରେ ବୈଚିତ୍ର୍ୟ କିଛି ନାହିଁ । ଏଥିରେ ସେ ନିଜ ଶକ୍ତିକୁ ଗୋଟିଏ ହିସାବରେ ଗ୍ରହଣ କରନ୍ତି । ହୁଏତ ସାମୁହିକ କାର୍ଯ୍ୟକର୍ତ୍ତା ହିସାବରେ ତାଙ୍କର ଶକ୍ତି ଥାଇପାରେ । କିନ୍ତୁ କଳାକାର ହିସାବରେ ତାଙ୍କର ଦୁର୍ବଳଶକ୍ତିର ପରିଚୟ ମିଳିଯାଏ ? ଉଦାହରଣ ସ୍ୱରୂପ 'ଅୟଲ୍‌କ୍କାର' (ପଡୋଶୀ) କୁ ଦେଖାଯାଉ । 1963 ମସିହାରେ ଲେଖାଯାଇଥିବା ସେହି ଉପନ୍ୟାସକୁ ସାହିତ୍ୟ ଏକାଡେମୀ ପୁରସ୍କାର ମିଳିଥିଲା । କେରଳର ସାମୁହିକ ପରିବର୍ତ୍ତନର ଇତିହାସର ଗଭୀରତା ଏବଂ ପ୍ରଶସ୍ତତାକୁ ଚିତ୍ରଣ କରିବାକୁ ଚେଷ୍ଟା କରିଥିଲେ ଦେବ ଏବଂ ତାର ଫଳ ସ୍ୱରୂପ ସୃଷ୍ଟି ହେଲା ଉପନ୍ୟାସ । ଆମ୍ଭେମାନେ ସେଥିରେ ସାମୁହିକ, ଆର୍ଥିକ, ଏବଂ ମନୋବୈଜ୍ଞାନିକ ସଂଘର୍ଷରେ କ୍ଷତବିକ୍ଷତ କେରଳର ହୃଦୟସ୍ପର୍ଶୀ ଚିତ୍ର ଦେଖିବାକୁ ପାଉ । ଏହି କୃତିରେ ତ୍ରୁଟି ବିହୀନ ଐତିହାସିକବୋଧ, ଯଥାର୍ଥତାବୋଧ, ଆଦରଣୀୟ ନୀତିବୋଧ ଇତ୍ୟାଦି ଦେବଙ୍କର ସହାୟତା କରିଛନ୍ତି । କିନ୍ତୁ ଆମ୍ଭେମାନେ ଯେତେବେଳେ ତାଙ୍କର ଗୋଟିଏ ଗୋଟିଏ ଚରିତ୍ରକୁ ଅଲଗା ଅଲଗା ରୂପରେ ଦେଖୁ, ସେତେବେଳେ ସେମାନେ କେଉଁ ଶ୍ରେଣୀର ପ୍ରତିନିଧିତ୍ୱ କରୁଛନ୍ତି ତାହା ଦେଖିବାକୁ ପାଇଥାଉଁ । ରକ୍ତମାଂସଧାରୀ, ସଂକୀର୍ଣ୍ଣତାରେ ରୁଦ୍ଧ, ସ୍ୱାର୍ଥାନ୍ଧ, ଏବଂ ବିରୋଧକାରୀ ସଂଖ୍ୟା ସାମୁହିକ ପ୍ରତିନିଧିତ୍ୱ କରୁଥିବା ପାତ୍ରଙ୍କ ସଂଖ୍ୟା ତୁଳନାରେ ଯଥେଷ୍ଟ ପରିମାଣରେ କମ୍ । ବ୍ୟକ୍ତିର ହିସାବରେ ଏମାନଙ୍କଠାରେ ଗଭୀରତା ନ ଥାଏ । ଯଦିଓ କେଶବଦେବ ମୋଟାମୋଟି ଭାବେ ନିଜର ଚରିତ୍ର ବାଛି ନେଉଥିଲେ, ତଥାପି ସେ ଚରିତ୍ରରୁ ସଂକୀର୍ଣ୍ଣତାକୁ ଦୂରକରି ତଥା ସମାନତାକୁ ମିଶାଇ ନୂତନଭାବେ ପାତ୍ର ସୃଷ୍ଟି କରୁଥିଲେ । ସେ ପାତ୍ରମାନେ ପ୍ରଧାନରୂପରେ ଆଶାର ପ୍ରତିନିଧି ଥିଲେ, ପ୍ରତୀକ ଥିଲେ । ଅନ୍ୟ ଭାଷାରେ କହିବାକୁ ଗଲେ, ସେମାନେ ସେତେ ପରିମାଣରେ ଯଥାର୍ଥ ଜୀବନର ପ୍ରତିନିଧି ଏବଂ ପ୍ରତୀକ ନ ଥିଲେ ।

କେଶବଦେବଙ୍କ ରଚନାଗୁଡ଼ିକ ବାସ୍ତବରେ ତାଙ୍କ ଅନ୍ତଃଜୀବନର ରୋମାଣ୍ଟିଷ୍ଟ ଏବଂ ରିଏଲିଷ୍ଟର ସଂଘର୍ଷରେ ରଙ୍ଗେଇ ଯାଇଛି । ଆମେ ସେ ସଂଘର୍ଷକୁ ବଡ ବା ଛୋଟ ହିସାବରେ ଦେଖିପାରୁ । ଯଦିଓ ଦେବ ବର୍ତ୍ତମାନ 70 ବର୍ଷ ପାଖାପାଖି ହେଲେଣି, ତଥାପି ତାଙ୍କ ଭିତରର ବିପ୍ଳବୀ କଳାକାର ଚୁପଚାପ୍ ବସିବାକୁ ଚାହେଁନାହିଁ । ଯେଉଁ ଶବ୍ଦାବଳୀର କୋମଳ ଅନୁକରଣରେ ମୃଦୁଳ ମଧୁର ସଙ୍ଗୀତ ଧାରା ଉତ୍ପନ୍ନ କରାଯାଇପାରେ, ସେଠାରେ ସେ ବୀରତ୍ୱ ଏବଂ ଉତ୍ସାହ ସୃଷ୍ଟି କରିବା ଲୋକ, ଉଗ୍ରଶବ୍ଦ ମୁଖରିତ ଯୁଦ୍ଧଗୀତ ଗାଇବାକୁ ଚାହିଁବା ଲୋକ ସେ । ତୀକ୍ଷ୍ଣ ଲକ୍ଷ୍ୟବୋଧ ହେତୁ, ସେ ରଙ୍ଗମଞ୍ଚର ପଛରେ ବସି ଚରିତ୍ରମାନଙ୍କୁ ନିୟନ୍ତ୍ରଣ କରିବା ବଦଳରେ ଚରିତ୍ର ତଥା ପାତ୍ରମାନଙ୍କ ସହିତ ମିଶି ଯୁଦ୍ଧବେଦୀର ରଙ୍ଗମଞ୍ଚ ଉପରକୁ ଆସିବାକୁ ଚାହିଁଛନ୍ତି କିମ୍ବା ଚରିତ୍ରଙ୍କ ମାଧ୍ୟମରେ ନିଜେ କିଛି କହିବାକୁ ଇଚ୍ଛା ପ୍ରକାଶ କରିଛନ୍ତି । କୌଣସି ଚରିତ୍ର ଯେ ସମ୍ପୂର୍ଣ୍ଣ ଭାବରେ ତାଙ୍କର ପ୍ରତିନିଧିତ୍ୱ କରିପାରିବ ଏ କଥା କହିବା ଭୁଲ, କିନ୍ତୁ ସେ କେଇଜଣଙ୍କ ମଧ୍ୟରେ ସେ ନିଜେ ମଧ୍ୟ ଜଣେ । ଶ୍ରେଷ୍ଠ କଳାକାର ଚରିତ୍ରର ପ୍ରତିନିଧିତ୍ୱ କରନ୍ତି । କିନ୍ତୁ କେଶବଦେବ ସର୍ବଦା ନିଜର ଚରିତ୍ର ତଥା କଳାକାର ମାନଙ୍କୁ ନିଜର ନିୟନ୍ତ୍ରଣରେ ରଖିଥାଆନ୍ତି ।

ସାମୁହିକ ପରିବର୍ତ୍ତନ ଅପେକ୍ଷା ରାଜନୈତିକ ସମାଲୋଚନାକୁ ପ୍ରାଧାନ୍ୟ ଦେଉଥିବା କେଶବଦେବଙ୍କ ଅନ୍ୟ ଏକ ପ୍ରସିଦ୍ଧ ରଚନା ହେଉଛି 'କାହାପାଇଁ' । 1950 ରେ ଲେଖା ଯାଇଥିବା ଉପନ୍ୟାସ ମୁଖ୍ୟତଃ ଦୁଇଟି ବିଭାଗରେ ବିଭକ୍ତ – ପ୍ରଥମଟି ହେଉଛି ତାର ମୁଖବନ୍ଧ ଏବଂ ଦ୍ୱିତୀୟଟି ହେଉଛି ସ୍ୱୟଂ ଉପନ୍ୟାସ । କୃଷ

ଚୈତନ୍ୟଙ୍କ ପରି ସମାଲୋଚକମାନେ କହନ୍ତି ଯେ, କଳାଶିଳ୍ପ ଭୂମିକା ଲେଖିବା ପରେ ଯେଉଁ ଫଳ ପ୍ରାପ୍ତି ହେବାର ଆଶା କରାଯାଇଥିଲା ତା ସହିତ ଉପନ୍ୟାସ ଯୋଡ଼ିବା ଫଳରେ ତାହା ସମ୍ପୂର୍ଣ୍ଣ ଭାବରେ ନଷ୍ଟ ହୋଇଗଲା । କାରଣ ଉପନ୍ୟାସ ହେଉଛି ଭୂମିକାରେ ସ୍ଥାପନ କରାଯାଇଥିବା ସିଦ୍ଧାନ୍ତର କଥା, ରୂପର ରୂପାନ୍ତର ମାତ୍ର । ଚରିତ୍ରର ମୁଖ୍ୟ ହେଉଛନ୍ତି କମ୍ୟୁନିଷ୍ଟ ପାର୍ଟିର ସଦସ୍ୟ । 'କିସ୍ କେ ଲିୟେ'ରେ ଦେବ ଏମିତି ଏକ ନେତାର ଚରିତ୍ର ଚିତ୍ରଣ କରିଛନ୍ତି, ଯେ ନିଷ୍ଠୁର ଚିତ୍ତ, କ୍ରୁର ଏବଂ କ୍ଷମତାଲୋଭୀ ତଥା ନିଜର ବ୍ୟକ୍ତିଗତ ଉନ୍ନତି, ଫାଇଦା ସକାଶେ ସେ ଦଳକୁ ନିଜର ନିୟନ୍ତ୍ରଣରେ ରଖିବାକୁ ଚାହିଁଛନ୍ତି ଓ ତା ସଙ୍ଗେ ସଙ୍ଗେ ତାର ସତ୍ୟାନାଶ ମଧ୍ୟ କରିଛନ୍ତି । ଷ୍ଟାଲିନ୍‌ଙ୍କର ଶାସନକାଳରେ ରୁଷରେ ଯେଉଁ ଶୁଦ୍ଧିକରଣ ପ୍ରକ୍ରିୟା ଥିଲା, ସେଥିରୁ ଲେଖକ ପ୍ରେରଣା ପାଇଥିଲେ । ସେ ନାଟକୀୟତାକୁ ନିଜ ସ୍ୱରୂପ ଦେବା, ଦେବଙ୍କର ଧ୍ୟେୟ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ଉପନ୍ୟାସ ରଚନା କରିବା ସମୟରେ ଅଶାନ୍ତିକର ତଥା ପ୍ରତିକୂଳ ପରିସ୍ଥିତି ହେତୁ ତାଙ୍କର ଆତ୍ମସଂଯମ ନଷ୍ଟ ହୋଇଥିଲା ଏବଂ କଳାତ୍ମକ ଲକ୍ଷ୍ୟ ଅପେକ୍ଷା ରାଜନୈତିକ ପରିବର୍ତ୍ତନ ପ୍ରତି ଅଧିକ ଧ୍ୟାନ ରହିଥିବା ସ୍ୱାଭାବିକ । 'କିସ୍ କେ ଲିୟେ' ପଢ଼ିବା ସମୟରେ ଏମିତି ଲାଗେ, ଯେମିତି କୌଣସି ସର୍କସରେ ରିଙ୍ଗ୍ ମାଷ୍ଟର ପଶୁମାନଙ୍କ ସହିତ ମୈଦାନକୁ ଆସିଗଲାପରେ ନିଜର କଳାକୌଶଳ ପ୍ରଦର୍ଶନ କରିବା ପୂର୍ବରୁ ତା ନିଜ ବିଷୟରେ ଲମ୍ବାଚୌଡ଼ା ଭାଷଣ ଦେଉଛି ।

'କିସ୍ କେ ଲିୟେ' ସମ୍ବନ୍ଧରେ ମୁଁ ବିସ୍ତୃତ ଭାବରେ କହିବାର କାରଣ ହେଉଛି ଯେ ଏହି ଉପନ୍ୟାସ, 'ଆଇନା' ମଧ୍ୟ କେଶବଦେବଙ୍କ ରାଷ୍ଟ୍ରୀୟ ଚେତନାରେ ଉଦ୍‌ବୁଦ୍ଧ । 'ଆଇନା'ରେ ଲେଖକ ସେ ସମୟର ସ୍ମୃତିଚାରଣ କରିଛନ୍ତି । ଯେତେବେଳେ ସେ ମାର୍କସଙ୍କର ବାଣୀ 'ବିଶ୍ୱର ସମଗ୍ର ଶ୍ରମିକ ସମାଜ, ସଂଗଠିତ ହୋଇଯାଅ, ତୁମର ହରାଇବାର କିଛିନାହିଁ, କେବଳ ତୁମ ହାତରେ ପିନ୍ଧା ହୋଇଥିବା ଜଞ୍ଜିର'' ଇତ୍ୟାଦି ଜୋରରେ ଦୋହରାଉ ଥିଲେ, ସେତେବେଳେ ଗୋଟିଏ ସମତ୍ୱ ସୁନ୍ଦର ସାମୁହିକ ବ୍ୟବସ୍ଥାର ସ୍ୱପ୍ନ ଦେଖୁଥିଲେ । ମୃତ୍ୟୁର ମଧ୍ୟ ଭୟ କରୁ ନ ଥିଲେ, ସେତେବେଳେ କେବଳ ତା' ଉପରେ ଚିନ୍ତା କରୁଥିଲେ । 'ଆଇନା'ର କଥାବସ୍ତୁର ସମୟ ହେଉଛି ବିଂଶ ଶତାବ୍ଦୀ ଚାଳିଶ ଦଶକ । ଯଦି ସେ ସମୟରେ ବା ସେ ପାଖାପାଖି ସମୟରେ ଏହି ଉପନ୍ୟାସ ପ୍ରକାଶିତ ହୋଇଥାଆନ୍ତା ତା ହେଲେ ଏହା ଅତ୍ୟନ୍ତ ବିପ୍ଳବକାରୀ ହୋଇଥାନ୍ତା । ସରକାର ଦେଶଦ୍ରୋହ ଅପରାଧରେ ଏହି ଉପନ୍ୟାସକୁ ବାଜ୍ୟାପ୍ତ କରିଥାନ୍ତେ । କିନ୍ତୁ ଏହା ପ୍ରକାଶିତ ହୋଇଥଲା 1961 ରେ ଏବଂ ଏହା ମଧ୍ୟ ଲେଖାହୋଇଛି । ତେଣୁ ଏହାର ଐତିହାସିକ ପ୍ରାଧାନ୍ୟ ମଧ୍ୟ ନଷ୍ଟ ହୋଇଯାଇଛି । ଯାହା ହେଉନା କାହିଁକି, ଇତିହାସର କୌଣସି ଏକ ବିଶେଷ ସମୟରେ ତଥା ଅତୀତର ପୁନଃ ଆବିଷ୍କାର କରିବା ତଥା ସେଥିରୁ ପ୍ରେରଣା ପାଇବା ଏବଂ ବର୍ତ୍ତମାନର ପ୍ରଚଳିତ ବ୍ୟବସ୍ଥା ଜାଣିବାରେ ଏହା ଯେ ସହାୟକ ହେବ ଏଥିରେ ଆଦୌ ସନ୍ଦେହ ନାହିଁ । 1938 ମିସହାରେ ଯେଉଁ କାରଣ ପାଇଁ ଆଲପୁଝା ସହରରେ ହତ୍ୟାକାଣ୍ଡ ହୋଇଥିଲା କେଶବଦେବ ତାହାକୁ ଆବିଷ୍କାର କରିଛନ୍ତି । ସେଇ ସୁବିଦିତ ଘଟଣା ଗୁଡ଼ିକୁ ବର୍ଣ୍ଣନା କରିବା ସମୟରେ ଦେବଙ୍କ ନିକଟରେ ଯେଉଁ ଶକ୍ତି ଉତ୍ସାହ ଦେଖାଦିଏ, ଜଣାପଡେ ସତେ ଯେମିତି ଗତକାଲି ଏ ଘଟଣାଗୁଡ଼ିକ ଘଟିଛି । ଯଦି ଏହି ଉପନ୍ୟାସ 1930-40 ମଧ୍ୟରେ ଲେଖାଯାଇଥାନ୍ତା, ତା ହେଲେ ହୁଏତ ଐତିହାସିକ କର୍ତ୍ତବ୍ୟ ସମାଧାନ କରିବା ଦିଗରେ ଏହା ସହାୟକ ହୋଇଥାନ୍ତା । ଯଦି ସମକାଳୀନ ତଥା ଭବିଷ୍ୟତ ଜୀବନ ସହିତ ଏହାର ସମ୍ପର୍କ ଯୋଡି ଦିଆଯାଆନ୍ତା ତା ହେଲେ ଏହାର ମୂଲ୍ୟ ଅନେକ ବଢ଼ି ଯାଆନ୍ତା । କିନ୍ତୁ ସେ କ୍ଷେତ୍ରରେ ଦେବ କେବଳ 1938-39 ପର୍ଯ୍ୟନ୍ତ ପହଞ୍ଚି ପାରିଥାନ୍ତେ । ହୁଏତ ସେଥିପାଇଁ 'ଆଇନା'କୁ ଅସମୟରେ ଲେଖା ଯାଇଥିବା ରଚନା ବୋଲି କୁହାଯାଆନ୍ତା ।

ଦେବ କହନ୍ତି ଯେ 'ଆଇନା' ହେଉଛି ଗୋଟିଏ ଅନୁସ୍ମରଣୀୟ ଉପନ୍ୟାସ । ଚରିତ୍ରଗୁଡ଼ିକ ମଧ୍ୟରେ 'ହାବା' ହେଉଛି ସ୍ୱୟଂ ତାଙ୍କର ପ୍ରତିନିଧି । ଦେବଙ୍କର ଯଥାର୍ଥବୋଧ ପାଇଁ ଗୋଟିଏ ନିର୍ଦ୍ଦିଷ୍ଟ ସୀମା ପର୍ଯ୍ୟନ୍ତ ଏହା ପ୍ରମାଣ କରେ । ଦେବ ସାଧାରଣ ଶ୍ରମିକର ଜୀବନକୁ ଭଲଭାବେ ଜାଣିଛନ୍ତି । ଏଣୁ ତାଙ୍କ ପକ୍ଷରେ ଏ କଥା ଆବିଷ୍କାର କରିବା କଷ୍ଟକର ବ୍ୟାପାର ନୁହେଁ । କିନ୍ତୁ ଏହା ରଚନା କରିବାକୁ ଚଉଦମାସ ଲାଗିଯାଇଥିଲେ ହେଁ 'ଆଇନା' ରେ ଗଭୀରତା ଏବଂ ବ୍ୟାପକତାର ଅଭାବ ପରିଲକ୍ଷିତ କରାଯାଉଛି । ଯଦିଓ ସାଧାରଣ ଜୀବନ ଚିତ୍ରିତ କରିବାରେ ଦେବ ସିଦ୍ଧହସ୍ତ ଏବଂ ତାହା ତାଙ୍କର ଅନ୍ୟାନ୍ୟ ରଚନାରେ ବେଶ ଭଲଭାବରେ ପ୍ରସ୍ଫୁଟିତ ହୋଇଛି ତଥାପି ଏ ଉପନ୍ୟାସରେ ଏହାର ଝଲକ ସର୍ବତ୍ର ନ ହୋଇ କ୍ୱଚିତ୍ ଦେଖାଦେଇଛି । ବ୍ୟକ୍ତି ଭାବରେ କୋଳୁରାମନ ଏବଂ ଗୋରୀ ନିଲୀ ଉପରେ ଯେଉଁ ଛାପ ପଡ଼ିଛି ତାହା ଦ୍ୱିତୀୟ ବଂଶଧରମାନଙ୍କ ଉପରେ ସେପରି ଭାବରେ ପଡ଼ିନାହିଁ । ଏହାର କାରଣ ମଧ୍ୟ ରହିଛି । କୋଳୁରାମନ ଏବଂ ନିଲୀ ଏମାନେ ଦୁଇଜଣ ହେଉଛନ୍ତି ବ୍ୟକ୍ତି । କିନ୍ତୁ ଏଣ୍ଟୋନି ଏବଂ ରକ୍କି ହେଉଛନ୍ତି ବହୁ ଆଶା-ଆକାଂକ୍ଷାର ପ୍ରତୀକ, ଅବଧାନପୂର୍ଣ୍ଣ ପରିବର୍ତ୍ତନର ପ୍ରତିନିଧି । 'ହାବା' ବିଷୟରେ ଏହାହିଁ କୁହାଯାଇ ପାରେ, ଯେ ଦେବଙ୍କର ସୀମାତିବର୍ତ୍ତିନୀ ରୋମାନ୍‌ଟିସିଜିମ୍‌ରେ ସେ ଚରିତ୍ରରେ ଅବିଶ୍ୱାସନୀୟତାର ମୁକୁଟ ମଧ୍ୟ ପିନ୍ଧାଇ ଦେଇଛନ୍ତି । 'ହାବା'ର ନାମ, ଗ୍ରାମ କାହାରିକୁ ଜଣାନାହିଁ । ଯିଏ ସର୍ବତ୍ର ବିଦ୍ୟମାନ ଏବଂ ସର୍ବତ୍ର ଉଗ୍ରରୂପ ଧାରଣକରେ, ହୁଏତ ସେ ପିଲାମାନଙ୍କୁ କଥାବାର୍ତ୍ତାରେ ଭୁଲାଇଦେବ । ହଁ, 'ହାବା' ନାମ କହିଲେ ହସର ସୂଚନା ମିଳେ । ମୁଣ୍ଡ ଝୁଲ ତୁଣ୍ଡରେ ମାରି, ଶୋଷଣ ଏବଂ ପୀଡ଼ନ ସହିବାବାଲା ସାଧାରଣ ମନୁଷ୍ୟ ମଧ୍ୟରେ ଏମିତି ଏକ ଅସାଧାରଣ ଲୋକର ଅବତାରଣା ଉପସ୍ଥାପନ କରିବା ହେତୁ ଉପନ୍ୟାସର ଗମ୍ଭୀର ବାତାବରଣର ବିଶ୍ୱାସନୀୟତା ଉପରେ ବଡ଼ କ୍ଷତି ପହଞ୍ଚିଛି । ଏହା ବଦଳରେ ଦେବ ଯଦି ଦୃଢ଼ତାର ସହିତ ସେ ସମୟର ଜଣେ ଶ୍ରମିକନେତାର ଉପଯୁକ୍ତ ଚରିତ୍ର ଚିତ୍ରଣ କରିଥାନ୍ତେ ତା ହେଲେ ହୁଏତ 'ଆଇନା' ସେ ସମୟର ବାସ୍ତବ 'ଆଇନା' ହିଁ ହୋଇଥାନ୍ତା । ଆଜିର ବ୍ୟବସ୍ଥାରେ 'ହାବା' କେବଳ 'କେରିକେଚର' ବା 'ହାସ୍ୟାସ୍ପଦ' ହିଁ ହୋଇଗଲା – ଜୀବିତ ଚରିତ୍ରମାନଙ୍କ ମଧ୍ୟରେ ଯେ କୌଣସି ଭାବରେ ପହଞ୍ଚିଥିବା ଗୋଟିଏ କାର୍ଟୁନ ମାତ୍ର ! ଏବଂ ଆଇନା ହେଉଛି ମଇଳା ଏବଂ ଅପରିଷ୍କାର ଆଇନା !

ଏସବୁ କଥା ସତ୍ତ୍ୱେ ଏହା ମଧ୍ୟ କୁହାଯାଇପାରେ ଯେ, କେଶବଦେବ ହେଉଛନ୍ତି କେରଳର ଶ୍ରମିକ ଆନ୍ଦୋଳନର ଜଣେ ଦ୍ରଷ୍ଟା ଯେ ଏହାକୁ ଖୁବ୍ ସୁନ୍ଦରଭାବରେ ଚିତ୍ରଣ କରିପାରିଛନ୍ତି । ମାଲିକଙ୍କୁ ଈଶ୍ୱରଙ୍କ ପ୍ରତିନିଧି ମନେ କରୁଥିବା ଶ୍ରମିକମାନଙ୍କ ଆସ୍ତେ ଆସ୍ତେ ଜାଗରିତ ଏବଂ ସେମାନେ ସଂଗଠିତ ହେବା , ଏକ ସୁନ୍ଦର ଭବିଷ୍ୟତ ଆଶାରେ ପ୍ରତୀକ୍ଷା କରିବା – ଏ ସମସ୍ତ କଥାକୁ ଦେବ ଅନାୟାସରେ ଅଥଚ ଆକର୍ଷକ ଶୈଳୀରେ ଚିତ୍ରିତ କରିଛନ୍ତି । ବିଶେଷକରି ଏହି ରଚନା ଅଣକେରଳୀୟ ପାଠକମାନଙ୍କୁ କେରଳର ସାମୂହିକ ଇତିହାସର ଗୋଟିଏ ବିଶେଷ ସମୟକୁ ପରିଚିତ ହେବାରେ ସାହାଯ୍ୟ କରିବ । କୋଳୁରାମନ୍, ଏବଂ ଗୋରୀ ନିଲୀ, ଯେଉଁମାନେ ଧର୍ମଗ୍ରହଣ ପରେ ଗର୍ଜୀ ଏବଂ ଏଲୀ ରୂପରେ ପରିଚିତ ହେଲେ, ସେମାନେ ସ୍ନେହ ସମ୍ପନ୍ନ କେରଳ ଶ୍ରମିକ ଦମ୍ପତିଙ୍କ ପ୍ରତିନିଧି । ଆମେ ସେମାନଙ୍କୁ କେରଳର ଯେ କୌଣସି ସ୍ଥାନରେ ଦେଖିବାକୁ ପାଇପାରୁ । ଓ୍ୱକନ ସାହେବ ଏବଂ କୁଞ୍ଜୁ ଶଙ୍କରନ୍ ହେଉଛନ୍ତି କେରଳୀ ପୁଞ୍ଜିପତିମାନଙ୍କ ପ୍ରାରମ୍ଭକାଳୀନ ଭାବଧାରାର ପ୍ରତୀକ । 'କମ୍‌ରେଡ୍' ନୀଳ କଣ୍ଠନ୍, ଯେ ଶ୍ରମିକ ମାନଙ୍କ ନେତୃତ୍ୱ ନେବା ସକାଶେ ଉଚ୍ଚକୁଳରୁ ତଳକୁ ଓହ୍ଲାଇ ଆସିଛନ୍ତି, (ଦେବ ତାଙ୍କର 'ଦାମିକା ଘଣ୍ଟା' କଥା ପାଠକମାନଙ୍କ ଆଗରେ କହିବାକୁ ଭୁଲି ନାହାନ୍ତି) ସେ କେରଳୀ ମାନଙ୍କ ସୁପରିଚିତ ଚରିତ୍ର ।

କେଶବଦେବ ହେଉଛନ୍ତି ବିରୋଧ (ପ୍ରତିବାଦ) ର ନାୟକ । ତାଙ୍କର ଆତ୍ମଜୀବନୀ ତିନି ଖଣ୍ଡରେ ପ୍ରକାଶିତ । କାହାଣୀ ସଂଗ୍ରହର ନାମ ମଧ୍ୟ 'ବିରୋଧ' (ଏତିପ୍ପୁ) ରଖାଯାଇଛି । ବିରୋଧ କରିବା (ପ୍ରତିବାଦ କରିବା) କେରଳୀୟ ସାମାଜିକ ଜୀବନର ଅବିଭାଜ୍ୟ ଅଙ୍ଗ, ଏବଂ ବାଦ–ବିବାଦ କରିବା କେରଳୀୟ ସ୍ୱଭାବ ମୁଖମୁଦ୍ରାରେ ପ୍ରକାଶିତ ହୋଇଥାଏ । ଯଦିଓ କେଶବଦେବ ସର୍ବଦା ବାଦ, ବିବାଦର ବିଷୟ ହୋଇ ରହିଯାଇଛନ୍ତି ତଥାପି ତାଙ୍କର ଜୀବନକାଳ ମଧ୍ୟରେ ତାଙ୍କୁ ପୂର୍ଣ୍ଣ ସାହିତ୍ୟିକର ସମ୍ମାନ ମିଳିଛି । ଏହା କେଶବ ଦେବଙ୍କ ପାଇଁ ତଥା କେରଳବାସୀଙ୍କ ପାଇଁ ପ୍ରଶଂସାର କଥା ।

ଯଦି ବାକ୍-ବିରୋଧ କେରଳୀୟ ଜୀବନର ମୁଖମୁଦ୍ରା, ତାହେଲେ ବିରୋଧ ହୋଉଛି କେଶବଦେବଙ୍କର ପ୍ରାଣବାୟୁ । ଅନେକ ସମୟରେ ତାଙ୍କ ବିରୋଧ ହୁଏତ କେବଳ ବିରୋଧ କରିବା ସକାଶେ ଏକ ଉଦ୍ଦିଷ୍ଟରେ ପର୍ଯ୍ୟବସିତ ହୋଇଯାଇଛି । କିନ୍ତୁ ବାସ୍ତବ କ୍ଷେତ୍ରରେ ଏହି ଭାବନା ତାଙ୍କର ସାହିତ୍ୟ ସୃଷ୍ଟିକୁ ଉଜ୍ଜ୍ୱଳତର କରିଛି । କେଶବଦେବଙ୍କ ବୀରତା ଏବଂ ସ୍ପଷ୍ଟବାଦିତା ରହିଛି ତଥା ସେ ହେଉଛନ୍ତି ଜୀବନର ନିତ୍ୟ ପ୍ରେମୀ ଏବଂ ନିଜେ ଜଣେ ନିତ୍ୟ ଯୁବକ ବିଦ୍ୟାର୍ଥୀ । ଜୀବନ ପ୍ରତି ହେଉଥିବା ଅଭିନିବେଶ ତଥା ବିଶ୍ୱାସ ହିଁ ତାଙ୍କୁ ତାଙ୍କ ସ୍ୱପ୍ନର ଅଟ୍ଟାଳିକା ନିର୍ମାଣ କରିବାରେ ତଥା ଜୀର୍ଣ୍ଣ ଅଟ୍ଟାଳିକାକୁ ପୁନରୁଦ୍ଧାର କରିବାରେ ପ୍ରେରଣା ଯୋଗାଇ ଆସିଛି । ନୂତନ ଲେଖକମାନଙ୍କୁ ସେ ଦେଇଥିବା ବାର୍ତ୍ତା ଏ ପ୍ରସଙ୍ଗରେ ଉଲ୍ଲେଖନୀୟ । ''ଲେଖ, ଏତିକି ମୋର କହିବା କଥା । ଲେଖ, ଲେଖନୀ ଚାଲୁ ରଖ ! ଆଉ ଲେଖିବା ଅର୍ଥ ଜୀବନକୁ ଅଧ୍ୟୟନ କରିବା । ଏଣୁ ଜୀବନକୁ ଅଧ୍ୟୟନ କରିବା ହେଉଛି ପ୍ରଧାନ କାର୍ଯ୍ୟ ।''

କେଶବ ଦେବ ପୁରାପୁରି ଜଣେ କେରଳୀ । ତେବେ, ସେ କେରଳ ବିଷୟରେ ଲେଖିଛନ୍ତି କି ନାହିଁ ତାହା ସନ୍ଦେହଜନକ । କେଶବଦେବଙ୍କ ରଚିତ 'ଆଇନା' ଉପନ୍ୟାସ କେରଳୀର ସ୍ୱଭାବ – ବୈଚିତ୍ର୍ୟର ସର୍ବଶ୍ରେଷ୍ଠ ଉଦାହରଣ । ମୁଁ ଆନନ୍ଦ ଏବଂ ସ୍ୱାଭିମାନର ସହିତ ଏହି ପୁସ୍ତକ ପ୍ରିୟ ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରୁଛି ।

- ଟି. ଏନ୍. ଜୟଚନ୍ଦ୍ରନ୍

# 1

ଏଣ୍ଟୋନିର ବାପାର ନାମ କୋଲୁରାମନ୍ । କୋଲୁରାମନ୍‌ର ବାପାର ନାମ ଥିଲା କୋଛଯ୍ୟପନ୍ ଏବଂ ସେ ତାଡି ପ୍ରସ୍ତୁତ କରିବା କାମରେ ପାରଙ୍ଗମ ଥିଲା ।

ଗୋରୀ 'ନୀଲୀ'ର ବାପାର ନାମ ଥିଲା କଣ୍ଡନ୍ ପୁଲୟ୍ୟନ୍[1] । ସେ ମାଟିକୋଡ଼ିବା କାମରେ ଖୁବ୍ ଦକ୍ଷ ଥିଲା ।

କୋଛଯ୍ୟପନ୍ ଏବଂ କଣ୍ଡନ୍ ପୁଲୟ୍ୟନ୍ ଉଭୟେ ଓ୍ୱକଛନ[2]ର ନଡିଆ ବଗିଚାରେ ରହୁଥିଲେ । ବଗିଚାର ଦକ୍ଷିଣ ପାର୍ଶ୍ୱରେ କଣ୍ଡନ୍ ପୁଲୟ୍ୟନ୍ ଏବଂ ଉତ୍ତର ପାର୍ଶ୍ୱରେ କୋଛଯ୍ୟପନ୍ ଚୌବନ୍[3] ପରିବାର ରହୁଥିଲେ । କହିବାର ଉଦ୍ଦେଶ୍ୟ ହେଉଛି, ଯେ ଉଭୟେ ଗୋଟିଏ ବଗିଚାରେ ରହିବାପରେ ମଧ୍ୟ ଛୁଆଁ ଛୁଇଁରେ ବେଶ ତାରତମ୍ୟ ରଖୁଥିଲେ । ଦୁଇଜଣଙ୍କ ବଗିଚାର ଠିକ୍ ମଝିରେ ପାଣି ବୋହିଯାଉଥିବା ନାଳଟିଏ ମଧ୍ୟ ଥିଲା ।

କୋଛଯ୍ୟପନର ପ୍ରଥମ ପୁଅର ନାମ ଥିଲା କୋଲୁରାମନ୍ । ତାର ବୟସ 24 ରୁ ପାରି ହୋଇଯାଇ ଥିଲା । ସେ ତୃତୀୟ ବା ଚତୁର୍ଥ ଶ୍ରେଣୀଯାଏ ପାଠ ପଢିଥିଲା । ସେ ଦେଖିବାକୁ ମଧ୍ୟ ବେଶ ବଳିଷ୍ଠ, ହୃଷ୍ଟପୁଷ୍ଟ, ସୁନ୍ଦର ଓ ସ୍ୱାସ୍ଥ୍ୟବାନ । ଯେତେବେଳେ ସେ ତାର କୁଞ୍ଚୁକୁଞ୍ଚିଆ ବାଳକୁ ବେଶ ଯତ୍ନରେ କୁଣ୍ଡାଇ ବାହାରକୁ ଯାଉଥିଲା ସେତେବେଳେ ତାକୁ ଦେଖିବା ସକାଶେ ଗୋରୀ ନିଳୀ 'ନିଜ' ଘର ଅଗଣାର ଉତ୍ତର ପାର୍ଶ୍ୱରେ ଛିଡା ହୋଇ ରହୁଥିଲା ।

କୋଲୁରାମନ କୋଚି (କୋଚିନ୍)ର ବନ୍ଦରରେ ଶ୍ରମିକ ଭାବରେ ଜାହାଜରେ ମାଲ ଖଲାସ କରିବା କାମ କରୁଥିଲା । ସେତେବେଳେ କୋଚିନକୁ ଜାହାଜ ଆସୁଥିଲେ ମଧ୍ୟ ବନ୍ଦରର ଭିତରକୁ ଆସିବାକୁ ବା ଘାଟକୂଳକୁ ଆସିବାର ଆଦୌ ସୁବିଧା ନଥିଲା । ମାଲବାହୀ ଜାହାଜ ଗୁଡିକ ସମୁଦ୍ରଠାରୁ ଦୂରରେ ଲଙ୍ଗର ପକାଉଥିଲେ । ନୌକାଦ୍ୱାରା ହିଁ ସେଠାରୁ ମାଲପତ୍ର ଓହ୍ଲାଇ କୂଳକୁ ଅଣାଯାଉଥିଲା । ଏଭଳି ଏକ ନୌକାରେ କୋଲୁରାମନ୍ ଜଣେ ଶ୍ରମିକଭାବରେ କାମ କରୁଥିଲା । ମାଲ ଓହ୍ଲାଇବା ଅନୁପାତରେ ମଜୁରୀ ମଧ୍ୟ ଦିଆଯାଉଥିଲା । ଏଥିପାଇଁ ଅନ୍ୟାନ୍ୟ ଶ୍ରମିକମାନଙ୍କ ତୁଳନାରେ ସେମାନଙ୍କୁ ବେଶୀ ମଜୁରୀ ମିଳିଯାଉଥିଲା ।

କୋଛଯ୍ୟପନ୍ ଓ କୋଲୁରାମନ୍ ଉଭୟେ କାମ କରିବା ଯୋଗୁଁ ସେମାନଙ୍କ ପରିବାର ବେଶ ଖୁସିରେ ଚଳି

1. ପୁଲୟ୍ୟନ–କେରଳର ଏକ ନୀଚ ଜାତି (ହରିଜନ) ।

2. ଗୋଟିଏ ବଗିଚାର ମାଲିକର ନାମ ।

3.ଚୌବନ–ଏକ ଅପବର୍ଣ୍ଣ ଜାତିର ନାମ । ଏହାକୁ 'ଇର୍ଷବନ' ବା 'ତୀୟନ୍' ମଧ୍ୟ କୁହାଯାଏ । ଚୌବନମାନେ ନିଜକୁ ପୁଲୟ୍ୟନମାନଙ୍କ ଅପେକ୍ଷା ଉଚ୍ଚ ଶ୍ରେଣୀର ମନେକରନ୍ତି । ଦୁଇ ଶ୍ରେଣୀର ଲୋକଙ୍କ ମଧ୍ୟରେ ଖିଆପିଆ ଏବଂ ବିବାହ ଆଦି ଚଳେ ନାହିଁ ।

ଯାଉଥିଲା । କିଛି କିଛି ସଞ୍ଚୟ ମଧ୍ୟ ହୋଇଯାଉଥିଲା । କେବେ କେବେ ପଡୋଶୀମାନଙ୍କର ଦରକାର ପଡିଲେ ସେମାନେ କିଛି ଋଣ ମଧ୍ୟ ନେଇଯାଉଥିଲେ । ଏଥିପାଇଁ ଆସ୍ତେ ଆସ୍ତେ କୋଳୁରାମନର ମା ପାରୁ (ପାର୍ବତୀ) ପଡୋଶୀ ସ୍ତ୍ରୀ ଲୋକମାନଙ୍କ ଆଗରେ ଏକ ସମ୍ମାନନୀୟ ସ୍ଥାନର ଅଧିକାରିଣୀ ହୋଇପାରିଥିଲା ।

କୃଷକମାନଙ୍କ ପାଇଁ କଣ୍ଣନ୍ ପୁଲୟନର ଏକ ସ୍ୱତନ୍ତ୍ର ମୂଲ୍ୟ ଥିଲା । ସେ ଏକୁଟିଆ ଦୁଇଜଣ ଲୋକଙ୍କର କାମ କରିବା ସଙ୍ଗେ ସଙ୍ଗେ ଦେଢଜଣଙ୍କର ମଜୁରୀ ବି ନେଉଥିଲା । କିନ୍ତୁ ପ୍ରତ୍ୟେକଦିନ ସେ ଯାହା ରୋଜଗାର କରୁଥିଲା ସବୁ ଖାଇବାରେ ଖର୍ଚ୍ଚ କରିଦେଉଥିଲା । ସେ ବେଶ ଖାଉଥିଲା । ଏବଂ ତାଡି ବି ଖୁବ୍ ପିଉଥିଲା । ଯଦି ନିଜ ପାଖରେ ଥିବା ପଇସାରେ ତାଡି ପିଇ ମନବୋଧ ହେଉ ନଥିଲା ତେବେ ଅନେକ ସମୟରେ ନଡିଆଗଛରେ ଚଢି ଚୋରୀକରି ତାଡି ପିଇବାରେ ସେ କେବେ କୁଣ୍ଠା ପ୍ରକାଶ କରୁ ନ ଥିଲା ।

କଣ୍ଣନର ସ୍ତ୍ରୀ ଅକ୍ଷକୀ [1] ପ୍ରଥମେ ଯେଉଁ ଝିଅକୁ ଜନ୍ମ ଦେଇଥିଲା, ସେ ଝିଅ ମରିଯାଇଥିଲା । ଦ୍ୱିତୀୟ ଝିଅ ଥିଲା 'ନିଲୀ' । ତାର ରଙ୍ଗ ବେଶ ଗୋରା ଥିଲା । ସେଥିପାଇଁ ସମସ୍ତେ ତାକୁ 'ଗୋରୀ ନିଲୀ' ବୋଲି ଡାକୁଥିଲେ । ଯେତେବେଳେ ଅକ୍ଷକୀର ଝିଅ ଜନ୍ମ ହେଲା ସେତେବେଳେ ଲୋକ କହିବାକୁ ଲଗିଲେ, "କଳା କୁକୁଡା ଧଳା ଅଣ୍ଡା ଦେଇଛି ।" ଅବଶ୍ୟ ତାର ପଛରେ ଗୋଟିଏ କାହାଣୀ ମଧ୍ୟ ଥିଲା ।

ଓ୍ୱକଛନ୍ କେବେକେବେ ସନ୍ଧ୍ୟା ସମୟରେ ନିଜ କ୍ଷେତ ଦେଖିବା ସକାଶେ ବାହାରି ପଡୁଥିଲା । ସେ ଦେଖିବାକୁ ଖୁବ୍ ଗୋରା ଥିଲା । ବଡ ନିଶ ଏବଂ କଲି ମଧ୍ୟ ରଖିଥିଲା । ଯେତେବେଳେ ସେ ଧୋତି ଆଉ ମୁଲାୟମ ଯୋତା ପିନ୍ଧି ବାହାରି ପଡୁଥିଲା ସେତେବେଳେ ମନେ ହେଉଥିଲା ସତେ ଯେମିତି କୌଣସି ନାଟକର ରାଜାର ଭୂମିକାରେ ଅଭିନୟ କରୁଛି । ଜମିବାଡିର ଦେଖା ଦେଖି କରିବା ଏବଂ ଚାଷୀମାନଙ୍କୁ ସେମାନଙ୍କର କୁଶଳ ପ୍ରଶ୍ନ ପଚାରିବା ଥିଲା ତାର ସାନ୍ଧ୍ୟଭ୍ରମଣର ଉଦ୍ଦେଶ୍ୟ । ଚାଷୀମାନଙ୍କ ପ୍ରତି ସେ ଦୟାଳୁ ଥିଲା । ବିଶେଷତଃ ଯେଉଁ ଲୋକମାନଙ୍କର ଦେଖିବା ଭଳି ସୁନ୍ଦରୀ ସ୍ତ୍ରୀ ଥିଲେ, ସେମାନଙ୍କ ପ୍ରତି ସେ ଅଧିକ ସହାନୁଭୂତି- ଶୀଳ ଥିଲା । ଏ ଭଳି ଭାବେ ସେ ସହାନୁଭୂତିର ମୁଖ୍ୟ ପାତ୍ର ଥିଲା ଚାଷୀ କଣ୍ଣନ୍ ପୁଲୟନ୍ ।

ଅକ୍ଷକୀ ପୁଲୟୀ ଆଖି ଯୋଡିକ ଦେଖିବାକୁ ବେଶ ସୁନ୍ଦର ଓ ହସ ମଧ୍ୟ ଆକର୍ଷଣ ଥିଲା । ତେଣୁ ତାଙ୍କ ସେ ଘରର ଅଗଣାରେ ଓ୍ୱକଛନ ଡେରି ପର୍ଯ୍ୟନ୍ତ ବସି ରହୁଥିଲା । ଓ୍ୱକଛନ ସେଠାରେ ବସିବା ଓ ଆରାମ କରିବା ସକାଶେ ଗୋଟିଏ "କାନଭାସ" ଚେଆର ସ୍ୱତନ୍ତ୍ର ଭାବେ ତିଆରି କରାଯାଇଥିଲା । ଯେତେବେଳେ ଓ୍ୱକଛନ ସେଠାରେ ପହଞ୍ଚିଯାଉଥିଲା ସେତେବେଳେ ଅକ୍ଷକୀ ଶୀଘ୍ର ବସିବା ସକାଶେ "କାନଭାସ" ଚେଆରକୁ ଅଗଣାରେ ପକାଇ ଦେଉଥିଲା । ସେତେବେଳେ ଓ୍ୱକଛନ ପାଇଁ ପାନ କିଣିବା ସକାଶେ କଣ୍ଣନ ବାହାରକୁ ଚାଲି ଯାଉଥିଲା । କେବଳ ଥରେ ଦୁଇଥର ପାନ କିଣିବା ସକାଶେ ଓ୍ୱକଛନ କଣ୍ଣନକୁ ପୁରା ଟଙ୍କାଏ ଲେଖାଏ ଦେଉଥିଲା । ଯେତେବେଳେ କଣ୍ଣନ୍ ଘରୁ ପାନ କିଣିବା ସକାଶେ ଯିବାକୁ ବାହାରେ, ସେତେବେଳେ ଓ୍ୱକଛନ ପାଟି କରି କହେ ଯେ – "ଯଦି ଚାହୁଁ ତେବେ ଦୋକାନ ହୋଇକରି ମଧ୍ୟ ଆସିପାରୁ ।"

1. ଅକ୍ଷକୀ ଶବ୍ଦର ଅର୍ଥ ସୁନ୍ଦରୀ ।

ଓ୍ୱକଛନ୍ କହୁ ବା ନକହୁ, କଣ୍ଣନ୍ ନିଶ୍ଚୟ ତାଡି ପିଇବାକୁ ଯାଉଥିଲା ।

ପଡୋଶୀ ଲୋକମାନେ ଏ ସବୁକିଛି ଦେଖୁଥିଲେ । ଦେଖିବାପରେ ମଧ୍ୟ ସେମାନେ ନ ଦେଖିଲା ଭଳି ରହୁଥିଲେ ।

ଓ୍ୱକଛନ ଯେତେବେଳେ ନଡିଆ ଗଛରୁ ତୋଳାଉ ଥିଲା ସେତେବେଳେ ପ୍ରତ୍ୟେକ ଚାଷୀମାନଙ୍କୁ ଦୁଇଟି ଲେଖାଏଁ ନଡିଆ ଦେଉଥିଲା । କିନ୍ତୁ ଓ୍ୱକଛନ ଚାଲିଗଲା ପରେ ଅଷକୀ, କେଜାଣି କେଉଠୁ, ଦଶ ପନ୍ଦର ନଡିଆ ସଂଗ୍ରହ କରି ବିକ୍ରି କରିବାକୁ ଚାଲିଯାଉଥିଲା ।

କେବେ କେବେ ରାତିରେ କଣ୍ଣନ୍‌ର ଛୋଟିଆ ଚାଳିଆ ନିକଟବର୍ତ୍ତୀ ନଡିଆଗଛ ଗୁଡିକରୁ ନଡିଆ ପେନ୍ଥା ପଡିବାର ଶୁଣାଯାଉଥିଲା । ପଡୋଶୀମାନେ ଏ କଥା ଓ୍ୱକଛନକୁ ମଧ୍ୟ ବୁଝାଇ ଦେଉଥିଲେ । ଏମିତି କଥା ? ମୁଁ ସେମାନଙ୍କୁ ମାରିପକାଇବି – ଇତ୍ୟାଦି କଥା କହି ଓ୍ୱକଛନ ଖୁବ୍ ଜୋରରେ ମଧ୍ୟ ଚିତ୍କାର କରୁଥିଲା । ଏ ସବୁ ସତ୍ତ୍ୱେ ମଧ୍ୟ କଣ୍ଣନ୍‌ର ନଡିଆ ଚୋରି ମାନି ନିଆ ଯାଇଥିଲା ।

ଥରେ ଯେତେବେଳେ ଓ୍ୱକଛନ ନଡିଆ ତୋଳାଇବା ସକାଶେ ଆସିଥିଲା ସେତେବେଳେ ଦେଖିଲା ଯେ, କୋଛୟ୍ପନ ଅଗଣାରେ ଥିବା ନଡିଆଗଛରୁ ପେନ୍ଥାଏ ନଡିଆ ଉଭେଇଯାଇଛି । ଓ୍ୱକଛନ୍ କୋଛୟ୍ପନକୁ ଭଲ ମନ୍ଦ କରି ଖୁବ୍ କହିଲା । ପୋଲିସରେ ଖବର ଦେବ ବୋଲି ଧମକ ମଧ୍ୟ ଦେଲା । କୋଛୟ୍ପନ ପଚାରିଲା –

"ମାଲିକ ଏ କ'ଣ ? ଆପଣ ପକ୍ଷପାତ ବିଚାର କାହିଁକି କରୁଛନ୍ତି ? ଯେତେବେଳେ କଣ୍ଣନ ପୁଲୟନ୍ ନଡିଆ ତୋଳି ନେଉଛି ସେତେବେଳେ ମାଲିକ ଚୁପ୍ ରହୁଛନ୍ତି – ଏ କ'ଣ ?"

"ଏ ସବୁ ମୋ ଇଚ୍ଛା । ଆରେ, ତୁ ମୋତେ ଏ ସବୁ କଥା ପଚାରିବାକୁ କିଏ ?"

"ପକ୍ଷପାତ ବିଚାର କରନ୍ତୁ ନାହିଁ ମାଲିକ । ମୁଣ୍ଡ ଉପରେ ଆଉ ଜଣେ କେହି ଅଛନ୍ତି, ଯେ କି ସବୁ ଦେଖୁଛନ୍ତି ।"

ଏହାପରେ କୋଛୟ୍ପନ ମଧ୍ୟ ନଡିଆ ଚୋରୀ ଚାଲୁରଖିଥିଲା । ଯଦି ଓ୍ୱକଛନ କିଛି ପଚାରେ - ସେତେବେଳେ ପକ୍ଷପାତ ନ କରିବା ପାଇଁ ସେ କହିଥାଏ ।

ଓ୍ୱକଛନର ଅଧୀନରେ ଥିବା ଜମିରେ ମଧ୍ୟ ଆଉଜଣେ ଭୁଷା ବିକିଲାବାଲା ସ୍ତ୍ରୀ ଲୋକ ରହିଥାଏ, ତାର ନାମ ସାରାମ୍ମା [1] । ସେ ଘର ଘର ବୁଲି ଭୁଷି ସଂଗ୍ରହ କରେ ଏବଂ ପୁଣି ବିକ୍ରି କରୁଥାଏ । କିଛି ଲୋକ ଏହାକୁ "ଚୁଗଲଖୋର ସାରାମ୍ମା" ଆଉ କିଛି ଲୋକ ଏହାକୁ "ଡବଡ଼ିବୀ ସାରାମ୍ମା" କହୁଥିଲେ ।

ଯଦିଓ ଭୁଷା ବିକାଳୀ ସାରାମ୍ମା ଓ୍ୱକଛନର ପ୍ରଜା (ଆସାମୀ) ଥିଲା ତଥାପି କେବେହେଲେ ସେ କୃପାପାତ୍ରୀ ହୋଇ ନଥିଲା । ଏଥିପାଇଁ ଏ ଅବସରରେ ସେ କୋଛୟ୍ପନର ଛୋଟିଆ ଚାଳ ଘରକୁ ଆସି ପାରୁ

1. ସାରାମ୍ମା - ସାରାମ୍ମା (ସାରା + ଆମ୍ମା) - ଚାଷୀ ସ୍ତ୍ରୀ ଲୋକର ନାମ

ସାଙ୍ଗରେ ବସି ଅକ୍ଷକୀର ନିନ୍ଦା କରୁଥିଲା । ସାରାଜ୍ମାକୁ ଭୁଷା ବ୍ୟବସାୟ ପାଇଁ ପାରୁ ଋଣ ଦେଇଥିଲା । ତେଣୁ ଦୁଇଜଣଙ୍କ ମଧ୍ୟରେ ବେଶ୍ ବନ୍ଧୁତା ମଧ୍ୟ ଥିଲା । ପାରୁ କହୁଥିଲା –

"ସମସ୍ତେ ଭାବୁଚନ୍ତି ଯେ ଓ୍ୱକଛନ ସାହେବ ଗରୀବମାନଙ୍କ ପ୍ରତି ବଡ ଦୟାଳୁ ଆଉ ଦରଦୀ ।"

"ତମେ କ'ଣ କହିବାକୁ ଚାହଁ ଯେ ଓ୍ୱକଛନ ସାହେବ ଗରୀବଙ୍କ ପ୍ରତି ଦରଦୀ ନୁହନ୍ତି ?"

"ଯଦି ସେ ଦରଦୀ ତା ହେଲେ ମୋତେ କାହିଁକି ଦରଦ ଦେଖାଉ ନାହାନ୍ତି ?"

'ତାଙ୍କର ଗୋଟେ ପ୍ରକୃତି ଅଛି ?'

'ସେ କ'ଣ ?'

'କେବଳ ଗରୀବ ହେଲେ ଚଳିବ ନାହିଁ ।'

'ତା ହେଲେ କ'ଣ ହେବା ଦରକାର !'

ଏ କଥା କହି ଦୁହେଁ ଖିଲିଖିଲି ହୋଇ ହସି ଉଠନ୍ତି ।

ଯେତେବେଳେ ଅକ୍ଷକୀ ପୁଲୟ୍ୟାର ଝିଅ ଜନ୍ମ ହୋଇଥିଲା ସେତେବେଳେ ଗାଁ ସାରା ପଡୋଶୀ ଝିଅ ଦେଖିବାକୁ ଯାଇଥିଲେ । ସମସ୍ତେ ଫୁସୁରୁ ଫାସର ହେଲେ - 'କଳା କୁକୁଡା ଧଳା ଅଣ୍ଡା ଦେଇଛି ।' ଭୁଷା ବିକାଳି ସାରାଜ୍ମା ପାରୁକୁ ପଚାରିଲା –

'ଯେତେବେଳେ ଏ ବଡ ହେବ, ସେତେବେଳେ କେମିତି ହେବ ?'

'କ'ଣ ତମେ ଓ୍ୱକଛନ ସାହେବଙ୍କର ଛୋଟ ଝିଅକୁ ଦେଖିଛ ।'

'ହଁ, ଦେଖିଛି ''

'ତେବେ ଠିକ୍ ତା ଭଳିଆ ହେବ ।"

ପୁଣି ଦୁହେଁ ଖିଲିଖିଲି ହୋଇ ହସି ଉଠିଲେ ।

• • • •

ନିଲୀ ବଡ ଏବଂ ପ୍ରାପ୍ତ ବୟସ ମଧ୍ୟ ହୋଇଛି । ତାର ବୟସ ପ୍ରାୟ 17 ବର୍ଷ ହେବ । ମାର ସୁନ୍ଦର ଆଖି ଯୋଡିକ ଏବଂ ଆକର୍ଷକ ହସ ମଧ୍ୟ ସେ ଠିକ୍ ପାଇଛି । ଅକକ୍ଷୀର ଯେଉଁ ଜିନିଷ ନ ଥିଲା ସେ ଜିନିଷ ମଧ୍ୟ ତାକୁ ଠିକ୍ ମିଳିଯାଇଛି । ପାଚିଲାଲେମ୍ବୁର ରଙ୍ଗ ଏବଂ କୁଞ୍ଚୁକୁଞ୍ଚିଆ ବାଳ ।

ପାରୁ ନିଜ ଘରର ଦକ୍ଷିଣ ଅଗଣାରେ ପଡିଶ୍ରୀ ସାରାଜ୍ମା ସହିତ କଥାବାର୍ତ୍ତା କରୁଥିଲା ଓ ମଝିରେ ମଝିରେ କାହାକୁ ଦେଖି ଇସାରା ମଧ୍ୟ ଦେଉଥିଲା । ଦୁଇଜଣଙ୍କ ମଧ୍ୟରେ ହସ ମଧ୍ୟ ଜୋରରେ ଚାଲିଥିଲା । କେବେକେବେ ଆଖପାଖର ଅନ୍ୟାନ୍ୟ ସ୍ତ୍ରୀ ଲୋକମାନେ ମଧ୍ୟ ଆସି ଜମା ହେଉଥିଲେ । ଅକ୍ଷକୀ ସବୁକିଛି ଦେଖୁଥିଲା । ସେ ଠିକ୍ ଜାଣିଥିଲା ଯେ ସେ ସ୍ତ୍ରୀ ଲୋକମାନେ କ'ଣ କରୁଛନ୍ତି ଏବଂ କାହିଁକି ହସୁଛନ୍ତି । କିନ୍ତୁ ସବୁକିଛି ଦେଖିବା ସତ୍ତ୍ୱେ ବି ସେ ନ ଦେଖିବା ଭଳି ବାହାନା କରୁଥିଲା । ସେ ନିଜ ଝିଅ ନିଲୀକୁ ସେ ଦୃଶ୍ୟ ଦେଖିବା ସକାଶେ ମନା ମଧ୍ୟ କରୁଥିଲା ।

କୋଛେୟ୍ୟପନ ଓ କଣ୍ଣନ୍ ଦୁଇଜଣଙ୍କ ମଧ୍ୟରେ କଥାବାର୍ତ୍ତା ବି ହେଉ ନଥିଲା । ଯଦି ଦୁଇଜଣ କେବେ

କେବେ ରାସ୍ତାରେ ଦେଖା ସାକ୍ଷାତ ହେଉଥିଲେ ତେବେ ମୁଣ୍ଡତଳକୁ କରି ନିଜ ରାସ୍ତାରେ ଚାଲି ଯାଉଥିଲେ ।

ଦିନେ ସକାଳେ କୋକୁରାମନ୍‌କୁ ଅଗଣାର ଦକ୍ଷିଣ ଦିଗରେ ଦେଖି ପାରୁ ପଚାରିଲା –

'ପୁଅ, ତୁ କାହିଁକି ଏପରି ଦକ୍ଷିଣଦିଗ ଅଗଣାଆଡ଼କୁ ଆସି ସେ ଦିଗକୁ ଅନେଇ ଲାଗିଛୁ ?' କଣ୍ଡନ୍‌ର ଘର ଉତ୍ତରପାର୍ଶ୍ୱ ଅଗଣାରେ ନଡିଆଗଛର ଉହାଡରେ ଛିଡା ହୋଇଥିବା ନିଲୀ ଯେତେବେଳେ ପାରୁକୁ ଦେଖିଲା ସେତେବେଳେ ସେ ନିଜର କୁଡିଆ ଭିତରକୁ ଚାଲିଗଲା ।

କୋକୁରାମନ ମା କୁ ପଚାରିଲା –

'ଦକ୍ଷିଣଦିଗକୁ ଆଉ ଦେଖିବାରେ ଅସୁବିଧା କ'ଣ ଅଛି ?'

'ତେବେ ପୂର୍ବ ଦିଗକୁ ଅନେଇ ରହୁନୁ କାହିଁକି ?'

'ମା 'ର କ'ଣ ହୋଇଗଲା ? ପାଗଳୀ ହୋଇ ଯାଇନି ତ ଆଉ ?'

'ତୁ ହେଉଛୁ ପାଗଳ ।'

ଏହାପରେ ମଧ୍ୟ କୋକୁରାମନ ପ୍ରତ୍ୟେକ ଦିନ ଦକ୍ଷିଣ ଅଗଣାକୁ ଯାଇ ଦକ୍ଷିଣ ଦିଗକୁ ଅନେଇ ଦେଖେ । ନିଲୀ ମଧ୍ୟ ନିଜର କୁଡିଆ ଭିତରୁ ବାହାରି ଆସି ଉତ୍ତର ଦିଗକୁ ଅନେଇ ଦେଖେ । ଦୁହେଁ ବେଶ ଦେଖା ଦେଖି ହୋଇ ଆପଣା ଭିତରେ ହସାହସି ହୁଅନ୍ତି । ପାରୁ କୋଛୟ୍ୟପନକୁ ଏ କାର୍ଯ୍ୟକ୍ରମ ବିଷୟରେ ସୂଚନା ଦେଇଥିଲା । କୋଛୟ୍ୟପନ କହିଲା –

'ପୁଅ ଯଦି ଅନ୍ୟ କାହାକୁ ଚାହେଁ, ସେଥିରେ ତମର କହିବାର କ'ଣ ଅଛି ?'

'ଏମିତି ଦେଖୁ ଦେଖୁ ବିପଦ ମୁଣ୍ଡ ଉପରକୁ ଆସିଥାଏ ।'

'ନହିଁକି ମୁଁ କ'ଣ କରିବି ? କ'ଣ ପୁଅକୁ କହିବି ଯେ, ସେ ଏମିତି ଚାହିଁବା ବନ୍ଦ କରୁ ?'

'ମୋର କହିବାର କଥା, ପୁଅ ପାଇଁ କୋଉଠୁ ବୋହୂଟିଏ ଆଣିବା ଦରକାର ।'

'ମୁଁ ପଚାରୁଛି, ଏ କଥା ତାର ନିଜେ ଭାବିବା ଉଚିତ କି ନୁହେଁ ?'

କୋଛୟ୍ୟପନ ଅବଶ୍ୟ ଜାଣିଥିଲା, ଯେ ଏଭଳି ଭାବେ ଛିଡା ହୋଇ ଦେଖିବା ଏବଂ ହସିବାର ଅର୍ଥ ଏ କାର୍ଯ୍ୟକୁ ପରୋକ୍ଷରେ ସମର୍ଥନ ଜଣାଇବା, ଏବଂ ତାହା ଉଚିତ ନୁହେଁ । କିନ୍ତୁ କ'ଣ ବା କରାଯିବ ?

କେବେ କେବେ ପାରୁ ଦକ୍ଷିଣ ଅଗଣା ଆଡକୁ ଯାଇ ଆକାଶକୁ ଅନାଇ ପାଟିକରି କହୁଥିଲା "ଝିଅ ବି ମା ଭଳି ହେଉଛି" –ପୁଣି ଅନେକ ସମୟ ଯାଏ ଭଲ ମନ୍ଦ ଗାଳି ଦେଉଥିଲା ।

ପ୍ରଥମେ ଅଷକୀ ଏ ସବୁ ଶୁଣି ନ ଶୁଣିଲା ଭଳି ରହୁଥିଲା । କିନ୍ତୁ ଯେତେବେଳେ ତାର ସହିବା ସୀମା ଅତିକ୍ରମ କଲା ସେତେବେଳେ ସେ ମଧ୍ୟ ଗାଳିଦେବା ଆରମ୍ଭ କରିଦେଲା । ସେ କହିଲା –

'ମୋ ଝିଅ, ମୋ ଘରେ ରହିଛି । ତୁମେ ଯଦି ନିଜର ପୁଅକୁ ନିଜର ଜବତରେ ନ ରଖି ପାରିଛ ତେବେ ଖବର ଦାର ! - - - - ଏଠି ଧାନ କାଟିବା ଦାଆ ଅଛି ।'

କୋକୁରାମନ ଏବଂ ନିଲୀ ଦୁଇଜଣଙ୍କର ଚାରିଚକ୍ଷୁର ମିଳନ ହେଉଥିଲା । ପାରୁ ଏବଂ ଅକ୍ଷକୀ ଦୁହେଁ ମଧ୍ୟ ଗାଳି ଦିଆଦେଇ ହେଉଥିଲେ ।

ଯଦିଓ କୋଇଯ୍ୱପନ ଏବଂ କଣ୍ଣନ୍ ଏ ସବୁ ଘଟଣା ଜାଣୁଥିଲେ ତଥାପି ସେ ଦୁହେଁ ଆପଣା ମଧ୍ୟରେ କଟୁଶବ୍ଦ କେବେହେଲେ ବ୍ୟବହାର କରି ନ ଥିଲେ । କିନ୍ତୁ ବର୍ତ୍ତମାନ କୋଇଯ୍ୱପନ ସ୍ଥିର କଲା ଯେ କଣ୍ଣନ୍‌କୁ ଗୋଟିଏ ଶିକ୍ଷା ଦେବା ଦରକାର ।

କଣ୍ଣନ୍ ରାତ୍ରିରେ ନଡିଆଗଛରେ ଚଢ଼ି ଠେକିରୁ ତାଡି ପିଇବାରେ ଅଭ୍ୟସ୍ତ ଥିଲା । କେବେକେବେ ସେ କୋକୁରାମନର ନଡିଆଗଛରେ ଚଢ଼ି ମଧ୍ୟ ଚୋରୀ କରି ତାଡି ପିଇ ଦେଉଥିଲା । ଦିନେ କୋଇଯ୍ୱପନ ଗଛରେ କଣ୍ଟା ରଖି ଦେଲା । ଏ କଥା ନ ଜାଣି କଣ୍ଣନ୍ ଯେତେବେଳେ ନଡିଆଗଛରେ ଚଢ଼ିଗଲା ସେତେବେଳେ କଣ୍ଟା ତାର ପାଦରେ ଗଳିଗଲା । ପାଦର ଗୋଟେ ଅଂଶ ହଠାତ୍ କଟିଗଲା । କଣ୍ଣନ ବଡ କଷ୍ଟରେ ଲହୁଲୁହାଣ ହୋଇ କୌଣସି ପ୍ରକାରେ ତଳକୁ ଓହ୍ଲାଇଲା । ଦୂରରେ ଲୁଚି ରହିଥିବା କୋଇଯ୍ୱପନ୍ ସେତେବେଳେ ପାଖକୁ ଆସି ପଚାରିଲା । –

'କୁହ ବନ୍ଧୁ ! ତାଡ଼ି କ'ଣ ମିଠା ଲାଗିଲା ?'

'ତମର ମୋ ପାଖରେ ଏମିତି ଚାଲ ଚଲାଇବା ଉଚିତ ନଥିଲା ।'

ପୁଣି କଣ୍ଣନ୍ ମାସେ ପର୍ଯ୍ୟନ୍ତ ବେମାର ପଡିଲା । ସେତେବେଳେ ପାରୁ ଓ ସାରାମ୍ମା ଉଭୟେ ପଡୋଶୀ ମାନଙ୍କୁ କହୁଥିଲେ ଯେ, ଔଷଧପତ୍ରର ସମସ୍ତ ଖର୍ଚ୍ଚ ଓ୍ୱକଚ୍ଚନ ଯାହେବ ହିଁ ବହନ କରୁଛନ୍ତି ।

ଏପର୍ଯ୍ୟନ୍ତ କୋକୁରାମନ ଦକ୍ଷିଣପାଖ ଅଗଣାକୁ ଯାଇ ଚାହୁଁଥିଲା ଏବଂ ହସୁଥିଲା ।

ନିଲୀର କୁଡିଆପଟରୁ ଗଣ୍ଡଗୋଳର ଶବ୍ଦମଧ୍ୟ ଶୁଣାଯାଉଥିଲା - କେବେକେବେ କଣ୍ଣନ ଗର୍ଜନ କରି କହୁଥିଲା –

'ଝିଅକୁ ମୁଁ ଜୀବନରେ ମାରିଦେବି - ଟୁକୁରା ଟୁକୁରା କରିଦେବି ।'

ଚାତ୍ତନ କଣ୍ଣନ ଘରକୁ ପ୍ରତ୍ୟେକଦିନ ଯିବା ଆସିବା କରୁଥିଲା । ସେ ମଧ୍ୟ ଯୁବକ । ସେ ନିଲୀକୁ ବିବାହ କରିବ ବୋଲି ସ୍ଥିର କରିଥିଲା । ଏ କଥାରେ ତାର ଏବଂ ନିଲୀର ବାପା ମା ଙ୍କର ସମ୍ମତି ମଧ୍ୟ ଥିଲା । ଯେବେ ସେ ଆସୁଥିଲା ଦୋକାନରୁ ମିଠାଇ କିଣି ଆସୁଥିଲା । କିନ୍ତୁ ନିଲୀ ଏ ମିଠାଇ ଖାଉ ନଥିଲା । ଯଦି କେବେ ତାର ହାତରେ ଏ ସବୁ ଦିଆଯାଉଥିଲା ସେ ଗାଳି ଦେଉ ନଥିଲା ସତ କିନ୍ତୁ ଲୁଚି ଛପି କରି ତାକୁ ନାଳରେ ପିଙ୍ଗି ଦେଉଥିଲା ।

ଦିନେ ଏମିତିଭାବେ ନାଳକୁ ମିଠେଇ ପିଙ୍ଗିବା ସମୟରେ ଅକ୍ଷକୀ ଦେଖିନେଲା ଏବଂ ପଚାରିଲା –

'ଆରେ, ତୁ କାହିଁକି ନାଳରେ ପିଙ୍ଗି ଦେଲୁ ?'

'ମୋର ଏ ସବୁ ଦରକାର ନାହିଁ ।'

'କାହିଁକି ଦରକାର ନାହିଁ ?'

'ସେ ଦେଇଥିବା କୌଣସି ଜିନିଷ ମୋର ଦରକାର ନାହିଁ ।'

'ତେବେ ତୋତେ ଦେବାପାଇଁ କିଏ ଆସିବ ?'

'ମୋ ପାଇଁ କେବେ କେହି କିଛି ଦେବାର ଦରକାର ନାହିଁ ।'

ଘଟଣାକ୍ରମେ ଜଟିଳଦିଗକୁ ଗତିକରୁଛି ! ଦିନେ କଣ୍ଣନର କୁଡ଼ିଆରେ ଭୟଙ୍କର ଗର୍ଜନ ଶୁଣାଗଲା । ଏବଂ ପରେ ପରେ ନିଲୀର କରୁଣ ଚିତ୍କାର ମଧ୍ୟ ଶୁଣାଗଲା !

ତା ପରଦିନ ଚାତ୍ତନ ଉତ୍ତରଦିଗ ଅଗଣାକୁ ଆସି ଖୁବ୍ ଜୋରରେ ଚିତ୍କାର କରି କହିଲା -

'ମୁଁ ସେ ବଦମାସର ମୁଣ୍ଡକୁ ହାଣି ପକାଇବି ।'

ସେ ଦିନ ରାତିରେ କୋଚୟ୍ୟପନ୍ ଧମକ ଓ ଗାଳି ମଧ୍ୟ ଦେଉଥିଲା ।

ତାପରେ କୋଚ୍ଚୁରାମନ ଦକ୍ଷିଣ ଦିଗକୁ ଓ ନିଲୀକୁ ଉତ୍ତର ଦିଗକୁ ଦେଖିବାକୁ ମିଳିଲା ନାହିଁ ।

## 2

ଦିନେ ଭୁଷାବିକାଳୀ ବାଲୀ, ସାରାମ୍ମା ପାରୁକୁ କହିଲା, ଯେ ପଶ୍ଚିମପାଖେ ଛୋଟ ନଡ଼ିଆ ଗଛ ଛାଇରେ କୋଚ୍ଚୁରାମନ୍ ଏବଂ ନିଲୀ ସନ୍ଧ୍ୟା ସମୟରେ ଛିଡ଼ା ହୋଇ କଥାବାର୍ତ୍ତା କରୁଥିବାର ସେ ଦେଖିଥିଲା । ଅନେକ ସମୟରେ ସାରାମ୍ମା ଏମିତି ମିଛ କଥା କହୁଥିଲା, ଯେ ପାରୁ ଏକଥା ମାନିବା ପାଇଁ ଆଦୌ ପ୍ରସ୍ତୁତ ନଥିଲା । ତା ସତ୍ତ୍ୱେ ସେ ଏକାନ୍ତରେ କୋଚ୍ଚୁରାମନ୍‌କୁ ଏକଥା ପଚାରିଲା । କୋଚ୍ଚୁରାମନ କହିଲା, ଯେ ଏ ଡାହାମିଛ କଥା ।

କିଛିଦିନ ପରେ ସାରାମ୍ମା ପୁଣି ପାରୁକୁ କହିଲା ଯେ, କୋଚ୍ଚୁରାମନ ଗୋଟେ 'ଜମ୍ପର' ସିଲାଇ କରି ନିଲୀକୁ ପିନ୍ଧିବା ପାଇଁ ଦେଇଛି । ଏକଥା ଶୁଣି ପାରୁ ରାଗିଗଲା । ସେ କହିଲା - ତମର ଏ ପ୍ରକାର ମିଛ କଥା କହିବା ଉଚିତ ନୁହେଁ ।

ସାରାମ୍ମା ମଧ୍ୟ ରାଗିଗଲା । ସେ କହିଲା – 'ଏହାକୁ ଯଦି ମିଛ କଥା କହୁଛ ତେବେ ତୁମେ ଗୋଟିଏ କାମ କର । ବର୍ତ୍ତମାନ ନିଲୀ ମାଛ କିଣିବାପାଇଁ ପୂର୍ବ ଗଳିରେ ଯାଉଥିବାର ଦେଖାଯିବ । ତୁମେ ଟିକିଏ ସେ ପର୍ଯ୍ୟନ୍ତ ଗଲେ ନିଜ ଆଖିରେ ଦେଖି ପାରିବ ଯେ ସେ ସେଇ ଜମ୍ପର ପିନ୍ଧି ଯାଉଛି ।'

ପାରୁ ଓ ସାରାମ୍ମା ଉଭୟେ ଗଳି ଆଡକୁ ଚାଲିଲେ । ନୂଆ ଜମ୍ପର ପିନ୍ଧି ହାତରେ ଟୋକେଇ ନେଇ ନିଲୀ ଆସୁଥିଲା । ପାରୁ ତାକୁ ଦେଖି ରାଗରେ ନିଆଁ ହୋଇଗଲା । ଆକାଶକୁ ଚାହିଁ ସେ ଗାଳି ଦେବାକୁ ଆରମ୍ଭ କଲା ।

'ରାଣ୍ଡ କୋଉଠିକାର ! ଟୋକାମାନଙ୍କୁ ଭୁଲେଇ ଭାଲେଇ, ହାବ ଭାବ କରି ଲୁଗାପଟା କମାଇବା ସକାଶେ

ବାନ୍ଧାରିଛି ।' ଏହାପରେ ସେ ଆହୁରି ଅନେକ କଥା ମଧ୍ୟ କହିଲା । ଏ କଥା ଶୁଣି ଗଳିରେ ବହୁତ ଲୋକ ଜମିଗଲେ । ନିଲ୍ଲୀ କାନ୍ଦି କାନ୍ଦି ନିଜର କୁଡିଆ ଆଡ଼କୁ ଚାଲିଗଲା ।

କିଛି ସମୟ ବିତିଗଲା ପରେ ଅକ୍ଷକୀ କଟୁରୀ ଧରି ଝଡ ପରି ସେଠାରେ ଆସି ପହଞ୍ଚିଲା । ପାରୁ ମଧ୍ୟ ଗୋଟେ ବଡ ଛୁରୀ ନେଇ ସେଠାରେ ପହଞ୍ଚିଗଲା । ପୁଣି କ'ଣ କହିବାର ଅଛି ! ଦୁଇଜଣଙ୍କ ମଧ୍ୟରେ ଗାଳି ଗୁଲଜ ବର୍ଷା ହେଲା । ସେ ଗଳିର ଶ୍ରୋତାମାନେ କିଛି କଥା ବୁଝି ପାରିଲେ । ପାରୁ କହୁଥିଲା ଯେ, ନିଲ୍ଲୀକୁ କୋଚ୍ଚୁରାମନ ସିଲେଇକରି ଦେଇଥିବା ଜମ୍ପର ପିନ୍ଧିବାର ଦେଖୁଥିଲା । କିନ୍ତୁ ଅକ୍ଷକୀ କହୁଥିଲା ଯେ ନିଲ୍ଲୀ ପ୍ରତ୍ୟେକଦିନ ପଇସେ ଲେଖାଁଏ ସଞ୍ଚୟ କରି ନିଜେ ସେ ଜମ୍ପର କିଣିଛି । ସାରାମ୍ମା ତାକୁ ଏ କଥା କହିଛି ବୋଲି ଶେଷରେ ପାରୁ କହିଲା ।

ବର୍ତ୍ତମାନ ଅକ୍ଷକୀ କଟୁରୀ ନେଇ ସାରାମ୍ମାକୁ ମାରିବା ପାଇଁ ଦୌଡିଲା । ସେ ଗର୍ଜି ଉଠି କହିଲା - 'ଆରେ ଚଣ୍ଡାଲୁଣୀ, ମୁଁ ତୋତେ ମାରି ପକାଇବି ।'

ସାରାମ୍ମା ମଧ୍ୟ କିଛିଦୂର ପଛକୁ ଘୁଞ୍ଚିଗଲା । ସମସ୍ତେ ଭାବିଥିଲେ ଯେ ସେ ଡରି ଦୂରକୁ ପଳାଇ ଯାଉଛି । କିନ୍ତୁ କିଛିଦୂର ଗଲାପରେ ସେ ଦର୍ଜି ଶଙ୍କରନ୍‌କୁ ସାଙ୍ଗରେ ନେଇ ସଭାରେ ପହଞ୍ଚିଗଲା । ସେ ସେଠାରେ ଉପସ୍ଥିତ ହୋଇ ଜନତାଙ୍କୁ କହିଲା –

"ଶୁଣନ୍ତୁ ! ଏ ହେଉଛି ଶଙ୍କରନ୍ । ଶଙ୍କରନ୍ ମୋତେ ଏ କଥା କହିଥିଲା । ବର୍ତ୍ତମାନ ଆପଣମାନେ ତାକୁ ପଚାରନ୍ତୁ, ସେ କଥା ସତ କି ମିଛ ।"

ଶଙ୍କରନ୍ ସବୁ କଥା କହିଲା – 'ଏ କଥା ସତ୍ ଯେ କୋଚ୍ଚୁରାମନ୍ ଜମ୍ପରର କନା କିଣି ମୋତେ ସିଲାଇ କରିବା ପାଇଁ ଦେଇଥିଲା । ଏ ବି ସତ ଯେ ମୁଁ ସେ ସିଲାଇ କରିଛି । ଜମ୍ପରର କନାର ରଙ୍ଗ ହଳଦିଆ ଏବଂ ସେଥିରେ କଳାରଙ୍ଗର ଟୋପା ଅଛି ।'

ସମସ୍ତଙ୍କୁ ଏ କଥା ବିଶ୍ୱାସ ହୋଇଗଲା । କାରଣ ସମସ୍ତେ ନିଲ୍ଲୀକୁ ଏ ଭଳି ରଙ୍ଗର ଜମ୍ପର ପିନ୍ଧିବାର ଦେଖୁଛନ୍ତି । ବର୍ତ୍ତମାନ ସାରାମ୍ମାର ଜୟ ହେଲା । ସେ ଅକ୍ଷକୀକୁ ଥଟ୍ଟା କରି ପଚାରିଲା –

'ଆରେ ଅକ୍ଷକୀ, ତୋର କଟୁରୀ କୁଆଡେ ଗଲା ?'

କିଛି ଲୋକ ଚୁପଚୁପ କରି କହୁଥିଲେ, ଯେ ଝିଅ ଠିକ୍ ମା ପରି ହେବାକୁ ଯାଉଛି ।

ଅକ୍ଷକୀ ମୁଣ୍ଡ ତଳକୁ କରି ନିଜ କୁଡିଆକୁ ଫେରିଗଲା । ସେ ଦିନ ରାତିରେ ମଧ୍ୟ କଣ୍ଣନ୍ ଗର୍ଜନ ତର୍ଜନ ଓ ତାର କରୁଣ ଚିତ୍କାର ଶୁଣାଯାଉଥିଲା ।

ତା ଆରଦିନ ସକାଳେ କଣ୍ଣନ୍ ଅଗଣାରେ ଛିଡା ହୋଇ କୋଦାଳ ଉଠାଇ ଜୋରରେ ଘୋଷଣା କରି କହିଲା

– 'ଏଯ୍ଯା ପରେ ଯଦି ଝିଅ ସେ ଟୋକା ସାଙ୍ଗରେ କଥାବାର୍ତ୍ତା କରେ କିମ୍ବା ତାକୁ ଚାହେଁ ତା ହେଲେ ତାର ମୁଣ୍ଡକୁ ମୁଁ ଏଇମିତି ହାଣିଦେବି ।' ଏହା କହି ସେ ନିଜର ଅଗଣାରେ ମାଟିକୁ ହାଣି ଦେଖାଇଲା ।

ସନ୍ଧ୍ୟା ସମୟରେ ଚାତ୍ତନ ଯେତେବେଳେ ଘରକୁ ଆସିଲା ସେତେବେଳେ ସେ ଅଗଣାରେ କଟୁରୀ ଧାର କରୁକରୁ ପ୍ରତିଜ୍ଞା କଲା - 'ଯଦି ସେ ସୈତାନ୍ ଏ ଝିଅ ସହିତ ପୁଣି କଥାବାର୍ତ୍ତା କରେ ବା ହସାହସି କରେ ତା ହେଲେ ତାର ମୁଣ୍ଡକୁ ଏହିଭଳି ଭାବେ ଖସାଇ ପକାଇବି ।' ସେ ଚାକୁକୁ ଚାରାଗଛଟି ଉପରେ ପରୀକ୍ଷା କଲା । ହଠାତ୍ ଚାରାଗଛଟି ଖସିପଡିଲା ।

କୋଚ୍ଚୟପନ୍ ଦକ୍ଷିଣ ଦିଗର ଅଗଣାକୁ ଆସି ଛୁରୀର ଧାରକୁ ଆଙ୍ଗୁରି ତୀକ୍ଷ୍ଣ କରୁକରୁ ଗର୍ଜନ କରି ଉଠିଲା - 'ଯଦି ପରେ ଆଉ ଏପରି କଥା ଶୁଣେ ତା ହେଲେ ପୁଅ ଓ ଝିଅ ଦୁହିଁଙ୍କ ମୁଣ୍ଡକୁ ଏମିତି ହାଣିଦେବି ।' ସେ ନଡିଆର ଗୋଟମାକୁ କାଟି ଦେଖାଇଲା ।

ଏ ଘଟଣାପରେ କୋଲ୍ଲୁରାମନ ଓ ନିଲୀର ଦେଖାଚାହାଁ ହସାହସି ବନ୍ଦ ହେବା ସଙ୍ଗେ ସଙ୍ଗେ ଏଭଳି ଆଉ କୌଣସି ଦୋଷାରୋପ ହୋଇନାହିଁ ।

ନିଲୀ ଆଉ ଚାତ୍ତନର ବିବାହ ତାରିଖ ପକ୍କା ହୋଇଗଲା । କୁଡିଆର ଅଗଣାରେ ଗୋଟିଏ ମଣ୍ଡପ ମଧ୍ୟ ତିଆରି କରାଗଲା । ଏ ପରେ କୋଚ୍ଚୟପନ କୋଲ୍ଲୁରାମନର ବିବାହ ପାଇଁ ଚାରିପାଞ୍ଚ ଜଣଙ୍କ ସହ କଥାବାର୍ତ୍ତା - ପରାମର୍ଶ ମଧ୍ୟ କଲା । କାହା ଘରକୁ ଯାଇ ସେମାନଙ୍କ ଝିଅଙ୍କୁ ମଧ୍ୟ ଦେଖିଲା ।

ଏ ସବୁ ଚାଲିଥିଲା । ହଠାତ୍ ଦିନେ କୋଚ୍ଚୟପନର ଦକ୍ଷିଣ ଅଗଣାରେ ଗର୍ଜନ ତର୍ଜନ ଶୁଣାଗଲା । ଘଟଣା ଜାଣିବା ପାଇଁ ପଡୋଶୀମାନେ ଜଗିବସିଲେ । ଅକ୍ଷକୀ ଏବଂ କଣ୍ଣନ୍ କଟୁରୀ ଓ ଛୁରୀ ନେଇ ଗର୍ଜନ କରୁଥିଲେ - 'ଦେଖ ସେ ଝିଅକୁ ବାହାର କରିଦିଅ । ନ ହେଲେ ଆମକୁ ନିଜେ ତମ ଘରେ ପଶିବାକୁ ପଡିବ ।'

ପାରୁ ଦୌଡିକରି ଘର ଭିତରକୁ ଗଲା । କୋଲ୍ଲୁରାମନ ଯେଉଁଠି ରାତିରେ ଶୋଇଥିଲା ସେଠାରେ ଦେଖିବାକୁ ମିଳିଲାନି । ବର୍ତ୍ତମାନ ପାରୁ ଫେରି ତହିଁକି ଉଠି କହିଲା – 'ତୋର ଝିଅ ମୋର ପୁଅକୁ ଚୋରୀ କରି ନେଇ ଯାଇଛି । ମୁଁ ତୋତେ ଓ ତାକୁ ମାରି ଖଣ୍ଡ ଖଣ୍ଡ କରିଦେବି ।' ଏ କଥା କହି ସେ ବି ଖଣ୍ଡେ କଟୁରୀ ନେଇ ଆସିଲା ।

କୋଚ୍ଚୟପନ ଗୋଟେ ମୂଷଳ ଉଠାଇ ଗର୍ଜନ କରି ଉଠିଲା – 'ଯଦି ତମେ ମୋର ପୁଅକୁ ଫେରସ୍ତ ନ ଦିଅ ତା ହେଲେ ମୁଁ ତମର ମୁଣ୍ଡ ଫଟାଇଦେବି ।'

କଣ୍ଣନ ଛୁରୀ ମାରିବା ପାଇଁ ଉଦ୍ୟତ ହେଉଥିବା ସମୟରେ କୋଚ୍ଚୟପନ କଣ୍ଣନର ମୁଣ୍ଡରେ ମୁଷଳରେ ପାହାରେ ଦେଲା । ମାଡ ଖାଇ କଣ୍ଣନ ବେହୋସ ହୋଇ ଜମି ଉପରେ ଟଳି ପଡିଲା ।

ଅକ୍ଷକୀ କଟୁରୀ ନେଇ ପଛରୁ ଆକ୍ରମଣ କଲା । ପାରୁ ମଧ୍ୟ ଅକ୍ଷକୀ ପ୍ରତି ପ୍ରତିଆକ୍ରମଣ କଲା । ଅକ୍ଷକୀର କଟୁରୀ ପାରୁର ପେଟରେ ଭୁଷିହୋଇଗଲା ଓ ପାରୁର କଟୁରୀ ଅକ୍ଷକୀର ଛାତିରେ ଲାଗିଗଲା । ଦୁହେଁ ଭୂତଳଶାୟୀ ହେଲେ । ଲୋକଙ୍କର ଭିଡ଼ ମଧ୍ୟ ବଢ଼ିବାକୁ ଲାଗିଲା । ଇତି ମଧ୍ୟରେ ସକାଳ ହେଲା ।

'ମାରିଦେବି-ସମସ୍ତଙ୍କୁ ମାରିଦେବି' – ଏକଥା ଚିତ୍କାର କରି ଚାନ୍ଦନ ଛୁରୀ ନେଇ ଦୌଡ଼ି ଆସିଲା । ସେ କୋଛସ୍ୱପନର ବାଉଁଶତାଟିକୁ ମଧ୍ୟ ମାରି ଖସାଇ ପକାଇଲା । ସେ କୁଡ଼ିଆରେ ନିଆଁ ଲଗାଇବାକୁ ଉଦ୍ୟମ କରୁଥିବା ସମୟରେ ଲୋକମାନେ ତାକୁ ନଡ଼ିଆ ଗଛରେ ବାନ୍ଧି ପକାଇଲେ ।

ପୁଲିସ ଆସିଲା । କଣ୍ଡନ୍, ଅକ୍ଷକୀ, ଏବଂ ପାରୁକୁ ଡାକ୍ତରଖାନା ନିଆଗଲା । କୋଛସ୍ୱପନ୍ ଓ ଚାନ୍ଦନକୁ ହାଜତରେ ରଖାଗଲା ।

• • • • •

କାହାରିକି କୌଣସି ସନ୍ଦେହ ନଥିଲା । ପ୍ରତ୍ୟେକଦିନ ପରି ନିଲୀ ରାତିରେ ଖାଇ ପିଇ ଚଟେଇ ପକେଇ ଅକ୍ଷକୀ ପାଖରେ ଶୋଇଗଲା । ପ୍ରତ୍ୟେକଦିନ ପରି କୋଛୁରାମନ ମଧ୍ୟ ଖାଇବାଶେଷ କରି ବିଡ଼ି ପିଉ ପିଉ ବାରଣ୍ଡାରେ ଶୋଇଗଲା ।

ରାତିରେ ଅକ୍ଷକୀ ଜାଣିପାରିବାରୁ ନିଲୀକୁ ଡାକିଲା । ନିଲୀକୁ ଡାକ ଶୁଣାଗଲାବେଳକୁ ଚଟେଇ ଖାଲି ପଡ଼ିଛି । ଚଟେଇ ଉପରେ ନିଲୀ ନ ମିଳିବାରୁ ସେ ବାହାରକୁ ଯାଇ ଦେଖିଲା । ବାହାରେ ଦେଖା ନ ଯିବାରୁ କଣ୍ଡନ୍‌କୁ ସେ ବିଷୟରେ ସୂଚନା ଦେଲା । ପୁଣି ପତି-ପତ୍ନୀ ଦୁହେଁ ଅନ୍ଧକାରରେ ଖୋଜିବାକୁ ବାହାରିଲେ । ହଠାତ୍ ପୁଣି ଆଶଙ୍କା ହେଲା ଯେ, ହୁଏତ କୋଛୁରାମନ ଡାକି ନେଇ ଯାଇଥିବ । ଏ ଭଳି ଭାବେ ସବୁ ଗଣ୍ଡଗୋଳ ହୋଇଯାଇଥିଲା ।

କୋଛୁରାମନ ଓ ନିଲୀ କୁଆଡେ ଗଲେ, ଏ ସବୁ କଥା କାହାରିକୁ ଜଣା ନଥିଲା । କେହି ହେଲେ ସେମାନଙ୍କୁ ଖୋଜିବାକୁ ଚେଷ୍ଟା କଲେନାହିଁ । ଯେଉଁମାନେ ସେମାନଙ୍କୁ ଖୋଜିବାର କଥା ସେମାନେ ସମସ୍ତେ ଡାକ୍ତରଖାନାରେ ଓ ହାଜତରେ ଥିଲେ ।

ନିଲୀ ଓ କୋଛୁରାମନ୍ ଉଭୟେ ବହୁ ଦିନରୁ ସ୍ଥିର କରି ସାରିଥିଲେ ଯେ ସେମାନେ ଗାଁ ଛାଡ଼ି ଚାଲିଯିବେ । ଉଭୟେ ସେଥିପାଇଁ ପ୍ରସ୍ତୁତ ମଧ୍ୟ ହୋଇଥିଲେ । କୋଉଠିକି ଯିବାକୁ ହେବ ଓ କି ଭଳି ଭାବରେ ଯିବାକୁ ହେବ ଏ କଥା କୋଛୁରାମନ ସ୍ଥିର କରିଥିଲା ।

କୋଛୁରାମନର ଜଣେ ପୁରୁଣା ସାଙ୍ଗ ଆଲପୁଷା (ଆଲକ୍ଷ୍ମୀ)ରେ ରହୁଥିଲା । ଉଭୟେ ବାଲ୍ୟସାଙ୍ଗ ଥିଲେ ଓ ଏକା ସାଙ୍ଗରେ ପଢ଼ାପଢ଼ି ଖେଳାଖେଳି କରୁଥିଲେ । ସେ ସାଙ୍ଗର ନାମ ଥିଲା ବାସୁ । ଆଲପୁଷାର ନଡ଼ିଆ କତା କାରଖାନାରେ ସେ ଜଣେ ଶ୍ରମିକ ଭାବେ କାର୍ଯ୍ୟ କରୁଥିଲା । ସେ ସେଠାରେ ବିବାହ କରି ରହୁଥିଲା ।

ବାସୁ ଥରେ ଦୁଇଥର କୋଚିନ ମଧ୍ୟ ଯାଇଥିଲା । ଯେତେବେଳେ ସେ ସେଠାକୁ ଯାଉଥିଲା ଅବଶ୍ୟ କୋଜ୍ଜୁରାମନକୁ ସାକ୍ଷାତ କରୁଥିଲା । ସେ କୋଜ୍ଜୁରାମନକୁ କହିଥିଲା, ଯେ ଯଦି ସେ ତାଙ୍କ କାମ ଛାଡି ଆଲପୁଝା ଯିବାକୁ ଚାହେଁ ତାହେଲେ କାରଖାନାରେ ସେ କାମର ବନ୍ଦୋବସ୍ତ କରିଦେବ । ସେଥିପାଇଁ ବର୍ତ୍ତମାନ କୋଜ୍ଜୁରାମନ ସ୍ଥିର କରିଥିଲା ଯେ ତାକୁ ଆଲପୁଝା ଯିବାକୁ ପଡିବ ଏବଂ ସେଠାରେ ସ୍ଥାୟୀ ବାସିନ୍ଦା ଭାବରେ ରହିବାକୁ ପଡିବ ।

ଯେତେବେଳେ ରାତିରେ ସମସ୍ତେ ଶୋଇଗଲେ ଏବଂ ଗଳିରେ ଲୋକବାକ ଯିବା ଆସିବା ବନ୍ଦ ହୋଇଗଲା ସେତେବେଳେ କୋଜ୍ଜୁରାମନ ଗୋଟିଏ ଗଣ୍ଠିଲି ନେଇ ବାହାରିଲା ଏବଂ ଗଳିରେ ଅପେକ୍ଷା କରିବାକୁ ଲାଗିଲା । ପୂର୍ବ ନିର୍ଦ୍ଧାରିତ ସୂଚନା ଅନୁଯାୟୀ ନିଲୀ ସେଠାରେ ଆସି ପହଞ୍ଚିଲା । ସେମାନେ ଗଳି ରାସ୍ତା ଦେଇ ଶେଷରେ ବନ୍ଦରରେ ପହଞ୍ଚିଲେ । ଏବଂ ସେ ଦିନ ଜେଟ୍ଟୀରେ ଯିବା ପାଇଁ ବହୁତ କମ୍ ଯାତ୍ରୀ ମଧ୍ୟ ଆସୁଥିଲେ । ଯେତେବେଳେ ଆଲପୁଝା ଯିବାପାଇଁ ବୋଟ ଆସିଲା ସେତେବେଳେ କୋଜ୍ଜୁରାମନ୍ ପାଟିକରି ଡାକି ଓ ଦିଆସିଲି ଲଗାଇ ବୋଟ୍‌ବାଲାକୁ ଆସିବା ପାଇଁ ଇସାରା କଲା । ବୋଟ୍ କୂଳରେ ଲଗିଗଲାପରେ ଉଭୟେ ସେଥିରେ ଚଢିଗଲେ ।

ସେମାନେ ଆଲପୁଝାର କୂଳରେ ପହଞ୍ଚୁ ପହଞ୍ଚୁ ସୂର୍ଯ୍ୟୋଦୟ ହୋଇ ଯାଇଥିଲା । ବାସୁ ଆଗରୁ କୋଜ୍ଜୁରାମନ୍‌କୁ ନିଜ ଘରକୁ ରାସ୍ତା କହି ଦେଇଥିଲା । ସେ କଥା ମନେ ପକାଇ ଉଭୟେ ଚାଲିବାକୁ ଆରମ୍ଭ କଲେ । ଶେଷରେ ଲୋକଙ୍କୁ ପଚାରି ସନ୍ଦେହ ଦୂର କରୁ କରୁ ସେମାନେ ବାସୁ ଘରେ ପହଞ୍ଚିଗଲେ ।

ବାଉଁଶରେ ତିଆରି ଛୋଟ କୁଡିଆରେ ତାର ପରିବାର ରହୁଥିଲେ । ପରିବାର କହିଲେ, ତାର ସ୍ତ୍ରୀ ଏବଂ ଗୋଟିଏ ପିଲା । ବାସୁର ଶଶୁର ଘର ଲୋକସଂଖ୍ୟା ଅଧିକଥିବାରୁ ସେ ତାର ନିଜର କୁଡିଆରେ ସ୍ତ୍ରୀ ସହ ରହୁଥିଲା ।

ଯେତେବେଳେ କୋଜ୍ଜୁରାମନ ଜଣେ ସ୍ତ୍ରୀ ଲୋକସହ ତା କୁଡିଆରେ ପହଞ୍ଚିଲା ସେତେବେଳେ ସେ ଡରିଗଲା । କୋଜ୍ଜୁରାମନ ପ୍ରଥମେ ଏ କଥା ଅନୁମାନ କରିଥିବାରୁ ସେ ଆଶ୍ଚର୍ଯ୍ୟ ହେଲାନାହିଁ । ସେ ବାସୁକୁ ସଂକ୍ଷେପରେ ସମସ୍ତ କଥା କହିଲା । କୋଜ୍ଜୁରାମନ କହିଲା ଯେ, ଖଣ୍ଡେ ଚାକିରୀ ଖୋଜିନେବା ପର୍ଯ୍ୟନ୍ତ ସେ ଏଠାରେ ରହିବ । ଚାକିରୀ ମିଳିଗଲେ ଅନ୍ୟ କେଉଁଠି ରହିବାର ବନ୍ଦୋବସ୍ତ କରିନେବ ।

କୌଣସି ଅସୁବିଧା ନାହିଁ ବୋଲି ବାସୁ ମଧ୍ୟ କହିଲା । କୋଜ୍ଜୁରାମନର ସ୍ତ୍ରୀ ଯେଉଁ ଜାତିର ହେଉନା କାହିଁକି ଯଦି ତାକୁ ପସନ୍ଦ ତା ହେଲେ ବାସୁକୁ ମଧ୍ୟ ଏ କଥା ପସନ୍ଦ । ନିଜର ବାଲ୍ୟ ସାଥୀକୁ ଯଥାଶକ୍ତି ସାହାଯ୍ୟ କରିବା ସକାଶେ ବାସୁ ମଧ୍ୟ ଚାହୁଁଥିଲା ।

କିନ୍ତୁ ତାର ଶଶୁରଘର ଲୋକ ଆଚାର ଓ ମର୍ଯ୍ୟାଦାରେ କଠୋର ଥିଲେ । ଜଣେ ଇଷବଜାତି ଯୁବକ ଆଉ ଜଣେ ପୁଲୟୀ ଜାତି ସ୍ତ୍ରୀ ଲୋକକୁ ବିବାହ କରିଛି ଜାଣି ସେମାନେ କେବେହେଲେ ଖୁସି ହୋଇ ନ ଥାଆନ୍ତେ । ଯେତେବେଳେ ସେମାନେ ଜାଣିବେ ଯେ ସେ ବାସୁର ସାଙ୍ଗ ତା ହେଲେ ରାଗିବାର ସମ୍ଭାବନା ମଧ୍ୟ ଅଧିକ ।

ଯେତେବେଳେ ସେମାନେ ଶୁଣିବେ ଯେ ବାସୁ ଜଣେ ପୁଲୟ୍ୱୀ ସ୍ତ୍ରୀ ଲୋକକୁ ଶରଣ ଦେଇଛି ସେତେବେଳେ ହୁଏତ ଗର୍ଜନ କରି ଦୌଡିଆସି ତାକୁ ବାହାର କରିବାପାଇଁ ଧମକ ଦେଇପାରନ୍ତି । ଏ ସବୁ ବ୍ୟତୀତ ବାସୁର ଜଣେ ଶଳା ଥିଲା, ସେ ଭାରୀ ଗୁଣ୍ଡା ପ୍ରକୃତିର ଲୋକ ।

ଏପରି ଅବସ୍ଥାରେ କ'ଣ କରାଯିବ ? କୋଲ୍ଲୁରାମନକୁ ଏଠାରୁ ବାହାରି ଯିବପାଇଁ କହିବା କ'ଣ ସମ୍ଭବ ହେବ ? ଜଣେ ଖୁବ୍ ସୁନ୍ଦରୀ ସ୍ତ୍ରୀ ଲୋକ ସହିତ ଆଲପୁଝା ସହରରେ ତାକୁ ଏକୁଟିଆ ଏବଂ ନିଃସହାୟ ଭାବେ ବୁଲିବାକୁ ଛାଡି ଦିଆଯିବ ? କେବଳ ବାସୁର ଭରସା ଓ ଆଶ୍ରାରେ ଉଭୟ ଏତେ ଦୂରରୁ ଆଲପୁଝା ସହରକୁ ଆସିଥିଲେ ।

ଏ ସବୁ ଚିନ୍ତା କରିବାପରେ ବାସୁ ସେମାନଙ୍କୁ ସେଠାରେ ରହିବାପାଇଁ କହିଲା । କିନ୍ତୁ ସେ ନିଜର ସ୍ତ୍ରୀକୁ ନିଲୀର ଜାତି ବିଷୟରେ କିଛି ସୂଚନା ଦେଇ ନଥିଲା । କୋଲ୍ଲୁରାମନ ଆଚାର ଓ ମର୍ଯ୍ୟାଦା ସହକାରେ ତାକୁ ବିବାହ କରିଛି ଓ ତାର ସ୍ତ୍ରୀର ନାମ 'ଭାର୍ଗବୀ' ବୋଲି କହିବା ଉଚିତ ମନେ କଲା । ଏ ବ୍ୟବସ୍ଥାର ଖବର କୋଲ୍ଲୁରାମନ ମଧ୍ୟ ନିଲୀକୁ କହିଦେଲା । କୋଲ୍ଲୁରାମନ ପାଖରେ କିଛି ପଇସା ଥିବାରୁ ସେମାନଙ୍କୁ କୌଣସି ଆର୍ଥିକ ସମସ୍ୟାର ସମ୍ମୁଖୀନ ହେବାକୁ ପଡିଲା ନାହିଁ ।

ସେ ଦିନ ମ୍ୟାନେଜର ଓ ମିସ୍ତ୍ରୀର ଅନୁମତି ପାଇ ବାସୁ ଯେଉଁ କାରଖାନରେ କାମ କରୁଥିଲା ସେ କାରଖାନାରେ କୋଲ୍ଲୁରାମନ କାମ ଶିଖିବାକୁ ଆରମ୍ଭ କଲା । ଏ ଭଳି ଭାବରେ 3/4 ଦିନ ବିତିଗଲା ।

ବାସୁର ଜଣେ ସାଙ୍ଗ ତା ସ୍ତ୍ରୀ ସହିତ ସେଠାରେ ରହିଛି ବୋଲି ବାସୁର ଶଶୁର ଘର ଲୋକ ଶୁଣିଲେ । ସେମାନେ ଅତିଥିଙ୍କୁ ଦେଖିବାକୁ ଆସିଲେ । ସମସ୍ତେ ବୋହୂକୁ ଦେଖି ଖୁସି ହେଲେ । ବୋହୂ ଦେଖିବାକୁ ସୁନ୍ଦରୀ, ବିନୟୀ, ଏବଂ ବେଶ ଭଲଲୋକ ବୋଲି ସମସ୍ତଙ୍କର ମତ । କେବଳ ଗୋଟିଏ କଥା ଉପରେ ସମସ୍ତଙ୍କର ସନ୍ଦେହଥିଲା । ସେ କାହିଁକି ଇଷବ ଜାତି ମଧ୍ୟରେ ପ୍ରଚଳିତ ନ ଥିବା କେତେକ ଶବ୍ଦ ବ୍ୟବହାର କରୁଥିଲା ? ଏବଂ ଏ ଶବ୍ଦ ବିଶେଷତଃ ପୁଲୟମାନଙ୍କ ମଧ୍ୟରେ ବ୍ୟବହୃତ ହୋଇଥାଏ । ଏ ପ୍ରଶ୍ନ ବାସୁର ବନ୍ଧୁମାନେ ପଚାରିଲେ । କୋଚିନରେ ପୁଲୟଜାତିର ବହୁ ସଂଖ୍ୟକ ଲୋକ ଥିବା କାରଣ ହେତୁ ତାର ଅଭ୍ୟାସ ପଡିଯାଇଛି ବୋଲି ବାସୁ ଉତ୍ତରରେ କହିଥିଲା । କିନ୍ତୁ ଏହା ଶୁଣିକରି ସେମାନଙ୍କର କାହାରି ବିଶ୍ୱାସ ହେଲାନାହିଁ । ସମସ୍ତେ ଅବିଶ୍ୱାସ କରି ଫେରିଗଲେ ।

ଏ ଭିତରେ ସେ କାରଖାନାର ଜଣେ ମିସ୍ତ୍ରୀ କୌଣସି କାମପାଇଁ ଦୁଇଦିନ ସକାଶେ କୋଚିନ ଯାଇଥିଲା । ଏବଂ ଦୁଇଦିନ ରହି ଫେରିଲା । ଯେତେବେଳେ ସେ କାରଖାନାକୁ ଫେରି ଆସିଲା କଥା ପ୍ରସଙ୍ଗରେ କହିଲା ଯେ, ସେଠାରେ ଇଷବ ଜାତିର ଜଣେ ଯୁବକ ପୁଲୟ ଜାତିର ଜଣେ ଯୁବତୀକୁ ଚୋରିକରି ନେଇ ପଳାଇଯାଇଛି । ଏହାପରେ ଦୁଇ ପରିବାର ମଧ୍ୟରେ ଗଣ୍ଡଗୋଳ ହୋଇ ଦୁଇ ତିନିଜଣଙ୍କୁ ଡ଼ାକ୍ତରଖାନାକୁ ନିଆ ଯାଇଥିବା କଥା ମଧ୍ୟ କହିଲା । ଏ କଥା ଶୁଣି ବାସୁ ଏବଂ କୋଲ୍ଲୁରାମନ ଦୁଇଜଣ ଡରିଗଲେ । ସେଠାରେ ଯେପରି ରକ୍ତ ନଦୀ ବହିଯାଇଛି ସେ କଥା ଚିନ୍ତାକରି କୋଲ୍ଲୁରାମନ ଡରିଯାଇଥିଲା । କିନ୍ତୁ ବାସୁର ଡରିବାର କାରଣ ଅଲଗା ଥିଲା । ସେ ଭାବିଲା ଯେ, ଯଦି ତାର ଶଶୁର ଘର ଲୋକେ ଏବଂ ପଡ଼ୋଶୀମାନେ ଏ କଥା

ଶୁଣନ୍ତି ତଙ୍କ ହେଲେ ଅସୁବିଧା ହେବ ।

ଦିନେ ବାସୁର ଶଳା, (ଯେ ଗୁଣ୍ଡା ଥିଲା) ବାସୁକୁ ଡାକି କହିଦେଲା - "ଯଦି ତୁମେ ସେ ଏବଂ ତାର ପୁଲସ୍ତ୍ୟ ସ୍ତ୍ରୀକୁ ସେ ସ୍ଥାନରୁ ବାହାର ନକର, ତା ହେଲେ ଜାଣ ଯେ ମୁଁ ସେ ଅଞ୍ଚଳକୁ ଯାଇ ଥରେ ଦେଖି ନେବି ।"

ଘଟଣା କ୍ରମେ ଖରାପ ଦିଗକୁ ଗତିକରୁଥିବାର ଜାଣି କୋକୁରାମନକୁ ଚିନ୍ତା ହେଲା । ସେ ଭାବିଲା ଯେ, ବାସୁକୁ ବିପଦରେ ପକାଇବା ଅପେକ୍ଷା ନିଜେ ଚାଲିଯିବା ବରଂ ଶ୍ରେୟସ୍କର ହେବ । କିନ୍ତୁ ଯିବ କୁଆଡେ ? କୌଣସି ଆଡେ ରହିବା ପାଇଁ ସୁବିଧା ହୋଇ ପାରିବ କି ନାହିଁ ବୋଲି ସେ ନିଜ ପରିଚିତ ଲୋକମାନଙ୍କୁ ପଚାରିଲା ।

ରିକ୍ସାବାଲା ପତ୍ରୋଶ ସେମାନଙ୍କର ରହିବା ସକାଶେ ନିଜ ତରଫରୁ କହିଲା । କିନ୍ତୁ ବାସୁ ମନା କଲା । ପତ୍ରୋଶର ଘର ବାସୁ ଘର ପାଖ ଥିଲା । ଆଲପୁଝା ସହରରେ ଏପରି କୌଣସି ଲୋକ ନ ଥିଲା ଯେ କି ପତ୍ରୋଶକୁ ଚିହ୍ନି ନଥିଲା । ବଡ ଓ ଛୋଟ ତାକୁ ସମସ୍ତେ ଜାଣିଥିଲେ । ସମସ୍ତେ ତାକୁ ଘୃଣା କରୁଥିଲେ ଓ ଡରୁଥିଲେ ।

ଛକ ଯାଗାମାନଙ୍କରେ ରିକ୍ସା ରଖି, ରିକ୍ସାରେ ବସି ବିଡି ପିଇବା ତାର କାମ ଥିଲା । କେବେ କେବେ ସେ ଗୁଣୁ ଗୁଣୁ ହୋଇ ଗୀତ ଗାଇ ଖାଲି ରିକ୍ସା ଟାଣି ଟାଣି ଫେରୁଥିଲା । ସବୁବେଳେ ପତ୍ରୋଶକୁ ରିକ୍ସା ସହିତ ଦେଖିବାକୁ ମିଳୁଥିଲା । କିନ୍ତୁ ରିକ୍ସା ଚଳାଇବା କାମ ଯେ ପତ୍ରୋଶର ନଥିଲା ଏକଥା ସମସ୍ତେ ଜାଣିଥିଲେ । ଯଦି ଏ କଥା ଜାଣି ନଥିବା କୌଣସି ଲୋକ ପତ୍ରୋଶକୁ ରିକ୍ସା ପାଇଁ ଡାକୁଥିଲେ ତ ସେ କହୁଥିଲା - "ସାହେବ, ବର୍ତ୍ତମାନ ରିକ୍ସା ଯାଇ ପାରିବ ନାହିଁ । ଜଣେ ଭଦ୍ରଲୋକଙ୍କୁ ଆଣିବା ସକାଶେ ମୁଁ ଅନ୍ୟ ଆଡକୁ ଯାଉଛି ।"

ଯେତେବେଳେ ସନ୍ଧ୍ୟା ହୋଇ ଆସେ ସେତେବେଳେ ପତ୍ରୋଶର ରିକ୍ସା ଅଧିକ ଯାତାୟତ ନଥିବା ଗଳି ଓ ରାସ୍ତା ମାନଙ୍କରେ ଖୁବ୍ ଜୋରରେ ଚାଲିଥାଏ । ସେ ସମୟରେ ଏ ରିକ୍ସାର ପର୍ଦ୍ଦା ବି ପକାଯାଉଥିଲା । ସେ ପର୍ଦ୍ଦାଥିବା ରିକ୍ସା କୁଆଡେ ଏବଂ କ'ଣ ପାଇଁ ଯାଉଛି ଏ କଥା ସମସ୍ତେ ଜାଣିଥିଲେ । କିନ୍ତୁ ସମସ୍ତେ ଦେଖି ନ ଦେଖିବା ପରି ରହୁଥିଲେ । ଏସବୁ ଧନୀକ ଶ୍ରେଣୀ ଓ ଅସାମାଜିକ ଲୋକଙ୍କର ଉଗ୍ର ଦୈହିକ କାମନାକୁ ଚରିତାର୍ଥ କରୁଥିଲା । ତେଣୁ ଲୋକ ତାକୁ ଘୃଣା କରିବା ସଙ୍ଗେ ସଙ୍ଗେ ଡରୁଥିଲେ ।

କିନ୍ତୁ କୋକୁରାମନ ତିଳେମାତ୍ର ଏକଥା ଜାଣି ନଥିଲା । ସେଥିପାଇଁ ବାସୁ ଯେତେବେଳେ ପତ୍ରୋଶ ଘରେ ରହିବା ପାଇଁ ମନା କଲା ସେତେବେଳେ ସେ ପଚାରିଲା –

'କାହିଁକି ମନା କରୁଛ ? ସେ ତ ହିନ୍ଦୁ ନୁହେଁ, ଖ୍ରୀଷ୍ଟିଆନ୍ । ତମେ କୋଉ ଜାତିର ଅନ୍ତତଃ ଏ କଥା ପଚାରିବାକୁ ସେଠାକୁ କେହି ଆସିବେ ନାହିଁ ।'

'ଏ କଥା ଠିକ୍ । କିନ୍ତୁ ଗୋଟିଏ କଥା ।'

'କ'ଣ ?'

'ସେଠାରେ ଯାଇ ରହିବା ପରେ ତୁମକୁ ଆଉ ଗୋଟେ ସ୍ତ୍ରୀ ଖୋଜିବାକୁ ପଡିବ ।'

'କାହିଁକି ?'

'କାହିଁକି ? - - - - - କାରଣ ସେମିତି କିଛି କଥା ଅଛି ।'

'କୁହନା ବାପୁ !'

'ରାତି ହେଉ ହେଉ ସେ ତୁମର ସ୍ତ୍ରୀକୁ କହିବ –'

'ଚାଲ, –ରିକସାରେ ବସ ।'

'କାହିଁକି ?'

'କାରଣ –ଯେ ଚାହିଁବ ତାକୁ ସେ ଦେଇପାରିବ ।'

କୋଙ୍କୁରାମନ ଏହାପରେ କିଛି ପଚାରିଲା ନାହିଁ । ଏବଂ ସେ ସମ୍ପର୍କରେ ପଶ୍ଚାତ୍ତାପ ସହିତ କଥାବାର୍ତ୍ତା ମଧ୍ୟ କଲାନାହିଁ ।

ବର୍ତ୍ତମାନ କ'ଣ କରାଯିବ ? ରହିବା କୋଉଠି ?

## 3

ବରୀଦୁ ସାହେବ ବଡ ଜମିଦାର ଥିଲେ । ଆଲପୁଷା ଏବଂ ଆଖପାଖ ଅଞ୍ଚଳରେ ତାଙ୍କର ବଡ ଧରଣର ବଗିଚା ଥିଲା । ସହର ନିକଟରେ ତାଙ୍କର ଗୋଟିଏ ବଡ ବଙ୍ଗଳା ମଧ୍ୟ ଥିଲା । ସେ ବଙ୍ଗଳା ତାଙ୍କର ଧନସମ୍ପତ୍ତିର ପ୍ରତୀକ ସ୍ୱରୂପ ଥିଲା ।

ପ୍ରଥମ ଆଲପୁଷାରେ ଇଂରେଜମାନେ ନଡିଆ କତା କାରଖାନା ତିଆରି କରିଥିଲେ । ପରେ ଦେଶବାସୀମାନେ ମଧ୍ୟ ଛୋଟ ଛୋଟ କାରଖାନାମାନ ତିଆରି କଲେ । କିନ୍ତୁ ଦେଶବାସୀମାନେ ଇଂରେଜମାନଙ୍କର ସମକକ୍ଷ ହୋଇ ପାରିଲେ ନାହିଁ । ସେଥିପାଇଁ ବରୀଦୁ ସାହେବ ଇଂରେଜ ମାନଙ୍କର କାରଖାନା ଠାରୁ ବଡ କାରଖାନା ତିଆରି କରିଥିଲେ ।

କିନ୍ତୁ ନିଜର ଚାଷୀମାନଙ୍କୁ ଆର୍ଥିକ ସହାୟତା କରିବା ସକାଶେ କାରଖାନା ଖୋଲିଛନ୍ତି ବୋଲି ବରୀଦୁ ସାହେବ ଲୋକମାନଙ୍କୁ କହୁଥିଲେ । ଯଦିଓ ସତକଥା ଜାଣିଥିବା ଲୋକ ଏହାକୁ ବିଶ୍ୱାସ କରୁ ନଥିଲେ ତଥାପି ଅନେକ ଲୋକ ଏହାକୁ ସତ ବୋଲି ବିଚାରୁ ଥିଲେ ।

ପ୍ରକୃତରେ କହିବାକୁ ଗଲେ ଏହା ଏପରି ଏକ କୌଶଳ ଥିଲା ଯେପରି ଜମିଦାର ଶ୍ରେଣୀର ଲୋକ ପୁଞ୍ଜିପତି

ହୋଇପାରିବେ ଏବଂ ଚାଷିମାନେ ଦିନ ମଜୁରିଆ ହୋଇ ରହିଯିବେ । ଶ୍ରମିକମାନଙ୍କୁ ଏକଜୁଟ କଲାପରି ଏ ତନ୍ତ୍ରର ଗୋଟିଏ ଶାଖା ଘର ପର୍ଯ୍ୟନ୍ତ ଏବଂ ଅନ୍ୟ ଗୋଟିଏ ଶାଖା କାଇଖାନା ପର୍ଯ୍ୟନ୍ତ ବ୍ୟାପ୍ତ ଥିଲା । ବରାଦୁ ସାହେବ ଏ ତନ୍ତ୍ରକୁ ଅମଳ କରିବାରେ ସଫଳତା ହାସଲ କରିଥିଲେ । ଯେଉଁମାନଙ୍କର କାମ କରିବାର ଶାରୀରିକ ଶକ୍ତି ଥିଲା ସେଭଳି ଲୋକମାନଙ୍କୁ ସେ ତାଙ୍କର କାରଖାନାରେ କାମ ଦେଇଥିଲେ । ଏହିପରି ସେ ଲୋକମାନଙ୍କ ଦୃଷ୍ଟିରେ ବଡ ଦୟାଳୁ ପୁଞ୍ଜିପତି ହିସାବରେ ଗଣ୍ୟ ହୋଇପାରିଲେ ।

ବରାଦୁ ସାହେବଙ୍କ ନିକଟରେ ନିଜର ଦୁଃଖ କାହାଣୀ କହିବା ସକାଶେ କୋଲୁରାମନ ସ୍ଥିର କଲା । ସେ ସାହେବଙ୍କ ଘରକୁ ଯାଇ ତାଙ୍କୁ ଦେଖାକରି ନିଜ ଦୁଃଖ କାହାଣୀ ତାଙ୍କୁ ଶୁଣାଇଲା । କୋଲୁରାମନ କୋଚ୍ଚିନର ଇଷବ ଜାତିର ଲୋକ ଏବଂ ତାର ସ୍ତ୍ରୀ ପୁଲୟ ଜାତିର ହୋଇଥିବାରୁ ଏବଂ ଆନ୍ତଃଜାତି ବିବାହକରି ସେମାନଙ୍କୁ ରହିବାପାଇଁ ସ୍ଥାନ ନ ମିଳୁଥିବା କଥା ମଧ୍ୟ ସେ ତାଙ୍କୁ ପ୍ରକାଶ କଲା ।

ଏ କଥା ଶୁଣି ସାହେବ ପଚାରିଲେ –

'ତା ହେଲେ ତୁମେ ପୁଣି ଇଷବ ହୋଇ କାହିଁକି ରହିଛ ? ଏବଂ ତୁମର ସ୍ତ୍ରୀ କାହିଁକି ପୁଲୟୀ ଭାବେ ରହିଛନ୍ତି ?'

'ଆଉ କ'ଣ କରାଯାଇପାରେ, ମାଲିକ !' – କୋଲୁରାମନ ପଚାରିଲା ।

'କ'ଣ ଆଉ କରାଯିବ ? – ହଁ, ଏ କଥା ପରେ କହିବି । ବର୍ତ୍ତମାନ ତୁମେ ଗୋଟେ କାମ କର । ମୋର ଜମିରେ ଗୋଟିଏ କୁଡିଆ କରି ତୁମେ ରହିଯାଅ । ମୁଁ ନିଜ କାରଖାନାରେ ମଧ୍ୟ ତୁମକୁ ଗୋଟେ କାମ ଦେଇଦେବି ।'

କୋଲୁରାମନ ଖୁସିରେ ଉଛୁଳି ପଡିଲା । କୁଡିଆ ଆଦି ତିଆରି କରିବାକୁ ସୂଚନା ଦେବାପରେ ସାହେବ କହିଲେ ଯେ– 'ଦେଖ, ଏଠାରୁ ବାଉଁଶ ଓ ନଡିଆଗଛର ବାହୁଙ୍ଗା ଆଦି ମଧ୍ୟ କୁଡିଆ ତିଆରି କରିବା ପାଇଁ ନେଇପାର ।'

କୋଲୁରାମନର ଚକ୍ଷୁରୁ ଆନନ୍ଦାଶ୍ରୁ ବୋହିବାକୁ ଲାଗିଲା ।

ସାହେବଙ୍କର ଜମି କାରଖାନା ଠାରୁ ବେଶୀ ଦୂରରେ ନଥିଲା । ବଗିଚାର ସେ ପଟରୁ କାରଖାନା ଅଫିସର କାନ୍ଥ ଦେଖାଯାଉଥିଲା ।

ଏ ବଡ ନଡିଆ ବଗିଚାର ଚାରିଆଡେ କଣ୍ଟାରେ ଘେର ହୋଇଥିଲା । ସେ ବଗିଚାର ପୂର୍ବ, ଦକ୍ଷିଣ ଏବଂ ଉତ୍ତର ପାର୍ଶ୍ୱରେ ଗଳି ମଧ୍ୟ ଥିଲା । ସେ କ୍ଷେତରେ ଛୋଟ ଛୋଟ ଝରଣା ମଧ୍ୟ ଥିଲା । କୋଲୁରାମନର କୁଡିଆ ବ୍ୟତୀତ ଅନ୍ୟାନ୍ୟ ଛଅଟି କୁଡିଆ ମଧ୍ୟ ସେଠାରେ ଥିଲା । ସେ କୁଟୀରରେ ଥିବା 6 ଜଣ ପୁରୁଷ ଓ ସ୍ତ୍ରୀ ଲୋକ ବରାଦୁ ସାହେବଙ୍କର ନଡିଆକତା କାରଖାନାରେ ଶ୍ରମିକଭାବେ କାର୍ଯ୍ୟ କରୁଥିଲେ ।

କୋଲୁରାମନ ନଡିଆ ବାହୁଙ୍ଗା ଓ ବାଉଁଶ ସାହାଯ୍ୟରେ ଗୁହାଳଭଳି ଗୋଟେ ବଡ କୁଡିଆ ତିଆରି କଲା ।

ସେ କୁଡିଆ କ୍ଷେତର ଦକ୍ଷିଣ ପଶ୍ଚିମ ଗଳିର ସାମନାସାମନି ଥିଲା । ସେଥିରେ ମାତ୍ର ଦୁଇଟି କୋଠରୀ ଥିଲା । ପ୍ରଥମଟି ରୋଷେଇ ଘର ଓ ଦ୍ୱିତୀୟଟି ଶୋଇବା ଘର । ସେ ଘରର ଛପର ଏତେ ନୁଆଁଣିଆ ଥିଲା ଯେ କୋଙ୍କୁରାମନକୁ ନଇଁକରି ଘରକୁ ପଶିବାକୁ ପଡୁଥିଲା ।

ଯେଉଁଦିନ ସେମାନେ ନୂଆ ତିଆରି ହୋଇଥିବା କୁଡିଆରେ ରହିବା ଆରମ୍ଭ କଲେ ସେଦିନ କୋଙ୍କୁରାମନ ଓ ନିଲୀ ଉଭୟେ ବରାଦୁ ସାହେବଙ୍କ ବଙ୍ଗଳାକୁ ଯାଇଥିଲେ । ସାହେବଙ୍କ ସ୍ତ୍ରୀ ଓ ତାଙ୍କର ଝିଅ ନିଲୀକୁ ଭିତର ଖଞ୍ଜାକୁ ନେଇ ତାର କୁଶଳ ସମାଚାର ପଚାରିଲେ । ନିଲୀକୁ ସମସ୍ତେ ପସନ୍ଦ କଲେ । ସେମାନେ ତାକୁ ସେରେ ଚାଉଳ, ଗୋଟେ ନଡିଆ, କିଛି ଲୁଣ, ଲଙ୍କା, ଏବଂ ପୁରୁଣା ଲୁଗା ମଧ୍ୟ ଦେଲେ ।

ବର୍ତ୍ତମାନ ସେମାନେ ସେ କୁଡିଆରେ ନିଜର ଦାମ୍ପତ୍ୟ ଜୀବନ ଆରମ୍ଭ କଲେ । ତା ଆରଦିନ କୋଙ୍କୁରାମନ ବରାଦୁ ସାହେବଙ୍କର କାରଖାନରେ ଶ୍ରମିକ ହିସାବରେ ଭର୍ତ୍ତି ହେଲା ।

କେବେକେବେ ନିଲୀ, ସାହେବଙ୍କର ବଙ୍ଗଳାକୁ ମଧ୍ୟ ଯାଉଥିଲା । ସେଠାରେ କୌଣସି ନା କୌଣସି କାମ ମଧ୍ୟ ମିଳିଯାଉଥିଲା । ତାକୁ କାମକରିବାକୁ କହନ୍ତୁ ବା ନ କହନ୍ତୁ, ନିଜ ଆଖିକୁ ଦେଖିବା ଭଳି କାମତକ କରି ପକାଉଥିଲା । ତା ବଦଳରେ ତାକୁ ଖାଇବାକୁ ଭାତ ଏବଂ କିଛି ଚାଉଳ ମିଳୁଥିଲା । ଚାଉଳ ହେଉ ବା ଖାଇବା ହେଉ, ନିଲୀ ତାକୁ ନିଜର କୁଡିଆକୁ ନେଇ ଯାଉଥିଲା ।

ଯଦିଓ ସେ ବଗିଚାରେ ଛଅଟି ପରିବାର ରହୁଥିଲେ ତଥାପି କୋଙ୍କୁରାମନର ପରିବାର ସମ୍ପୂର୍ଣ୍ଣ ଏକୁଟିଆ ରହୁଥିଲା । ଏ କଥା କହିବାର ତାତ୍ପର୍ଯ୍ୟ ହେଉଛି, ଯେ ଅନ୍ୟ ପରିବାର ସହିତ ତାର କୌଣସି ସାମାଜିକ ସମ୍ପର୍କ ନଥିଲା । ସେଠାରେ ଥିବା ପଡୋଶୀମାନେ କୌଣସି ଅଜବ ଜିନିଷକୁ ଦେଖିବାଭଳି ତାର କୁଡିଆ ଆଡକୁ ଅନାଇ ରହୁଥିଲେ । ହୁଏତ ସେମାନେ ଇଷବ ଜାତିର ଜଣେ ପୁରୁଷ ଚୋରୀ କରିଥିବା ପୁଲୟଜାତିର ଜଣେ ସ୍ତ୍ରୀ ଲୋକଙ୍କୁ କୌତୁହଳ ସହକାରେ ଦେଖୁଥିଲେ । କାହାରି ଆଖିରେ ଘୃଣା ଫୁଟି ଉଠୁଥିଲା ତ କାହାରି ଦୃଷ୍ଟିରେ କ୍ରୋଧ ପ୍ରକାଶ ପାଉଥିଲା ।

ନିଲୀର କୁଡିଆର ଉତ୍ତର ପାର୍ଶ୍ୱରେ ଇଷବ ଜାତିର ଗୋଟେ ପରିବାର ଥିଲା । ସେଠାରେ ନାନୀ (ନାରାୟଣୀ) ରହୁଥିଲା । ସେ ନିଲୀ ପ୍ରତି ସର୍ବାଧିକ ଘୃଣା ଏବଂ ବିରକ୍ତି ପ୍ରକାଶ କରୁଥିଲା । ଏହାର କାରଣ କେବଳ ଜାତି ସମ୍ବନ୍ଧିତ ପ୍ରଶ୍ନ ନଥିଲା । ନାନୀର ଗୋଟେ ଅସୁନ୍ଦରୀ ଝିଅ ଥିଲା । ଏବଂ ଅବସ୍ଥା ଚକ୍ରରେ ସେ ନିଲୀର ସମବୟସୀ ମଧ୍ୟ ଥିଲା । ସେ କାଳୀ ମାଙ୍କଡୀ ଝିଅକୁ ଦେଖିବାପରେ ନିଲୀକୁ ଦେଖିବା ମାତ୍ରେ ତାକୁ ବଡ ରାଗ ଆସୁଥିଲା । ସେ ଦାନ୍ତ କାମୁଡି କହୁଥିଲା ଯେ – 'ସେ ଲୋକକୁ କ'ଣ ଇଷବ ଜାତିର ଗୋଟେ ଝିଅ ମିଳିଲା ନାହିଁ ଯେ, ଏଭଳି ଏକ ପୁଲୟୀ ସ୍ତ୍ରୀ ଲୋକକୁ ଚୋରୀ କରି ଆଣିଲା ?'

ନାନୀର ଘରକୁ ଲାଗି କୁଞ୍ଚୁର ଘର । କୁଞ୍ଚୁ ସକାଳୁ କାମ କରିବାକୁ ଚାଲିଗଲା ପରେ ସେ ଘରେ ସର୍ବଦା କୋଳାହଳ ପାଟିତୁଣ୍ଡ କାନ୍ଦ ବୋବାଳି ଲାଗି ରହୁଥିଲା । ସେ ଘରେ ଦୁଇଟି ଦୁଷ୍ଟବାଳକ ଏବଂ କୌଣସି ନା କୌଣସି କାରଣରୁ ସର୍ବଦା ଚିତ୍କାର କରୁଥିବା ଗୋଟିଏ ବାଳିକା ମଧ୍ୟ ଥିଲା । ସେ ଘରର ସ୍ତ୍ରୀ ଲୋକ ନିଜ

ପିଲାପିଲିଙ୍କର ଦୁଷ୍ଟାମି ପାଟିତୁଣ୍ଡ ଲାଗି ନିଜର ସ୍ୱାମୀ, ପଡୋଶୀ, ଏବଂ ଏପରିକି ଈଶ୍ୱରଙ୍କୁ ଗାଳିଦେବା ପରେ ଯାଇ ଚୁପ୍ ରହୁଥିଲା । କେବେ କେବେ ଯଦି ନାନୀ ଗୋରୀର ଘରକୁ ଯାଉଥିଲା ତେବେ ଦୁହେଁ ମିଳିମିଶି କୋଲୁରାମନ ଓ ନିଲୀ ଉପରେ ଟିକା ଟିପ୍ପଣୀ କରୁଥିଲେ । ସେମାନେ ନିମ୍ନ ସ୍ୱରରେ କଥାବାର୍ତ୍ତା କରୁଥିଲେ ମଧ୍ୟ ପଡୋଶୀ ଘରେ ତାର ଶବ୍ଦ ଶୁଣା ଯାଉଥିଲା । ଗୋରୀ କହୁଥିଲା – 'ନାନୀ ଅପା କୋଲୁରାମନ ଇଷବ ଜାତିର ଲୋକ ହୋଇଥିବା ମିଛ କଥା । ସେ ଇଷବ ନୁହେଁ । ସେ ପୁଲୟନ[1] କିମ୍ବା ପରୟନ ହୋଇ ଥାଇପାରେ ।

କୁଞ୍ଜୁର ଘର ସେ ପାଖରେ ଦୁଇଟି ଖ୍ରୀଷ୍ଟାନ୍ ପରିବାର ଥିଲେ । ଗୋଟିଏ ଯୋଶେଫର ଏବଂ ଅନ୍ୟଟି ଖାରିଆର । ଯୋଶେଫ୍ ଏବଂ ତାର ଦୁଇଟି ପୁଅ ନଡ଼ିଆ କତା କରଖାନାରେ ଶ୍ରମିକଭାବରେ କାର୍ଯ୍ୟ କରୁଥିଲେ । ତେଣୁ ସେ ପରିବାର ଗୁଜୁରାଣ ମେଣ୍ଟିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କ ଅପେକ୍ଷା ସାମାନ୍ୟ ସୁଖରେ ଚଳୁଥିଲେ । ସେ ପଟୁ କୌଣସି ଚିତ୍କାର, ପାଟିତୁଣ୍ଡ ଶୁଣାଯାଉ ନ ଥିଲା । ଯୋଶେଫର ସ୍ତ୍ରୀ ମାରିଆମ୍ମା କେବେ କେବେ ନିଲୀର କୁଡିଆ ଆଡ଼କୁ ଚାହେଁ । ଯଦି ନିଲୀ ଓ ସେ ଉଭୟେ ସାମନାସାମନି ହୁଅନ୍ତି ତା ହେଲେ ସେ ଶୀଘ୍ର ସେଠାରୁ ଚାଲିଯାଏ ।

ଖାରିଆର ଘର ଗୋଟିଏ ନର୍କପୁରୀ ଥିଲା । ତାର ସ୍ତ୍ରୀ ରୋଗିଣୀ ଥିବାରୁ ସେ ଉଠି ଚାଲବୁଲ କରି ପାରୁ ନ ଥିଲା । ତାର ଦୁଇଟି ପୁଅ ଥିଲେ । ସଦାବେଳେ କିଛି ନା କିଛି ରୋଗରେ ପୀଡ଼ିତ ହୋଇ ରହୁଥିଲେ । ସନ୍ଧ୍ୟାବେଳେ ଖାରିଆ ଯେତେବେଳେ କାରଖାନାରୁ ଫେରୁଥିଲା ସେତେବେଳେ ସେ ନର୍କପୁରୀରୁ ରକ୍ଷା ପାଇ ପାରୁ ନଥିଲା ।

ସେ ବଡ ଘରର ଉତ୍ତର ପଶ୍ଚିମରେ ଦୁଇଟି ଘର ଥିଲା । ଗୋଟିଏ କୁଞ୍ଚିପେଣ୍ଣୁର ଏବଂ ଅନ୍ୟଟି ବେଲାୟୁଧନର ।

କୁଞ୍ଚିପେଣ୍ଣୁର ପୁଅର ନାମ ଭାସ୍କରନ୍ । ସେ ପ୍ରାପ୍ତ ବୟସ୍କ ହୋଇ ସାରିଥିଲା । କୁଞ୍ଚିପେଣ୍ଣୁର ଜଣେ ପ୍ରେମିକ ମଧ୍ୟ ଥିଲା ! ସେ ପ୍ରେମିକର ବୟସ ତାର ପୁଅର ବୟସରୁ କେବେହେଲେ ଅଧିକ ନଥିଲା । ସେ ପ୍ରେମିକର ନାମ ରାମନ୍ । ରାମନ୍‌ର ବ୍ୟବସାୟ ହେଉଛି ଦର୍ଜୀ କାମ କରିବା । କିନ୍ତୁ ପ୍ରଧାନକାର୍ଯ୍ୟ ହେଉଛି କୁଞ୍ଚିପେଣ୍ଣୁର ପ୍ରେମିକହେବା । ମା ପରି ପୁଅ ଭାସ୍କରନ୍ ମଧ୍ୟ ଏକ ପଟରେ ପ୍ରଣୟ ଭିଖାରୀ ଥିଲା ।

ଭାସ୍କରନ୍ କେବେ କେବେ ନିଲୀର କୁଡିଆ ଆଡକୁ ଅନେଇ ହୁଇସିଲ ମାରୁଥିଲା । କେବେ କେବେ ସେ ଗଳି ଦେଇ ଘର ଉପରକୁ ଯାଇ ଦେଖି ବି ନେଉଥିଲା । ଘର ଉପରୁହିଁ ସେ ପ୍ରଶ୍ନ ପଚାରି ଦେଉଥିଲା ।

'କ'ଣ କୋଲୁରାମନ ବଡ ବାପା ସେଠାରେ ଅଛନ୍ତି ?'

'ନା' - ନିଲୀ ଗମ୍ଭୀର ହୋଇ ପ୍ରଶ୍ନର ଉତ୍ତର ଦେଉଥିଲା ।

1. ପରୟନ - ପୁଲୟ ଭଳି ଏକ ନୀଚ ଅଛବ ଜାତି ।

'କେତେବେଳ ସୁଦ୍ଧା ଆସିବେ ?'

''ସନ୍ଧ୍ୟାବେଳକୁ ।''

'ଯେତେବେଳେ ଆସିବେ କହିଦେବେ ଯେ ମୁଁ ଆସିଥିଲି ବୋଲି ।'

'ହଁ ।'

'କ'ଣ କହି ପାରିବ – କିଏ ଆସିଥିଲା ?'

'କିଏ ?'

'କୁଞ୍ଜିପେଣ୍ଟର ପୁଅ – ଭାସ୍କରନ୍ ।'

'ହଁ ।'

ସବୁ ପ୍ରଶ୍ନର ତ ଉତ୍ତର ମିଳୁଥିଲା । କିନ୍ତୁ କୌଣସି ଉତ୍ତର ଆଶା ସଞ୍ଚାରକାରୀ ନଥିଲା । ତଥାପି ଭାସ୍କରନ୍ ନିରାଶ ହୋଇ ନଥିଲା । ଯଦି କୌଣସି ଜିନିଷ ଦେବାପାଇଁ କେହିକେବେ ଅନିଚ୍ଛା ପ୍ରକାଶ କରେ ତା ହେଲେ ତାକୁ ବାରମ୍ବାର ମାଗିବା ସକାଶେ ସେ ନିଷ୍ପତ୍ତି ନେଇ ସାରିଥିଲା । ସେ ବାରମ୍ବାର ଏଭଳି ଆସି ନିଲୀ ସହିତ କଥାବାର୍ତ୍ତା କରୁଥିଲା ।

ବେଲାୟୁଧନକୁ ନିଜର ତିନି ଭଉଣୀ ତଥା ବିଧବା ମାର ଭାର ସମ୍ଭାଳିବାକୁ ପଡୁଥିଲା । ସେ ଯେତେବେଳେ ନଡିଆକତା କାରଖାନାକୁ କାମ କରିବାକୁ ଯାଉଥିଲା ସେତେବେଳେ ତାର ମା ଓ ଭଉଣୀ ଦଉଡି ତିଆରି କରୁଥିଲେ । ତେଣୁ ଅନ୍ୟକୁ ଦୋଷାରୋପ କରିବାପାଇଁ ସମୟ ତାଙ୍କ ପାଖରେ ନଥିଲା । ତଥାପି ଦଉଡି ଦଳିବା ସମୟରେ ସେ ନିଲୀର କୁଡିଆ ଆଡକୁ ଚାହୁଁଥିଲା ଏବଂ ବଡବଡ ହୋଇ କ'ଣ କହୁଥିଲା ।

ନିଲୀ ପଡୋଶୀମାନଙ୍କ ସହିତ କଥାବାର୍ତ୍ତା କରିବାପାଇଁ ଚାହୁଁଥିଲା । ସେ କେତେକ କଥା ସେମାନଙ୍କୁ ଶୁଣାଇବାକୁ ଏବଂ ସେମାନଙ୍କ ପାଖରୁ କେତେକ କଥା ଜାଣିବାକୁ ଚାହୁଁଥିଲା । ଦୁଇଜଣଙ୍କ ମଧ୍ୟରେ କିଭଳିଭାବରେ ପ୍ରେମର ସୂତ୍ରପାତ ହୋଇଥିଲା, କୋଚ୍ଚୁରାମନ ଦକ୍ଷିଣ ଅଗଣାରେ ଏବଂ ସେ ଉତ୍ତର ଅଗଣାରେ କିଭଳି ଭାବରେ ଦେଖାକରି ହସାହସି ହେଉଥିଲେ, ଦୁଇ ପରିବାରଙ୍କ ମଧ୍ୟରେ କିଭଳି ଝଗଡା ହେଉଥିଲା, ଏ ସମ୍ପର୍କରେ ସେମାନଙ୍କୁ ଆଉ କ'ଣ କଷ୍ଟ ସହିବାକୁ ପଡିଲା ଇତ୍ୟାଦି କଥା ସେମାନଙ୍କୁ ଶୁଣାଇବାକୁ ଚାହୁଁଥିଲା । ଶେଷରେ ବାଧ୍ୟ ହୋଇ ସେମାନଙ୍କୁ କିପରି ଗ୍ରାମ ଛାଡିବାକୁ ପଡିଲା ଇତ୍ୟାଦି ଇତ୍ୟାଦି କଥା । ଯଦି କାହାରିକୁ ସବୁ କଥା କୁହାଯାଇ ପାରନ୍ତା ତା ହେଲେ ତାକୁ ଆଶ୍ୱାସନା ମିଳିଯାଆନ୍ତା । ଏଭଳିଭାବେ ସେ ମଧ୍ୟ ପଡୋଶୀ ମାନଙ୍କର ଦାମ୍ପତ୍ୟଜୀବନ, ସେମାନଙ୍କର ଦୁଃଖ ଓ ସୁଖ, ସେମାନଙ୍କର ବନ୍ଧୁ ଓ ଶତ୍ରୁ, ଇତ୍ୟାଦି କଥା ଜାଣିବାକୁ ଚାହୁଁଥିଲା । ସେ ବି ଜଣେ ସ୍ତ୍ରୀ ଲୋକ । ତାକୁ ମଧ୍ୟ ସମାଜରେ ସମ୍ପର୍କ ସ୍ଥାପନ କରିବାକୁ ପଡିବ ।

କିନ୍ତୁ ଏହା ସହିତ ଯଦି କୌଣସି ଲୋକ କଥାବାର୍ତ୍ତା ନ କରନ୍ତି ତାହେଲେ ତା ସହିତ କଥାବାର୍ତ୍ତା କରିବ କିଏ ? ଯଦି ଏ ଆଡେ କୌଣସି ଲୋକ ନ ଆସନ୍ତି ସେ ଆଡକୁ ଯିବ କିଏ ? କୋଚ୍ଚୁରାମନର କଥା ତ ଅଲଗା । କାରଖାନାରେ ପହଞ୍ଚିବାପରେ ସେ କିଛି ଲୋକଙ୍କ ସହିତ ମିଳିମିଶି କଥାବାର୍ତ୍ତା କରିପାରୁଥିଲା । କିନ୍ତୁ ବିଚାରୀ ନିଲୀ କରେ କ'ଣ ? ହଁ, ସେ କେବେ ସାହେବଙ୍କର ବଙ୍ଗଳାକୁ ଯାଇ ସେଠାରେ କାମ କରୁଥିଲା । କିନ୍ତୁ ସେ ଲୋକଙ୍କ ସହିତ ନିଲୀ କ'ଣ କଥାବାର୍ତ୍ତା କରିବ ? ସେଠାରେ ସମସ୍ତେ ବଡ ବଡ ଲୋକ । ସେମାନେ

କ'ଣ ଏହାର ଛୋଟ ଛୋଟ କଥା ଶୁଣିବା ପାଇଁ ପ୍ରସ୍ତୁତ ହେବେ ? ସଂକ୍ଷେପରେ କହିବାକୁ ଗଲେ, ଆସ୍ତେ ଆସ୍ତେ ନିଲୀର ନିର୍ଜନତା ତାପାଇଁ ବଡ ଅସହ୍ୟ ହୋଇ ଉଠିଲା ।

ପଡୋଶୀ ଘରମାନଙ୍କରେ ଧର୍ମପ୍ରଚାର କରିବାସକାଶେ ଉପଦେଶୀ [1] ମାନେ ଆସୁଥିଲେ । ସେମାନଙ୍କ ମଧ୍ୟରେ ପୁରୁଷ ଓ ମହିଳା ଥିଲେ । କେବେ କେବେ ଉପଦେଶିନୀମାନେ ପଡୋଶୀମାନଙ୍କ ସହିତ କଥାବାର୍ତ୍ତା କଲାବେଳେ ଏ ଆଡେ ଅନାଇ ନିଲୀକୁ ଦେଖି ହସୁଥିଲେ । ସେମାନେ କୁଆଡୁ ଆସିଛନ୍ତି ଏବଂ କାହିଁକି ଆସିଛନ୍ତି ଏ କଥା ଅବଶ୍ୟ ନିଲୀକୁ ଜଣା ନଥିଲା । କିନ୍ତୁ ସେମାନେ ଯେ ସମସ୍ତଙ୍କ ଘରକୁ ଯାଆନ୍ତି ଏ କଥା ତାକୁ ଜଣାଥିଲା ।

ଦିନେ ଦୁଇଜଣ ଉପଦେଶିନୀ ଯେତେବେଳେ ତା ଆଡକୁ ଅନେଇ ହସିଲେ ସେମାନଙ୍କୁ ସେ ପଚାରିଲା –

'ଆପଣମାନେ କାହିଁକି ଏ ଆଡେ ଆସୁନାହାନ୍ତି ?'

ସେମାନେ ଗଳିରୁ ଅଗଣାକୁ ଆସିଲେ । ଏବଂ ଅତି ଆଦରର ସହିତ କୁଶଳ ସମାଚାର ପଚାରିଲେ ।

କୁଡିଆ ଭିତରକୁ ଆସିବା ସକାଶେ ସେମାନଙ୍କୁ ନିମନ୍ତ୍ରଣ ଜଣାଇଲା । ସେମାନେ ନିସଙ୍କୋଚରେ ଭିତରକୁ ଗଲେ । ତାର ବୁଣା ଚଟେଇରେ ସେମାନେ ବସିଲେ । ପୁଣି ସେମାନେ ପ୍ରଶ୍ନ କଲେ – ବନ୍ଧ ଭାଙ୍ଗି ବୋହିଗଲା ପାଣିପରି ତାର ମୁହଁରୁ କଥା ସବୁ ବାହାରିବାକୁ ଲାଗିଲା । ସେ ସବୁ କଥା କହିଲା ।

ସେମାନେ କ୍ଷମା ଓ ସହାନୁଭୂତି ସହ ସବୁ କଥା ଶୁଣିଲେ । ଶେଷରେ ସେ ତାଙ୍କ ଦୁହିଁଙ୍କପାଇଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କଲେ । କେବଳ ଏତିକି ନୁହେଁ, ବାଇବେଲରୁ କିଛି ବାକ୍ୟ ମଧ୍ୟ ପଢିଲେ । ତାଠାରୁ ମୋକ୍ଷପାଇବାପାଇଁ ମହାତ୍ମା ଯୀଶୁଙ୍କ ପ୍ରଦର୍ଶିତ ମାର୍ଗ ଅନୁସରଣ କରନ୍ତୁ ବୋଲି ସେମାନେ ଉପଦେଶ ମଧ୍ୟ ଦେଲେ ।

ନିଲୀକୁ ଆଶ୍ୱାସନା ମିଳିଲା । ତାର ଯାହା କହିବାର ଥିଲା, ସେ କହିଦେଲା । ସେମାନଙ୍କର ଯେଉଁ ପ୍ରେମ କାହାଣୀ ସାରା ଜଗତକୁ ଶୁଣାଇବାର ଥିଲା ତାହା ସେ ଦୁଇଜଣଙ୍କୁ ଶୁଣାଇଦେଲା । ଆହୁରି ମଧ୍ୟ କେତେକ କଥା କହିବାପାଇଁ ସେ ଚାହୁଁଥିଲା । ପରେ ସେ ସମସ୍ତ କଥା ଶୁଣିବା ପାଇଁ ସେମାନେ ପ୍ରତିଶ୍ରୁତି ଦେଇଥିଲେ । ଏ କେତେବଡ ଆଶ୍ୱାସନାର କଥା !

ସେ ଦିନ ସନ୍ଧ୍ୟାବେଳେ କୋଲୁରାମନ କାରଖାନାରୁ ଫେରିବାପରେ ନିଲୀ ଉପଦେଶିନୀ ମାନଙ୍କ ଆଗମନ କଥା ତାକୁ କହିଲା । କୋଲୁରାମନ ପଚାରିଲା –

'କ'ଣ ସେମାନେ ପୁଣି ଆସିବେ ?'

'ହଁ, ସେମାନେ ପୁଣି ଆସିବେ ବୋଲି କହିଛନ୍ତି ।'

କୋଲୁରାମନ ନିଲୀର ଅଣନିଶ୍ୱାସୀ ହେବାକଥା ଜାଣିଥିଲା । ସେଥିପାଇଁ ସେ ଖୁସିରେ ଉପଦେଶିନୀ ମାନଙ୍କୁ ସ୍ୱାଗତ ଜଣାଇଲା । ସେମାନଙ୍କୁ ପୁଣି ଥରେ ଦେଖାକରିବା ପାଇଁ ଉତ୍ସାହ ମଧ୍ୟ ଦେଲା । କେବଳ ଏତିକି ନୁହେଁ, ବର୍ତ୍ତମାନ ସ୍ୱୟଂ କୋଲୁରାମନର ଚିନ୍ତାରେ ମଧ୍ୟ କେତେକ ପରିବର୍ତ୍ତନ ଆସିଯାଇଥିଲା ।

1. ଖ୍ରୀଷ୍ଟଧର୍ମ ପ୍ରଚାର କରିବା ପୁରୁଷମାନଙ୍କୁ ଉପଦେଶୀ ଓ ମହିଳା ମାନଙ୍କୁ ଉପଦେଶିନୀ କୁହାଯାଏ ।

ଏଭଳି ଭାବରେ କିଛିଦିନ ବିତିଗଲା । ଦିନେ କାମ ଶେଷରେ କୋକୁରାମନ ଫେରି ଦେଖେ ତ କୁଡ଼ିଆ ଭିତରେ ଥିବା ତାଟିରେ ଗୋଟିଏ ଚିତ୍ରପଟ ଟଙ୍ଗା ହୋଇଛି । ସେ ଚିତ୍ରପଟ ମହାତ୍ମା ଯୀଶୁଙ୍କର । ଯୀଶୁମହାତ୍ମା ସମଗ୍ର ପୃଥିବୀର ପାପ ମୋଚନ କରିବା ନିମନ୍ତେ ନିଜେ ଶୂଳୀ ଉପରେ ଚଢ଼ିଥିଲେ । କୋକୁରାମନ ଅତି ଆଗ୍ରହ ସହକାରେ ସେ ଚିତ୍ରପଟ ଦେଖିବାକୁ ଲାଗିଲା । ଯୀଶୁଙ୍କର ପାଦ, ହାତ ଏବଂ ଛାତିରୁ ରକ୍ତ ବୋହୁଥିଲା । କଣ୍ଟାରେ ପିଟାଯାଇଥିବା ଯୋଗୁଁ ମୁଣ୍ଡ ସାମାନ୍ୟ ତଳକୁ ଝୁଙ୍କି ପଡ଼ିଥିଲା ଓ ସେ କ୍ଳାନ୍ତ ଜଣା ପଡୁଥିଲେ । କୋକୁରାମନର ଚକ୍ଷୁ ଆନନ୍ଦାଶ୍ରୁରେ ଉଛୁଳି ପଡିଲା ।

ସେ ଦିନ ସନ୍ଧ୍ୟାପରେ ନିଲୀ ସେ ଚିତ୍ରପଟର ଠିକ୍ ତଳେ ମହମବତୀ ଜଳାଇଲା । ପତି ପତ୍ନୀ ଦୁହେଁ ସେ ଚିତ୍ରପଟ ତଳେ ବସିଲେ । ନିଲୀ ଭଜନ ଗାଇଲା ଓ କୋକୁରାମନ ନିଲୀର ସ୍ୱରରେ ସ୍ୱର ମିଳାଇଲା ।

ସେ ଦିନ ଉଭୟେ ସ୍ଥିର କଲେ ଯେ, ଯୀଶୁଙ୍କ ପ୍ରଦର୍ଶିତ ମାର୍ଗରେ ସେମାନେ ଚଳିବେ ।

ତା ଆରଦିନ ସକାଳୁ କୋକୁରାମନ ବରାଦୁ ସାହେବଙ୍କ ବଙ୍ଗଳାକୁ ଗଲା । ଫେରିବା ପରେ ନିଲୀକୁ କହିଲା—

'ଏଭଳି କାମ କରିବା ଠିକ୍ ବୋଲି ମାଲିକ ମଧ୍ୟ କହିଛନ୍ତି ।'

'କିପରି କରାଯିବ ?'

'ଯୀଶୁଙ୍କ ପ୍ରଦର୍ଶିତ ମାର୍ଗରେ ଚଳିବା ଆମର ପବିତ୍ର କର୍ତ୍ତବ୍ୟ ।'

କୋକୁରାମନ ଓ ନିଲୀ ଖ୍ରୀଷ୍ଟଧର୍ମ ଗ୍ରହଣ କରିବା ପାଇଁ ବ୍ରତ ନେଲେ । ବର୍ତ୍ତମାନ କୋକୁରାମନର ନାମ 'ଗର୍ଜୀ' ଏବଂ ନିଲୀର ନାମ 'ଏଲୀ' —ଏହିପରି ଦୁହେଁ ପୁନର୍ ନାମିତ ହେଲେ ।

## 4

ଗର୍ଜୀ ନଡ଼ିଆକତା ଦଉଡ଼ିରେ ତିଆରି ହେଉଥିବା ଚଟେଇ ବୁଣିବାରେ ବିଶେଷ ଦକ୍ଷତା ହାସଲ କରିଥିଲା । ସେ ଶୀଘ୍ର ଖୁବ୍ ସୁନ୍ଦର ଭାବରେ ବୁଣି ପାରୁଥିଲା । ସେ ବେଶୀ ପରିମାଣ କାମ କରୁଥିବାରୁ ତାକୁ ବେଶୀ ମଜୁରୀ ମଧ୍ୟ ମିଳୁଥିଲା । ସେ ବରାଦୁ ସାହେବଙ୍କର ପ୍ରିୟ ଶ୍ରମିକ ଥିବାରୁ ଶ୍ରମିକମାନଙ୍କ ମଧ୍ୟରେ ତାର ଏକ ସ୍ୱତନ୍ତ୍ର ସ୍ଥାନ ମଧ୍ୟ ଥିଲା ।

ବରାଦୁ ସାହେବ ନିଜର ଜମି ଦେଖିବାକୁ ଯାଉ ନଥିଲେ କିମ୍ବା ନିଜ ଜମି ଉପରେ ଥିବା ଲୋକମାନଙ୍କ ଘରକୁ ଯାଉ ନଥିଲେ । ସେ ସମସ୍ତଙ୍କ ପାଇଁ ଭିନ୍ନ ପ୍ରକାରର ଲୋକଥିଲେ । କିନ୍ତୁ ଦିନେ ବରାଦୁ ସାହେବ ଯେତେବେଳେ ବୁଲି ବାହାରିଲେ ସେତେବେଳେ ସେ ଗର୍ଜୀର କୁଡ଼ିଆକୁ ଗଲେ । ଗର୍ଜୀ ଏବଂ ଏଲୀର କୁଶଳ ସମାଚାର ପଚାରିଲେ । ଘର ଭିତରକୁ ମଧ୍ୟ ଦେଖିଲେ । କେବଳ ଏତିକି ନୁହେଁ, ତାର କୁଡ଼ିଆ ଦେଖିସାରି

ସେ କହିଲେ ଯେ କୁଡିଆର ଆକାର ବଡ ହେବା ଏବଂ କୁଡିଆରେ ତାଲା ଲଗାଇବାର ସୁବିଧା ମଧ୍ୟ ରହିବା ଉଚିତ । ଆବଶ୍ୟକ ସ୍ଥଳେ ଦଶ କୋଡିଏଟି ନଡିଆ ଗଛର ବାହୁଙ୍ଗା ମଧ୍ୟ ଦିଆଯାଇପାରେ ବୋଲି ତାକୁ କୁହାଗଲା ।

ସାହେବ ଚାଲିଗଲା ପରେ ସେ ଅଞ୍ଚଳରେ ଓ ଆଖପାଖରେ ଥିବା ଲୋକେ ତାକୁ ଦେଖିବାକୁ ତଥା ତାକୁ ଆଦର କରିବା ସକାଶେ ତାର ଅଗଣାକୁ ଚାଲି ଆସିଲେ । ସାହେବ ଆଉ କୁଆଡେ ନଯାଇ ଏଇଠି ବସି ସେ ସମସ୍ତଙ୍କର ଭଲମନ୍ଦ କଥା ପଚାରୁଥିଲେ । ଏଇ ଘଟଣାପରେ ପଡ଼ୋଶୀମାନଙ୍କ ଆଗରେ ଗର୍କୀ ଏବଂ ଏଲୀର ସାମାଜିକ ପ୍ରତିଷ୍ଠା ବଢିଗଲା । ଏହାପରେ ପଡୋଶୀମାନେ ଏଲୀର ଘରକୁ ଯିବା ଆସିବା ଆରମ୍ଭ କଲେ । ତା' ଛଡା ସେମାନେ ମଧ୍ୟ ଏଲୀକୁ ସେମାନଙ୍କ ଘରକୁ ଆସିବାପାଇଁ ଅନୁରୋଧ କଲେ ।

ଗର୍କୀ ଗୋଟିଏ ସୁନ୍ଦର କୁଡିଆ ତିଆରି କଲା । ବାଉଁଶରେ ତିଆରି ହୋଇଥିବା ସେ କୁଡିଆରେ ଝରକା କବାଟ, ଚୌକାଠ ଆଦି ସମସ୍ତ ଜିନିଷ ଥିଲା । ଅଲଗା ରୋଷେଇ ଘର ମଧ୍ୟ ଥିଲା । ସାମନାରେ ଚୌଡା ବାରଣ୍ଡା ତଥା ପଛରେ ଗୋଟିଏ ଛୋଟ କୋଠରୀ ମଧ୍ୟ ଥିଲା । କାଠର ଚୌକାଠରେ ଭଗବାନ ଯୀଶୁଙ୍କର ଗୋଟିଏ ଚିତ୍ର ମଧ୍ୟ ରଖାଯାଇଥିଲା । ଦୁହେଁ ପ୍ରତିଦିନ ମହମବତୀ ଜଳାଇ ସେଠାରେ ପ୍ରାର୍ଥନା କରୁଥିଲେ । ତା ଛଡା ରବିବାର ଦିନ ସେମାନେ ଗୀର୍ଜାକୁ ମଧ୍ୟ ଯାଉଥିଲେ ।

ଏଲୀ ଗର୍ଭବତୀ ହେଲା । ସେ ଗୋଟିଏ ପୁତ୍ର ସନ୍ତାନ ମଧ୍ୟ ଜନ୍ମ ଦେଲା । ପିଲାର ନାମ ରଖାଗଲା ଏଣ୍ଡ୍ରୋନି ।

ଖୁବ୍ ଦୁଃଖ ଏବଂ ଦାରିଦ୍ର୍ୟ ବିନା ସେ ଛୋଟ ପରିବାରର ଜୀବନ ଗୋଟିଏ ଛୋଟ ଝରଣା ପରି ବହି ଯାଉଥିଲା । ଗର୍କୀ ସବୁବେଳେ କାରଖାନା ଏବଂ ଘରପ୍ରତି ବିଶେଷ ଦୃଷ୍ଟି ଦେଉଥିଲା ।

ଅନ୍ୟର କଥା ଚିନ୍ତାକରିବା ବା ଅନ୍ୟ କଥାରେ ପଡିବା ପାଇଁ ତାର ଆଦୌ ସମୟ ନ ଥିଲା । କାରଖାନାରେ ପହଞ୍ଚିବାପରେ ଏଲୀ କଥା, ଏଣ୍ଡ୍ରୋନିର ସୁଖ ସୁବିଧାପ୍ରତି ଦୃଷ୍ଟିଦେବା - ବାସ୍, କେବଳ ଏତିକି ଜିନିଷକୁ ସେ ଭଲଭାବରେ ଦେଖୁଥିଲା ଏବଂ ଏତିକି କାମ ପାଇ ହିଁ ତାକୁ ସମୟ ମିଳୁଥିଲା । ତା ଛଡା ଏତିକିରେ ତାର ସନ୍ତୋଷ ମଧ୍ୟ ଥିଲା ।

ଦୁଇବର୍ଷ ପରେ ପୁଣି ଏଲୀ ଗର୍ଭବତୀ ହେଲା । ଏବଂ ଏଥର ମଧ୍ୟ ପୁତ୍ର ସନ୍ତାନ ଜାତ ହେଲା । ତାର ନାମ ରଖାଗଲା ରକ୍କି ।

ଏଲୀ ତାର ସମସ୍ତ ସମୟ ସନ୍ତାନ ମାନଙ୍କର ଲାଳନପାଳନ ତଥା ସ୍ୱାମୀର ସେବା ଶୁଶ୍ରୁଷାରେ କଟାଉ ଥିଲା । କିନ୍ତୁ ଗର୍କୀର ସେତେ ସେବା ଶୁଶ୍ରୁଷା ଆଦୌ ଦରକାର ନ ଥିଲା । ଘରେ ପହଞ୍ଚିବା ପରେ, ଗର୍କୀ ଯେ କିଛି କାମ କରୁ ସେ କଥା ଏଲୀ ଆଦୌ ଚାହୁଁ ନଥିଲା । ପ୍ରତ୍ୟେକ ସପ୍ତାହ ଶେଷରେ ମଜୁରୀ ମିଳିବାପରେ ସେ ଏଲୀ ହାତରେ ସବୁତକ ସମର୍ପଣ କରି ଦେଉଥିଲା । ଏଲୀ ତ ପ୍ରତ୍ୟେକଟି ପଇସାର ସଦୁପଯୋଗ କରିବା ଜାଣିଥିଲା ।

ବାହାରେ ତ କେତେ ପ୍ରକାର ଗଣ୍ଡଗୋଳ ଚାଲିଥିଲା । ସାମାଜିକ ତଥା ରାଜନୈତିକ ବାତାବରଣରେ ପରିବର୍ତ୍ତନର ହାୱା ବୋହୁଥିଲା । କିନ୍ତୁ ଗର୍କୀ ସେ ସବୁଥିରେ ଆଦୌ ମନ ଦେଉ ନଥିଲା । ଏବଂ ସେ କଥା ମଧ୍ୟ ଚାହୁଁ ନଥିଲା ।

କାରଖାନା ଭିତରେ ଶ୍ରମିକମାନେ ଲୁଚିଛପି ତଥା ସ୍ପଷ୍ଟ ଭାବରେ ଏ ସମ୍ପର୍କରେ କିଛି କଥାବାର୍ତ୍ତା କରୁଥିଲେ । ସେମାନେ ନିଜ ନିଜର ମଜୁରୀ ସମ୍ପର୍କରେ କଥାବାର୍ତ୍ତା ହେଉଥିଲେ । ଏବଂ ଗର୍କୀ ସେ କଥା ଶୁଣି ନ ଶୁଣିବା ପରି ରହୁଥିଲା । ନିଜ ପାଇଁ ଯାହା କିଛି ମିଳୁଥିଲା, ସେଥିରେ ସେ ସନ୍ତୁଷ୍ଟ ଥିଲା । ସେଠାରେ କାର୍ଯ୍ୟ କରୁଥିବା ପଦସ୍ଥ କର୍ମଚାରୀମାନଙ୍କ ବିଷୟରେ ସେ ସମ୍ପୂର୍ଣ୍ଣ ଅନଭିଜ୍ଞ ଥିଲା ।

ଯେତେବେଳେ ଶ୍ରମିକମାନେ ମିସ୍ତ୍ରୀ ଏବଂ ମୁନ୍‌ସୀମାନଙ୍କ ବିରୁଦ୍ଧରେ ପ୍ରତିକୂଳ ମନ୍ତବ୍ୟମାନ କରୁଥିଲେ ସେତେବେଳେ ସେ ଚୁପ୍ ରହୁଥିଲା । କିନ୍ତୁ କେହି କେତେବେଳେ ଯଦି ବରାଦୁ ସାହେବଙ୍କ ବିରୁଦ୍ଧରେ କହୁଥିଲା ତ ସେ ଆଦୌ ତାହା ସହି ପାରୁ ନଥିଲା । ସେ କହୁଥିଲା –

'ଆରେ, ମାଲିକ ବା ସାହେବ କାହାକୁ କହିବାକୁ ହୁଏ ଜାଣ ! - - - - ମାଲିକ ହେଉଛନ୍ତି ଈଶ୍ୱରଙ୍କ ଦ୍ୱିତୀୟ ଅବତାର । ସେ ଆମର ରକ୍ଷା କରିପାରନ୍ତି ବା ଆମକୁ ଦଣ୍ଡ ମଧ୍ୟ ଦେଇ ପାରନ୍ତି । ଏ କଥା କ'ଣ ତମେ ଜାଣ ?'

ଏଲୀର ତୃତୀୟ ପିଲା ମାତ୍ର ବର୍ଷ ପରେ ହେଲା । ଏଥର ଝିଅ ହେଲା । ତାର ନାମ ରଖାଗଲା 'ଅନ୍ନା' ।

ଏଣ୍ଡ୍ରୋନିର ଚେହେରା ସହିତ ଗର୍କୀର ଚେହେରାର ଅନେକ ସାମଞ୍ଜସ୍ୟ ଥିଲା । କିନ୍ତୁ ଏଣ୍ଡ୍ରୋନି ଜିଜ୍ଞାସୁ ଥିଲା । ସେ ସବୁକିଛି ଜାଣିବାକୁ ଚାହୁଁଥିଲା । ସେ ଯାହା କିଛି ପାଉଥିଲା କୌଣସି ନା କୌଣସି ପ୍ରକାରେ ତାକୁ ପଢି ନେଉଥିଲା । ତାର ଚଲାବୁଲା ଏବଂ ରଙ୍ଗଢଙ୍ଗ ଦେଖି ଜଣାପଡୁଥିଲା ଯେମିତି ସେ କିଛି ଗୋଟାଏ ଚିନ୍ତାରେ ସବୁବେଳେ ବୁଡି ରହିଛି । ତାର ଯାହା ସାଙ୍ଗରେ ଦେଖା ହେଉଥିଲା ତାକୁ ସେ କିଛିନା କିଛି ପ୍ରକାର ପ୍ରଶ୍ନ ପଚାରୁଥିଲା ।

ରକ୍‌କିର ପ୍ରକୃତି ଠିକ୍ ଏହାର ବିପରୀତ । ସେ ବଡ ଝଗଡା ପ୍ରିୟ । ସେ ଯେତେବେଳେ ପଡୋଶୀମାନଙ୍କ ଘରକୁ ବୁଲିଯାଉଥିଲା ସେତେବେଳେ କୌଣସି ନା କୌଣସି କାରଣରୁ ପଡୋଶୀମାନଙ୍କ ପିଲା ମାନଙ୍କ ସହିତ ତାର ଝଗଡା ହୋଇଯାଉଥିଲା । ସ୍କୁଲରେ ତା ବିଷୟରେ ପ୍ରତ୍ୟେକ ଦିନ କିଛି ନା କିଛି ଅଭିଯୋଗ ହେଉଥିଲା । କେବେ କେବେ ଏଲୀ ଏଥିପାଇଁ ତାକୁ ମାଡ ମଧ୍ୟ ଦେଉଥିଲା । କିନ୍ତୁ ପିଲାମାନଙ୍କୁ ମାଡ ଦେବା ସମ୍ପର୍କରେ ଗର୍କୀ କେବେହେଲେ ଏଲୀ ସହିତ ଏକମତ ହୋଇ ପାରୁ ନଥିଲା ।

ଅନ୍ନା ଠିକ୍ ମା ପରି ହୋଇଥିଲା । ତେବେ, ତାର ରଙ୍ଗ ତା ମା ପରି ମଇଳା ନଥିଲା । ବରଂ ଧୂମିଳ ଏବଂ ଗୌରବର୍ଣ୍ଣ ଥିଲା । ଆଖି ମଧ୍ୟ ଦେଖିବାକୁ ଠିକ୍ ତାର ମା ଆଖି ପରି । କିନ୍ତୁ ସେ ଆଖିରେ କେମିତି ଗୋଟିଏ ଦୁଃଖର କାଳିମା ଲାଗିରହିଥିଲା । ଭଜନ ଏବଂ ପ୍ରାର୍ଥନାରେ ତାର ବହୁତ ଆଗ୍ରହ ଥିଲା । କ୍ରୁଶବିଦ୍ଧ ଯୀଶୁଙ୍କ ସାମନାରେ ସେ ଅନେକ ସମୟ ପର୍ଯ୍ୟନ୍ତ ବସିରହି ତାଙ୍କୁ ଅନେଇ ରହୁଥିଲା । ଲାଗୁଥିଲା ଯେମିତି ତାର

ଚକ୍ଷୁ ପୂର୍ଣ୍ଣ ହୋଇ ଉଠିଛି । କେବେକେବେ ସେ କେବଳ ଆକାଶକୁ ଅନାଇ ବସି ରହୁଥିଲା । ଯେତେବେଳେ ସେ ଏ ଭାବରେ ବସି ରହୁଥିଲା ଜଣାପଡୁଥିଲା ଯେମିତି ହୃଦୟର କରୁଣା ବିଗଳିତ ହେଉଛି ।

ଏଣ୍ଟୋନି ପଞ୍ଚମ ଶ୍ରେଣୀରେ, ରକ୍ତ ତୃତୀୟ ଶ୍ରେଣୀରେ ପଢୁଥିଲେ, 'ଅନ୍ନା' ଏଥର ତ ବର୍ଣ୍ଣମାଳା ସହିତ ପରିଚିତ ହେବା ଆରମ୍ଭ କରିଥିଲା ।

ପରିବାର ରୂପୀ ନାଳ କ୍ରମେ ଗଭୀର ଏବଂ ଆହୁରି ପ୍ରଶସ୍ତ ହେବାକୁ ଲାଗିଲା । ପାଞ୍ଚପ୍ରାଣୀ ବିଶିଷ୍ଟ ପରିବାରକୁ ଖାଦ୍ୟ ଏବଂ ବସ୍ତ୍ର ଯୋଗାଇବା ମୁଖ୍ୟ କାର୍ଯ୍ୟ ଥିଲା । ଏହା ବ୍ୟତୀତ ଏଣ୍ଟୋନି ଏବଂ ରକ୍ତିର ପଢା ଖର୍ଚ୍ଚ ତୁଲାଇବା ଆଉ ଏକ କାର୍ଯ୍ୟ ଥିଲା । ଗର୍କୀକୁ ଯେଉଁ ମଜୁରୀ ମିଳୁଥିଲା ସେଥିରୁ ଏ ସବୁ ନିର୍ବାହ କରିବା ବଡ କଷ୍ଟସାଧ୍ୟ ବ୍ୟପାର ଥିଲା । ଏ କଥା ବିଚାରକରି ମା ବାପା ନିଜ ନିଜର ଖାଇବା କମାଇ ସନ୍ତାନସନ୍ତତି ମାନଙ୍କୁ ଦେଉଥିଲେ । ଏହି କାରଣରୁ ତାର ସ୍ୱାସ୍ଥ୍ୟରେ ଗଣ୍ଡଗୋଳ ହେବାକୁ ଲାଗିଲା । ଗର୍କୀ ଆଗରୁ ଯେମିତି ଚଟେଇ ବୁଣିବାରେ ପାରଦର୍ଶିତା ଏବଂ ଦକ୍ଷତା ହାସଲ କରିଥିଲା ବର୍ତ୍ତମାନ ସେଥିରେ ସ୍ଥବିରତା ଆସିଗଲା । ଏହି କାରଣରୁ ତାର ମଜୁରୀ ମଧ୍ୟ କମିବାକୁ ଲାଗିଲା ।

କାରଖାନାରେ ଶ୍ରମିକମାନଙ୍କ ଅସନ୍ତୋଷର ଅସ୍ପଷ୍ଟ ଧ୍ୱନି କ୍ରମେ ସେମାନଙ୍କ ଘରମାନଙ୍କରେ ମଧ୍ୟ ପ୍ରତିଧ୍ୱନିତ ହେବାକୁ ଲାଗିଲା । ସେ ପ୍ରତିଧ୍ୱନି ଚା ଦୋକାନ, ବିଡି ଦୋକାନ, ଛକଯାଗା ଇତ୍ୟାଦି ସବୁ ସ୍ଥାନରେ ବ୍ୟାପିଗଲା । ଏହା ଏପରି ଏକ ଆବେଗ ଯାହାର କାରଣ କାହାକୁ ଜଣା ନଥିଲା । କେହି କେହି ମିସ୍ତ୍ରୀମାନଙ୍କୁ ଗାଳି ଦେଉଥିଲେ ତ ଆଉ କେହି ଗୁମାସ୍ତାମାନଙ୍କୁ ଗାଳି ଦେଉଥିଲେ । କିଛି ଶ୍ରମିକ ମେନେଜର ଉପରେ ଆକ୍ଷେପ କରୁଥିଲେ । ଆଉ କିଛି ସ୍ୱୟଂ ମାଲିକ ଉପରେ ଦୋଷାରୋପ କରୁଥିଲେ । ରୋଗ କ'ଣ ସେ କଥା ରୋଗୀ ଆଦୌ ଜାଣି ପାରୁ ନଥିଲା । ରୋଗ ଚିହ୍ନିବାର ଡାକ୍ତର ମଧ୍ୟ ନଥିଲା । ରୋଗୀ ଯାହାକୁ ଦେଖୁଛି ତାକୁଇ ଦୋଷ ଦେଉଛି ।

ଯୋଶେଫର ଦୁଇ ପୁଅ - ମଭାୟୀ ଏବଂ ସାଇମନ୍ - ସେମାନେ ମଧ୍ୟ କାରଖାନାର ଶ୍ରମିକ ଥିଲେ । ସେମାନେ ଉଭୟେ ବେଲାୟୁଧନର ବଡ଼ ସାଙ୍ଗ ଥିଲେ । କାରଖାନାରୁ ଫେରିବା ପରେ ତିନିଜଣଯାକ ବେଲାୟୁଧନ ଘର ଅଗଣାରେ ବସୁଥିଲେ ଏବଂ ଗପସପରେ ମଜ୍ଜି ଯାଉଥିଲେ । ଦିନେ ବେଲାୟୁଧନ ପାଟିକରି କହିଲା –

''ଆମକୁ ରକ୍ଷା କରିବା ସକାଶେ ସାହେବ କାରଖାନା ଚଳାଉଛନ୍ତି ବୋଲି କୁହାଯାଉଛି । କିନ୍ତୁ ଦେଖ ! ସାହେବ କ୍ରମଶଃ ମୋଟା ହେଉଛନ୍ତି ଏବଂ ଆମ୍ଭେମାନେ ଧିରେ ଧିରେ ମରିବାକୁ ଆରମ୍ଭ କଲୁଣି ।''

ଗର୍କୀ ନିଜଘର ଅଗଣାରେ ବସିଥିବା ସମୟରେ ଏକଥା ଶୁଣିଲା ଏବଂ ଡାକିକରି କହିଲା –
'ବେଲାୟୁଧନ, ତୁ ଈଶ୍ୱରଙ୍କ ନିନ୍ଦା କର ନାହିଁ !'
ଏଣ୍ଟୋନି ଧୀର ସ୍ୱରରେ କହିଲା -
'ବାପା, ସେ ଯେତେବେଳେ ସତକଥା କହୁଛି, ତୁମେ ତା ଉପରେ ରାଗୁଛ କାହିଁକି ?'

'ପୁଅ, ତୁ କ'ଣ କହିଲୁ ?' – ଗର୍କୀ ପଚାରିଲା ।

'ମୁଁ କହୁଥିଲି ଯେ, ସେ ଯାହା କହିଛି ତାହା ଠିକ୍ ।'

'ଏ ଠିକ୍ କଥା ନୁହେଁ ପୁଅ । ଆମ ମାଲିକ ହେଉଛନ୍ତି ସ୍ୱୟଂ ଈଶ୍ୱର ।'

ଏଣ୍ଟୋନି ଅସ୍ୱୀକାର କରିବା ଭଙ୍ଗୀରେ ମୁଣ୍ଡ ହଲାଇଲା । କାରଣ ସେ ବାପାଙ୍କ ସହିତ ଯୁକ୍ତିତର୍କ କରିବା ପସନ୍ଦ କରୁ ନଥିଲା ।

ଯେତେବେଳେ ଏଣ୍ଟୋନି ସପ୍ତମଶ୍ରେଣୀ ପାଠ ଶେଷ କଲା, ସେତେବେଳେ ସେ ତାର ବାପାଙ୍କୁ କହିଲା – 'ବାପା, ଏବେ ମୁଁ କାମ କରିବାକୁ କାରଖାନାକୁ ଯିବି ।'

ଗର୍କୀ ଏଥିରେ ରାଜି ହେଲା । ରକ୍କି ମଧ୍ୟ କହିଲା ଯେ, ସେ କାମ କରିବାକୁ ଯିବ । ଗର୍କୀ ତାର ଯିବା ସପକ୍ଷରେ ମଧ୍ୟ ସମ୍ମତି ଦେଲା । ପୁଣି କହିଲା –

'ପୁଅ, ମୁଁ ଆଉ ଆଗଭଳି କାମ କରି ପାରୁନାହିଁ ।'

'ଏଣିକି ଭବିଷ୍ୟତରେ ପୁଅମାନେ କାମ କରି ତମକୁ ଖୁଆଇବେ –' ବୋଲି ଏଲୀ କହିଲା ।

ଏଣ୍ଟୋନି ଏବଂ ରକ୍କି କାରଖାନାକୁ ଯିବା ଆରମ୍ଭ କଲେ । ସେମାନେ ଗର୍କୀର ପୁଅ ହୋଇଥିବାରୁ କାରଖାନାରେ ଶ୍ରମିକ ମାନଙ୍କ ଚକ୍ଷୁରେ ସେମାନଙ୍କ ସ୍ୱତନ୍ତ୍ର ସ୍ଥାନ ଥିଲା । ସେମାନେ ଖୁବ୍ ଶୀଘ୍ର କାମ ଶିଖି ଗଲେ । ସେମାନଙ୍କୁ ମଜୁରୀ ମଧ୍ୟ ମିଳିବା ଆରମ୍ଭ ହେଲା । ଯାହା କିଛି ମିଳୁଥିଲା, ସେମାନେ ତାଙ୍କର ମା ହାତରେ ଦେଇ ଦେଉଥିଲେ ।

ଅନ୍ନା ସ୍କୁଲ ଯାଉଥିଲା । ସେ ସମସ୍ତଙ୍କର ଗେଲହା ଥିଲା – ମା,ବାପା, ଭାଇମାନେ ତାକୁ ସମସ୍ତେ ଭଲ ପାଉଥିଲେ । ସେ ଭଲ ଫ୍ରକ୍ ପିନ୍ଧି ସ୍କୁଲକୁ ଯାଉଥିଲା । ସେ ଯାହା ମାଗୁଥିଲା ତାହା ପାଉଥିଲା । ଯେଉଁଦିନ ମଜୁରୀ ମିଳୁଥିଲା ସେଦିନ ତାର ବାପା ଏବଂ ଭାଇମାନେ ତା ପାଇଁ କିଛି ନା କିଛି ଉପହାର ନେଇ ଆସୁଥିଲେ । କିନ୍ତୁ ନିଜପାଇଁ କିଛି ଖାଇବା ଜିନିଷ ମିଳିଲେ, ସେ ଅନ୍ୟ ସମସ୍ତଙ୍କୁ ବାଣ୍ଟିଦେବା ପରେ ହିଁ ନିଜେ ଖାଇଥିଲା । ଏହାହିଁ ଥିଲା ତାର ସ୍ୱଭାବ ।

ବାପା, ମା, ଭାଇ ଏବଂ କ୍ରୁଶବିଦ୍ଧ ଯୀଶୁ – ଏଇ ମାନଙ୍କୁ ନେଇ ତାର ପରିବାର । ସେ ସ୍କୁଲକୁ ଯାଇ ପାଠ ପଢୁଥିଲା । କିନ୍ତୁ ତାର କେହି ପୁଅ କିମ୍ବା ଝିଅ ସାଙ୍ଗ ନଥିଲେ । ସେ ଏକୁଟିଆ ସ୍କୁଲକୁ ଯାଉଥିଲା ଏବଂ ଏକୁଟିଆ ମଧ୍ୟ ଫେରୁଥିଲା ।

ପଡିଶା ଓ ବାହାରେ ଏଣ୍ଟୋନି ଏବଂ ରକ୍କିର ଅନେକ ବନ୍ଧୁ ଥିଲେ । ସକାଳେ ସେମାନେ ତୋରାଣି କାଞ୍ଜି ପିଇ କାରଖାନାକୁ ଚାଲି ଯାଉଥିଲେ । ଦ୍ୱିପହରରେ ମଧ୍ୟ ସେମାନେ ଆସି କାଞ୍ଜିପିଇ ଚାଲିଯାଉଥିଲେ । ସେମାନେ ପ୍ରତ୍ୟେକଦିନ ରାତିରେ ଡେରିକରି ଫେରୁଥିଲେ ।

ଏଲୀ ପୁଅମାନଙ୍କୁ ଖୁଆଇବା ପାଇଁ ଅପେକ୍ଷା କରୁଥିଲା । ଖାଇବାପରେ ରକ୍କି ବାରଣ୍ଡାରେ ଶୋଇ

ଯାଉଥିଲା । କିନ୍ତୁ ଏଣ୍ଟୋନି କିରୋସିନୀ ତେଲରେ ଡିବି ଲଗାଇ ଅନେକ ରାତି ପର୍ଯ୍ୟନ୍ତ ପଢୁଥିଲା । କେବେ କେବେ ଗର୍ଜୀ ଉଠି ପଚାରୁଥିଲା –

'ଆରେ, ତୁ ଏତେ ରାତିଯାଏ କ'ଣ ପଢୁଛୁ ?'

ଏଣ୍ଟୋନି କିଛି ଜବାବ ଦେଉ ନଥିଲା । ସେ ଅନ୍ୟମାନଙ୍କ ଠାରୁ ମାଗି ନେଇଥିବା ଦୈନିକ ଖବରକାଗଜ ଏବଂ ମାସିକ ପତ୍ରିକା ପଢୁଥିଲା ।

ଦିନଥିଲା ଯେତେବେଳେ ମିସ୍ତ୍ରୀମାନେ ଶ୍ରମିକମାନଙ୍କୁ ଗାଳିଦେଉଥିଲେ ଏବଂ ମାଡ ମଧ୍ୟ ମାରୁଥିଲେ । ଏ କଥା ଥିଲା ଅତି ସାଧାରଣ । କେବେ ମିସ୍ତ୍ରୀମାନଙ୍କ ଇଚ୍ଛା ଅନୁସାରେ ତ କେତେବେଳେ କାରଖାନାର ଅଫିସରଙ୍କ ଆଦେଶ ଅନୁଯାୟୀ ଶ୍ରମିକମାନଙ୍କୁ ଗାଳି ତଥା ମାଡ ଚାଲୁରହିଥିଲା ।

ଦିନକର କଥା । ଯେତେବେଳେ ସାଇମନ୍ ଚଟେଇ ବୁଣୁଥିଲା ସେତେବେଳେ ମିସ୍ତ୍ରୀ ହଠାତ୍ ପଛପଟୁ ଆସି ସାଇମନର ଗାଲ ଉପରେ ଗୋଟିଏ ଥାପଡ ମାରିଲା । ସାଇମନର ମୁଣ୍ଡ କଟାଡି ହୋଇଗଲା ଏବଂ ସେ ତଳେ ପଡିଗଲା । ଏହା ଏକ ସାଧାରଣ ଏବଂ ମାମୁଲି ଘଟଣା ଥିବାରୁ କେହି ନିଜ ନିଜ ସ୍ଥାନରୁ ଟିକେ ହେଲେ ଘୁଞ୍ଚିଲେ ନାହିଁ ।

ସେଠାରେ ଚଟେଇ ବୁଣୁଥିବା ମଣ୍ଡାୟ୍ରୀ ଦଉଡିଆସି ଭାଇକୁ ସାଷ୍ଟାମ କରିନେଲା । ସେ ପଚାରିଲା –

'ମିସ୍ତ୍ରୀ, ତୁମେ ଯାକୁ କାହିଁକି ମାରିଲ ?'

'ତୋତେ ମଧ୍ୟ ବାଦ ଦେବିନାହିଁ । ବଦ୍‌ମାସ, ଖବରଦାର !'

ଏ କଥା କହି ମିସ୍ତ୍ରୀ ଗର୍ଜି ଉଠିଲା ।

'କାହିଁକି ମାରିଲ, ମିସ୍ତ୍ରୀ ? ଅନ୍ତତଃ ଥରେ କୁହନା ?' – ମଣ୍ଡାୟ୍ରୀ ପୁଣି ଥରେ ବିନୟ ହୋଇ ପଚାରିଲା ।

ମଣ୍ଡାୟ୍ରୀର ମୁହଁରେ ମଧ୍ୟ ଥାପଡ ବସିଲା । ତାର ମଧ୍ୟ ମୁଣ୍ଡ ବୁଲାଇବାରୁ ସେ ତଳେ ପଡିଗଲା ।

ଏଣ୍ଟୋନି ଏବଂ ରକ୍କି ପାଖ ପାଖ ହୋଇ ବସି ଚଟେଇ ବୁଣୁଥିଲେ । ଏଣ୍ଟୋନି ମିସ୍ତ୍ରୀକୁ ପଛପଟୁ ଟାଣି ଧରିଲା । ପଛେ ରକ୍କି ମଧ୍ୟ ବାଦ ଦେଲା ନାହିଁ । ଏଣ୍ଟୋନିର ମୁହଁରେ ଗମ୍ଭୀରତା ଫୁଟି ଉଠୁଥିଲା । ତଥାପି ସେ ନମ୍ରତାର ସହିତ ପଚାରିଲା –

'ମିସ୍ତ୍ରୀ, ମଣିଷକୁ କୁକୁର ପରି ମାରୁଛ କାହିଁକି ?'

'ତୁ କୋଉ ମଣିଷରେ ? ନମକ ହାରାମ୍ - କୃତଘ୍ନ ମାନେ କିପରି ମଣିଷ ହୁଅନ୍ତି ? କୁକୁର ?' - ମିସ୍ତ୍ରୀ ଚିତ୍କାର କରି ଉଠିଲା ।

ବର୍ତ୍ତମାନ ମଣ୍ଡାୟ୍ରୀ ଏବଂ ସାଇମନ୍ ଉଠି ଛିଡା ହୋଇଥିଲେ । ମଣ୍ଡାୟ୍ରୀ ପଚାରିଲା –

'ମୁଁ କିଭଳି କୃତଘ୍ନ କାମ କରିଛି ?'

'ଆରେ, ତମେ ସବୁ କାହାର ଖାଉଛ, ଜାଣ ?'

'କାହାର ମିସ୍ତ୍ରୀ ? କୁହନ୍ତ !' – ପଛରୁ ବେଲାୟୁଧନ ପଚାରିଲା ।

'ବର୍ତ୍ତମାନ ସୁଦ୍ଧା କାହାର ନମକ ଖାଉଛ ସେ କଥା କ'ଣ ନଜାଣି ଖାଉଥିଲ ?' 'ଆମେ ତ ଜାଣିକରି ଖାଉଥିଲୁ । ଆମେ ଯାହାକିଛି ଖାଉଛୁ ସେ ତ ଆମ ପରିଶ୍ରମର ଫଳ ।' – ଏ କଥା ଏଣ୍ଟୋନି କହିଲା । ତାର ଶବ୍ଦ ସେହିଠାରେ ହିଁ ପ୍ରତିଧ୍ୱନିତ ହୋଇ ଉଠିଲା ।

'କ'ଣ ତୋତେ ମଧ୍ୟ ଉତ୍ତମ ମଧ୍ୟମ ଦରକାର, କୃତଘ୍ନ କୁକୁର?' – ମିସ୍ତ୍ରୀ ଚିତ୍କାର କରି ଉଠିଲା ।

'ଏତେ ବୟସ୍କ ହୋଇ ମଧ୍ୟ ତମେ ମଣିଷ ଏବଂ କୁକୁର ଚିହ୍ନି ପାରୁନ - - - -'

ମିସ୍ତ୍ରୀ ହାତ ଉପରକୁ ଉଠାଇବା ବେଳକୁ ପଛରୁ ରକ୍କି ଜବରଦସ୍ତି ଅଟକାଇ ଦେଲା ।

'କ'ଣ ହେଲା ମିସ୍ତ୍ରୀ, କ'ଣ ହେଲା ?' – ପାଟି କରି ଗର୍ଜୀ ସେଠାରେ ପହଞ୍ଚିଗଲା । ସେ ମିସ୍ତ୍ରୀର ହାତ ଛଡେଇ ଦେଲା । ପୁଣି ସେ ନିଜେ ମିସ୍ତ୍ରୀକୁ କ୍ଷମା ମାଗିଲା । 'ନାବାଳକ ପିଲାମାନେ ମିସ୍ତ୍ରୀ, ନାବାଳକ ! ସେମାନଙ୍କୁ କ୍ଷମା କରିଦିଅ ।'

'ସେମାନଙ୍କୁ ଦଣ୍ଡ ଦେଇ ପାଳନ କରି ନଥିବାରୁ ସେମାନେ ଏଭଳି ନମକ ହାରାମ/ଅକୃତଜ୍ଞ ହୋଇ ଯାଇଛନ୍ତି ।'

'କ୍ଷମାକର ମିସ୍ତ୍ରୀ, କ୍ଷମାକର !' – ଗର୍ଜୀ ଅନୁନୟ ବିନୟ କଲା ।

ପୁଣି କେହି କିଛି କହିଲେ ନାହିଁ । ଏଣ୍ଟୋନି କେବଳ ଥରେ ମାତ୍ର 'ହୁଁ' କଲା । ରକ୍କି ନିଜ ହାତ ଚିପି ଚିପି ଦେଲା । ବେଲାୟୁଧନ ଥରେ ମାତ୍ର ମିସ୍ତ୍ରୀକୁ ଅନେଇଲା । ମଣ୍ଡାୟୀ ଏବଂ ସାଇମନ୍ ଦୀର୍ଘଶ୍ୱାସ ନେଲେ । ସେଇ 'ହୁଁ' ଶବ୍ଦ ଏବଂ ଦୀର୍ଘଶ୍ୱାସ ସାରା ଘରେ ଗୁଞ୍ଜରି ଉଠିଲା ।

ସେ ଦିନ ଏଣ୍ଟୋନି ଏବଂ ରକ୍କି ଯେତେବେଳେ ଘରକୁ ଆସିଲେ ସେତେବେଳକୁ ରାତି ଅଧ ହୋଇ-ଯାଇଥିଲା । ଏଲୀ ଏବଂ ଗର୍ଜୀ ନ ଶୋଇ ପୁଅମାନଙ୍କ ଆସିବା ପଥକୁ ଚାହିଁ ରହିଥିଲେ । ଖାଇବା ପୂର୍ବରୁ ଗର୍ଜୀ ଯେପରି ପିଲାମାନଙ୍କୁ କିଛି ନକହେ ସେଥିପାଇଁ ଏଲୀ ଗର୍ଜୀକୁ ସାବଧାନ କରିଦେଲା ।

ଖାଇସାରିବା ପରେ ରକ୍କି ବାରଣ୍ଡାରେ ଚଟେଇ ବିଛେଇ ଶୋଇଗଲା । ଏଣ୍ଟୋନି ଦୀପର ଆଲୁଅରେ ଖବର କାଗଜ ପଢ଼ିବାକୁ ଲାଗିଲା । ଗର୍ଜୀ ବାରଣ୍ଡାକୁ ଗଲା । ସେ ଚାଳ ଉପରର ବାଉଁଶକୁ ଧରି ଚୁପ୍‌କରି ଅନେକ ସମୟ ପର୍ଯ୍ୟନ୍ତ ସିଧାହୋଇ ଛିଡା ହୋଇଥିଲା । ଏଲୀ ତା ପଛରେ ଛିଡା ହେବାରୁ - ଏଣ୍ଟୋନି ପଚାରିଲା –

'ତମେମାନେ ଏ ପର୍ଯ୍ୟନ୍ତ ଶୋଇନାହିଁ କାହିଁକି ?'

'କେମିତି ଶୋଇବୁ ? ଯେତେବେଳେ ପିଲାମାନେ ଖରାପ ହୋଇଯିବେ, ସେତେବେଳେ ବାପା ମାଙ୍କୁ ନିଦ କିପରି ଆସିବ ?'

ଗର୍ଜୀର ଶରୀର ଥରି ଉଠିଲା । ସେ ରହି ରହି ଏହି କଥାଗୁଡାକ କହିଲା ।

ରକ୍କି ଉଠିଲା । ସେ ପଚାରିଲା –

'ବାପା, କ'ଣ କହୁଛନ୍ତି ? ମୁଁ କେଉଁ ଭୁଲ କାମଟି କରିଛି ?'

'ତୁ କାହିଁକି ମିସ୍ତ୍ରୀର ହାତ ଟାଣିଦେଲୁ ?'

ମିସ୍ତ୍ରୀ ଯେତେବେଳେ ବଡଭାଇକୁ ମାଡ ଦେଉଥିଲା ସେତେବେଳେ ମୋର କ'ଣ ଚୁପଚାପ୍ ଛିଡା ହୋଇ ଦେଖିବା ଉଚିତ ଥିଲା !'

'ଆଉ ମୁଁ ଯଦି ବର୍ତ୍ତମାନ ମାରିବାକୁ ଆସେ ତା ହେଲେ ତୁ ମୋ ହାତ ସେମିତି କ'ଣ ମୋଡି ଦେବୁ ।

'ବାପା, ତମେ ଯଦି ମୋତେ ମାରିବାକୁ ଚାହଁ, ତା ହେଲେ ମାରିପାର । ତମେ ପିଟ କିମ୍ବା ମାର, ଯାହା କରୁଛ କର' - ଏଣ୍ଟୋନି ଏ କଥା କହି ଉଠିଲା ଏବଂ ବାପାଙ୍କ ସାମନାରେ ମୁଣ୍ଡ ତଳକୁ କରି ଛିଡାହେଲା ।

ଏଲୀ ମଧ୍ୟ ଉଲ୍ଲସିତ ହୋଇ କହିଲା –

'ତମେ ପିଟ କିମ୍ବା ମାର, ସେଥିରେ କ'ଣ ଅଛି ? କିନ୍ତୁ ସେ ମିସ୍ତ୍ରୀ କାହିଁକି ମୋ ପୁଅମାନଙ୍କ ଦେହରେ ହାତ ଦେବ ?'

'ବାପା, ତମେ ଆମକୁ ମାର, ମାରି ଦିଅ, ଆମେ ହୁଁ କି ଚୁଁ କରିବୁ ନାହିଁ ।' – ରକ୍କି ମଧ୍ୟ ଏକଥା କହି ବାପାଙ୍କ ସାମନାରେ ଆସି ମୁଣ୍ଡ ତଳକୁ କରି ଛିଡା ହେଲା ।

ପୁଣି କେହି କିଛି କହିଲେ ନାହିଁ । ଗର୍ବୀ ଆଖିରୁ ଲୁହ ପୋଛି ଭିତରକୁ ଚାଲିଗଲା । ଏଲୀ ମଧ୍ୟ ପଛେ ପଛେ ଗଲା ।

## 5

ବରାଦୁ ସାହେବଙ୍କର କୋଏର (ନଡିଆକତା ଦଉଡି ତିଆରି) କାରଖାନା ଆଗରେ ତିନୋଟି ରାସ୍ତା ଆସି ମିଳିତ ହୋଇଛି । ସହର ଆଡୁ ଆସୁଥିବା ରାସ୍ତା ସେଠାରେ ପହଞ୍ଚି ଦୁଇ ଆଡକୁ ଭାଙ୍ଗି ଲମ୍ବି ଯାଇଛି । ଗୋଟିଏ ଉତ୍ତର ପଶ୍ଚିମ ପଟକୁ ଏବଂ ଅନ୍ୟଟି ଉତ୍ତର ପୂର୍ବ ଦିଗକୁ ଯାଇଛି । ସେଇ ସଙ୍ଗମ ସ୍ଥାନ ଛକ ଯାଗାରେ ଚା, ପାନ, ଲୁଗା ଏବଂ ଦରଜୀ ଦୋକାନ ଅଛି । ସେଥିମଧ୍ୟରୁ କୁଟ୍ଟୁପେନର ମଧ୍ୟ ଗୋଟିଏ ଚା ଦୋକାନ ଅଛି ।

କୁଟ୍ଟୁପେନର ଦୋକାନ ଅନ୍ୟ ଚା ଦୋକାନଠାରୁ ସମ୍ପୂର୍ଣ୍ଣ ଭିନ୍ନ ପ୍ରକାରର ଥିଲା । ସେଇଠି ଚା ପିଇବା ପରେ, ଖବରକାଗଜ ପଢିବା ଏବଂ ବସିକରି କଥାବାର୍ତ୍ତା କରିବାର ସୁବିଧା ମଧ୍ୟ ରହିଥିଲା । କୁଟ୍ଟୁପେନ କିଛି ସାପ୍ତାହିକ - ମାସିକ ପତ୍ର ପତ୍ରିକାର ଗ୍ରାହକ ଥିଲା । ତା ଛଡା ବହି ପଢାପଢି କରିବାରେ ତାର ଅନେକ ଆଗ୍ରହ ଥିଲା । ଏଣୁ ସେ କୋଡିଏ ବହିପତ୍ର ସଂଗ୍ରହ କରିପାରିଥିଲା । ତା ଛଡା, ସେଠାକୁ ଯେଉଁମାନେ ଚା ପିଇବାକୁ ଯାଉଥିଲେ

ତାଙ୍କପାଇଁ କିଛି ନା କିଛି କରିବାକୁ ଉଦ୍ୟମ କରୁଥିଲା । ଏପରି କରିବା ଫଳରେ ତାର ବ୍ୟବସାୟରେ କ୍ଷତି ପରିବର୍ତ୍ତେ ଅନେକ ଲାଭ ହେଉଥିଲା ।

ବରାଦ୍ଦୁ ସାହେବଙ୍କ ତଥା ଆଉ ଅନ୍ୟାନ୍ୟ ବ୍ୟକ୍ତିଙ୍କ କାରଖାନାରୁ ଅନେକ ଶ୍ରମିକ ଆସି କୁଲୁପେନର ଦୋକାନରେ ଚା ପିଆପିଇ କରୁଥିଲେ । ଏହା ବ୍ୟତୀତ ସହରରେ ବିଦେଶୀ କାରଖାନାରେ କାମକରୁଥିବା ଶ୍ରମିକମାନେ ଘରକୁ ଫେରିବା ସମୟରେ କୁଲୁପେନର ଦୋକାନରେ ବସି ଚା ପିଇବା ସଙ୍ଗେ ସଙ୍ଗେ ଖବର କାଗଜ ପଢି ନେଇ କଥାବାର୍ତ୍ତା, ଆଳାପ ଆଲୋଚନାରେ ଲାଗିଯାଉଥିଲେ । ଏଣ୍ଟୋନି, ଯୋଶେଫ୍ ଆଦି ସମସ୍ତେ ସନ୍ଧ୍ୟାବେଳେ ଏଇଠି ଆସି ଚା ପିଇ ଖବର କାଗଜ ପଢୁଥିଲେ । ଖବର କାଗଜର କୌଣସି ଖବର ବା ମଜୁରୀ ସମ୍ବନ୍ଧୀୟ କୌଣସି ପ୍ରଶ୍ନ ଉପରେ କେବେକେବେ ଅନେକ ସମୟ ପର୍ଯ୍ୟନ୍ତ ବାଦ-ବିବାଦ, ଯୁକ୍ତିତର୍କ ଲାଗି ରହୁଥିଲା । ଏହି ଚିନ୍ତାପୂର୍ଣ୍ଣ ବାଦ-ବିବାଦ କେବେ କେବେ ଗମ୍ଭୀର ବାତାବରଣ ମଧ୍ୟରେ ହେଉଥିଲା ।

ଦୁଇଥର ଏପରି ଗୁରୁତ୍ୱପୂର୍ଣ୍ଣ ବିଚାର ଆଲୋଚନା ହୋଇଥିଲା । ପ୍ରଥମଥର ଯେତେବେଳେ ଶଙ୍କୁର ମାଆ ମରିଯାଇଥିଲା । ଆଉଥରେ ଯେତେବେଳେ ଭାର୍ଗବକୁ କାରଖାନାରେ ପ୍ରବେଶ କରିବାକୁ ଦିଆଯାଇ ନଥିଲା । ଯଦିଓ ସାମନାପଟୁ କବାଟ ବନ୍ଦକରି ଦିଆଯାଉଥିଲା ତଥାପି କବାଟର ରନ୍ଧ୍ର ଦେଇ ଭିତରର ଆଲୁଅ ଦେଖାଯାଉଥିଲା । ଖାଲି ଏତିକି ନୁହେଁ, କେବେକେବେ ଭିତରର ଫିସ୍‌ଫିସ୍ କଥାବାର୍ତ୍ତା ମଧ୍ୟ ଶୁଣାଯାଉଥିଲା । ଯେଉଁଦିନ ଶଙ୍କୁର ମାଆ ମରିଯାଇଥିଲା ସେଦିନ ପୋଲିସ ଆସି ଶଙ୍କୁ-ଅଳୁତନ ଏବଂ ଯୋଶେଫ୍‌କୁ ଥାନାକୁ ବାନ୍ଧି ନେଇ ଖୁବ୍ ପିଟାପିଟି କରି ତା ପରଦିନ ମୋକଦ୍ଦମା ରୁଜୁ ନକରି ସେମାନଙ୍କୁ ଛାଡିଦେଇଥିଲା । ସେ ଦିନ କୁଲୁପେନର ଦୋକାନରେ ରାତି ଅଧ ପର୍ଯ୍ୟନ୍ତ ଆଲୁଅ ଜଳୁଥିଲା ଏବଂ ଫିସ୍‌ଫିସ୍ କଥାବାର୍ତ୍ତା ମଧ୍ୟ ଚାଲିଥିଲା । ଏଣ୍ଟୋନି ଏବଂ ପଦ୍ମନାଭନ୍ କେବଳ ଚୁପଚୁପ ବସି ରହିଥିଲେ । ଆଉ କେତେକ ଲୋକ ଚାପା ଗଳାରେ କ'ଣ ଆଲୋଚନା କରୁଥିଲେ । ହଁ, ବେଳେ ବେଳେ, ରକ୍କିର ଶବ୍ଦ ନିୟନ୍ତ୍ରଣର ବାହାରକୁ ଚାଲିଯାଉଥିଲା । ସେ ଶବ୍ଦ ନିୟନ୍ତ୍ରଣ କରିପାରୁ ନଥିଲା । କାରଣ ସେ ଉଦ୍ଦଣ୍ଡ ଥିଲା । ସେ କହିଲା –

'ଆମେ ଯଦି ଡରରେ ଚୁପଚାପ ରହୁଁ, ତା ହେଲେ ପୋଲିସବାଲା ଆମ ମୁଣ୍ଡ ଉପରେ ଚଢିବେ । ଏହା ବଦଳରେ ଆମେ ଯଦି ଇଟାର ଉତ୍ତର ପଥରରେ ଦେବାପାଇଁ ପ୍ରସ୍ତୁତ ହୋଇଯାଉ, ତାହେଲେ ସେମାନେ ଆଉ ମାଡ ଦେବାକୁ ଆସିବେ ନାହିଁ ।'

'ଆମେ ମଧ୍ୟ ଯେ ପିଟିଲାବାଲା ସେ କଥା ସେମାନଙ୍କୁ କେମିତି ବୁଝେଇବା ?' ପଦ୍ମନାଭନ୍ ପଚାରିଲା ।

'କେମିତି ବୁଝାଇବା ? - - - - ସେମାନଙ୍କର ଗଳାକୁ ଲକ୍ଷ୍ୟ କରି ଆମେ ଜୋରରେ ଥାପଡ ଲଗାଇବା । ସେତେବେଳେ ଯାଇ ସେମାନଙ୍କୁ ଜଣାପଡିବ ଯେ, ଆମେ ମଧ୍ୟ ମାଡ ଦେଇପାରୁ ! '

'ଆରେ ରକ୍କି, ତୁମେ କ'ଣ ପାଗଳ ହୋଇଗଲ କି ?'

ବେଲାୟୁଧନ ପଚାରିଲା । 'ପାଗଳ ମୁଁ ନୁହେଁ । ଯେଉଁମାନେ ମାଡ ଖାଇଛନ୍ତି, ସେମାନେ ହେଉଛନ୍ତି ପାଗଳ । ମାଡ ଖାଇ ଚିତ୍କାର କରିବା ପାଗଳାମି ନୁହେଁ ତ ଆଉ କଣ ?'

ପଦ୍ମନାଭନ୍, ଯିଏ ଏ ପର୍ଯ୍ୟନ୍ତ ମୁଣ୍ଡ ନୁଆଇଁ ବସିଥିଲା, ସେ ସେଥିରେ ସ୍ୱୀକୃତି ନ ଦେଇ ମୁଣ୍ଡ ହଲାଇ କହିଲା– 'କେବେ ନୁହେଁ, ମାଡ ଖାଇବା କେବେ ହୋଇ ପାରିବ ନାହିଁ ।'

ଏଣ୍ଟୋନି ମୁଣ୍ଡ ଉଠାଇ ପଦ୍ମନାଭନ୍‌କୁ ଆଉ ଥରେ ଚାହିଁଲା । ତାର ଚାପି ହୋଇଯାଇଥିବା ଦୋଠ , ପୁଣି ଅସ୍ପଷ୍ଟ ଭାବରେ କ'ଣ ଗୁଣୁଗୁଣୁ ହୋଇ କହୁଥିଲା –

'ଯଦି ଇଟାର ଜବାବ ପଥରରେ ଦିଆଯାଏ ତା ହେଲେ - - - - -

'ତା ହେଲେ ? - - - - କ'ଣ ହେବ ?' – ରକ୍କି ପଚାରିଲା ।

'ଖଣ୍ଡାଧାରରେ ନିଜ ମୁଣ୍ଡକୁ ରଖିବା ଅର୍ଥ ଯାହା ଇଟାର ଜବାବ ପଥରରେ ଦେବା ଅର୍ଥ ସେଇଆ' ।

'ତା ହେଲେ, ଏ ମାରପିଟ୍‌ରୁ ବଞ୍ଚିବା ପାଇଁ ଆମେ କରିବୁ କ'ଣ ?' – ସାଇମନ୍ ପଚାରିଲା ।

ପଦ୍ମନାଭନ୍ ଧୀର ସ୍ୱରରେ କହିଲା –

'କ'ଣ କରିବା ? - - - - ଆମେ ଆପଣା ଆପଣା ଭିତରେ ମିଳିତ ହେବା ଦରକାର । ଏବଂ ଏହା କରିବା ଉଚିତ ।'

ଏଣ୍ଟୋନିର ଶବ୍ଦ ଆଉ ଟିକିଏ ଜୋରରେ ଶୁଣାଗଲା –

'ଏଇଟା ଠିକ୍, ଏଇଟା ଠିକ୍ କଥା । ନଡିଆ ଦଉଡିର ଗୋଟିଏ କେରା ହୁଏତ ପବନରେ ଉଡିଯାଇ ପାରେ କିନ୍ତୁ ମୋଟା ଦଉଡି କେବେହେଲେ ଉଡିଯିବ ନାହିଁ ।'

ପଦ୍ମନାଭନ୍ ଆସ୍ତେ ଆସ୍ତେ କହିଲା –

'ଆମେ ସମସ୍ତେ ହେଉଛୁ ଛୋଟ ଛୋଟ ଦଉଡିର କେରା । ଆମକୁ ମୋଟା ଦଉଡିରେ ପରିଣତ ହେବା ଦରକାର ।'

'ଆମେ ସମସ୍ତେ କେମିତି ଏକାଠି ହେବା ?'– ସାଇମନ୍ ଏ କଥା ପଚାରିଲା । ମଣ୍ଡାସ୍ୱାମୀ ତାର ଉତ୍ତର ଦେଇ କହିଲା ।

'ଆମେ ସମସ୍ତେ କିପରି ଏକ ହେବା ? - - - - - ଏହାର ଉତ୍ତର ହେଉଛି ଆମ ସମସ୍ତଙ୍କୁ ଏକାଠି ମିଳି ଏକ ହୋଇଯିବା ଉଚିତ ।'

'ତାର ଏ କଥା ପଚାରିବାର ଅର୍ଥ ହେଉଛି ଛୋଟ ଛୋଟ ଦଉଡି କେରା କ'ଣ ଆପେ ଆପେ ମୋଟା ଦଉଡିରେ ପରିଣତ ହୁଏ ?' – ବେଲାୟୁଧନ କହିଲା ।

ପଦ୍ମନାଭନ୍ ଧୀରେ ଧୀରେ କହିଲା –

'ସମସ୍ତଙ୍କୁ ଏକାଠିକରି ଏକ କରିବା ଦରକାର । ଏହାହିଁ ବର୍ତ୍ତମାନ ଦରକାର । ଦଉଡିର କେରା ସବୁ ବିଭିନ୍ନ ଆଡେ ବିକ୍ଷିପ୍ତ ହୋଇ ପଡିଛି । ସବୁଗୁଡିକ ଏକାଠି କରି ଦଉଡି ବଳିନେବା ଉଚିତ ।'

'ଦଉଡି ବନ୍ଧିବ କିଏ ?' –ଏ ପ୍ରଧାନ ପ୍ରଶ୍ନ ଥିଲା । ରକ୍କି ଏ ପ୍ରଶ୍ନ କରିଥିଲା ।

କେହି ଏ ପ୍ରଶ୍ନର ଉତ୍ତର ଦେଲେ ନାହିଁ । ସମସ୍ତେ ମୁଣ୍ଡ ତଳକୁ ନୁଆଁଇ ବସିଥିଲେ । ବିରାଡି ବେକରେ ଘଣ୍ଟି ବାନ୍ଧିବା ଦରକାର । କିନ୍ତୁ ଘଣ୍ଟି ବାନ୍ଧିବ କିଏ ?

ସମସ୍ତେ ମିଳିତ ହେବା ଦରକାର । କିନ୍ତୁ ମିଳିତ କରିବା କାର୍ଯ୍ୟଟି କରିବ କିଏ ?

ସେ ନୀରବତା ମଧ୍ୟରେ ଏ ପ୍ରଶ୍ନ ଉଠିଥିଲା । ଏବଂ ଦୋକାନର ଛିଦ୍ର ଭେଦ କରି ସେ ପ୍ରଶ୍ନ ବାହାରକୁ ଚାଲିଯାଇଥିଲା ।

'ଆମେ ସମସ୍ତେ ମିଳିତ ହେବା ଦରକାର । ଆମେ ସମସ୍ତେ ଐକ୍ୟବଦ୍ଧ ହେବା ଉଚିତ ।' ଏହା ଗୋଟିଏ ସ୍ଲୋଗାନରେ ପରିଣତ ହୋଇଗଲା । ଏହି କଥା ଆଖପାଖ କାରଖାନାରେ ଏକ ଆଲୋଚନାର ବିଷୟବସ୍ତୁ ହୋଇଗଲା । ଏହି ଆଲୋଚନା ଚା ଏବଂ ପାନଦୋକାନ ସବୁଠାରେ ଶୁଣାଗଲା । ଏହି ସ୍ୱର ମାଲିକ ଏବଂ ସାହେବ ମାଲିକ ମାନଙ୍କ କାନରେ ପ୍ରତିଧ୍ୱନିତ ହୋଇ ଉଠିଲା ।

କିଛିଦିନ ବିତିଗଲା । ଦିନେ ସକାଳେ ଏଣ୍ଟୋନି, ରକ୍କି, ବେଲାୟୁଧନ, ମତ୍ତାୟୀ, ଏବଂ ସାଇମନ୍ ବନ୍ଧୁ ଭାବିଚିନ୍ତି କଥାବାର୍ତ୍ତା କରି କାରଖାନାରେ ପହଞ୍ଚିଲେ । ତାଙ୍କର ଉଦ୍ଦେଶ୍ୟଥିଲା ସମସ୍ତଙ୍କୁ ଏକାଠି କରିବେ । କିନ୍ତୁ ଅଫିସର ବାରଣ୍ଡାରେ ସେମାନେ ଦେଖିଲେ କ'ଣ ? ସେଠାରେ ଅନେକ ଶ୍ରମିକ ବାରଣ୍ଡାରେ ଛିଡା ହୋଇଛନ୍ତି । ସେମାନେ ମଧ୍ୟ ସେ ଆଡକୁ ଗଲେ ।

ବାରଣ୍ଡାର ନୋଟିସ ବୋର୍ଡ ଉପରେ ଇଂରାଜୀରେ ଟାଇପ୍ କରାହୋଇଥିବା ଗୋଟିଏ ନୋଟିସ, ସେଥିରେ ଲଗାଯାଇଛି ।

ରକ୍କି ପଚାରିଲା– 'ଏ କ'ଣ ?'

'ହଁ ।'

'ସେ କାଗଜରେ କ'ଣ ଲେଖା ହୋଇଛି ?'

'ହଁ ।'

'ତମେମାନେ ଏଠାରେ ଭିଡ ଜମାଇଛ କାହିଁକି ?'– ମିସ୍ତ୍ରୀ ଗର୍ଜନ କରି କରି ଆସି ପହଞ୍ଚିଲା ।

'ସେ କାଗଜରେ କ'ଣ ଲେଖାହୋଇଛି, ମିସ୍ତ୍ରୀ ?'– ବେଲାୟୁଧନ ପଚାରିଲା ।

କାରଖାନା ବନ୍ଦ କରି ଦିଆଯିବା କଥା ସେଥିରେ ଲେଖାଯାଇଛି ।'

'ବର୍ତ୍ତମାନ କାରଖାନା କାହିଁକି ବନ୍ଦ କରି ଦିଆଯାଉଛି ?'– ମତ୍ତାୟୀ ପଚାରିଲା ।

'କାରଣ ଛୋଟ ମାଲିକଙ୍କର ବର୍ତ୍ତମାନ କ୍ଷତି ହେଉଛି ।'

'ଯେଉଁଠି ବଡ ମାଲିକଙ୍କର ଲାଭ ହେଉଥିଲା, ସେଇଠି ଛୋଟ ମାଲିକଙ୍କର କ୍ଷତି ହେବ କାହିଁକି ?'

'ଆରେ, କାହିଁକି ଏବଂ କିପରି ସେ କଥା ପଚାରିବା ବାଲା ତୁ କିଏ ?'

'ମିସ୍ତ୍ରୀକୁ ପଚାରିଲେ କଥାଟା ସ୍ପଷ୍ଟ ଜଣାପଡିବ ନାହିଁ, ମତ୍ତାୟୀ ! ଆସ, ଆମେ ସମସ୍ତେ ଛୋଟ ମାଲିକଙ୍କୁ ପଚାରି ନେବା'– ବେଲାୟୁଧନ୍ କହିଲା ।

'ହଁ ! ପଚାରିବା ପାଇଁ ଯାଅ ତ ? ସେତେବେଳେ ମିଳିଯିବ ! ଦେଖ, ଏଥିରେ ସ୍ପଷ୍ଟ ଭାବରେ ଲେଖା ହୋଇଛି ଯେ, କୌଣସି ଶ୍ରମିକ ଛୋଟ ମାଲିକଙ୍କୁ ଦେଖା କରିବା ସକାଶେ ଯାଇ ପାରିବ ନାହିଁ ।'

'ତା ହେଲେ ଆମେ କାହା ଆଗରେ ଆମର ଦୁଃଖ ବଖାଣିବୁ ?' - ବୁଢା ଶୋରୀ ଏକଥା ପଚାରିଲା ।
'ମାଲିକଙ୍କୁ କିଛି କହିବା ଦରକାର ନାହିଁ । ଯଦି କିଛି କହିବାର ଥାଏ ତା ହେଲେ ମୋତେ କୁହ ।'

'ବାଃ ! ଶୁଣ, ଏ କଥା କହିବାର ଅର୍ଥ କୁକୁଡା ପାଳନ କରି ଶିଆଳ ହାତରେ ଟେକିଦେବା !' - ରକ୍ଷି ଏ କଥା କହିଲା ।

ମିସ୍ତ୍ରୀ ଆଉଥରେ ରକ୍ଷିକୁ ଫେରି ଚାହିଁଲା ଏଣ୍ଟୋନି ଉଦାସ ହୋଇ ପଚାରିଲା –
'କ'ଣ ଏକଥା ନିଶ୍ଚିତ ଯେ କାରଖାନାରେ ତାଲା ବନ୍ଦ ହୋଇଯିବ ?'
'ଆଉ କରାଯିବ କ'ଣ ? କ'ଣ କ୍ଷତିରେ କାରଖାନା ଚଲାଯିବ ?'
'କ୍ଷତି, କ୍ଷତି ଚିତ୍କାର କଲେ ହେବ କ'ଣ ?'
'କ୍ଷତି ଆଉ ଲାଭ ବିଷୟରେ କିଏ କହି ପାରିବ ? ଆରେ, ତୁ କ'ଣ ଏ ସମ୍ପର୍କରେ କହିବାର ଉପଯୁକ୍ତ ଲୋକ ?'

'କହିବାର ଅଧିକାରୀ ତ - - - - - ', ରକ୍ଷି ଜବାବ ଦେଲା ।
'କହିବାର ଅଧିକାରୀ କ'ଣ ମାଲିକ ?'– ଏଣ୍ଟୋନି ମଝିରେ ଏ କଥା ପ୍ରଶ୍ନ କଲା ।
'ତା ନ ହେଲେ କ'ଣ ତୁ ?'
'ଯଦି ମାଲିକ ଦିନକୁ ରାତି ବୋଲି କହନ୍ତି ସେ କଥା ମାନିବାକୁ ଆମେ ପ୍ରସ୍ତୁତ ନାହୁଁ ମିସ୍ତ୍ରୀ ।'
'ତୁ ଯଦି ନ ମାନୁ ତା ହେଲେ ତୋ ବୋପା ଏ କଥା ମାନିବ । ଆରେ, ବୁଝିବା ଦରକାର, ବୁଝିବା !'
'ମୁଁ ନ ବୁଝିବା ଭଳି କ'ଣ କଥା କହିଲି, ମିସ୍ତ୍ରୀ ?'
'ସୂର୍ଯ୍ୟ ପ୍ରତ୍ୟେକଦିନ ଉଦୟ ହେବେ କି ନାହିଁ ସେ କଥା କିଏ ନିର୍ଣ୍ଣୟ କରେ,ତୁ କ'ଣ ସେ କଥା ଜାଣୁ?'
'କିଏ ?'
'ହଁ, ମୁଁ ସେଇଥିଲାଗି କହିଲି ଯେ, ବୁଝିବା ଦରକାର । ଏ ସବୁ ନିର୍ଣ୍ଣୟ କଲାବାଲା ହେଉଛନ୍ତି ଈଶ୍ୱର । ଠିକ୍ ସେମିତି କାରଖାନାରେ ଲାଭ ହେଉ ବା କ୍ଷତି ହେଉ, ନିର୍ଣ୍ଣୟ କରିବା ଦାୟିତ୍ୱ ମାଲିକଙ୍କର ।'

ସମସ୍ତେ ଚୁପ ରହିଲେ । ଏଣ୍ଟୋନିର ଚେହେରାରେ ଗୋଟିଏ ହାସ୍ୟ ରେଖା ଖେଳିଗଲା । ମିସ୍ତ୍ରୀ ନିଜର କିତାପଟର ଅନ୍ଦାଜ କରି ସମସ୍ତଙ୍କୁ ଦେଖି କହିଲା - 'ମାଲିକ କାହାକୁ କୁହାଯାଏ, ଜାଣ ? ପ୍ରକୃତରେ ସେ ହେଉଛନ୍ତି ଈଶ୍ୱର । ଈଶ୍ୱରଙ୍କ କହିବା ଅନୁସାରେ ତୁମେ ଚାଲିଲେ ତୁମର ମଙ୍ଗଳ ହେବ ।' ମିସ୍ତ୍ରୀ ପୁଣି ଖ୍ରୀଷ୍ଟାନ୍ ମିଶନାରୀ ମାନଙ୍କ ପରି ଉପଦେଶ ଦେବା ସ୍ୱରରେ କହିଲା--

'କାରଖାନାରେ କ୍ଷତି ହେଉଛି, ତେଣୁ ମାଲିକ କାରଖାନା ବନ୍ଦ କରିବାକୁ ଚାହୁଁଛନ୍ତି । ଯଦି ବନ୍ଦ ହୋଇଯାଏ ତାହେଲେ ତମମାନଙ୍କୁ ଭୋକ ଉପାସରେ ମରିବାକୁ ପଡିବ । ମାଲିକଙ୍କର ଚଳିଯିବା ପାଇଁ ଟଙ୍କା ପଇସା ଅଛି ।

କିନ୍ତୁ ତମମାନଙ୍କୁ ତମର ସ୍ତ୍ରୀ ପିଲାମାନଙ୍କ ସହ ଭୋକ ଶୋଷରେ ମରିବାକୁ ପଡିବ ।'

ଏ ସମ୍ପର୍କରେ କେହି କିଛି କହିବେ ବୋଲି ସେ ଆଶା କରିଥିଲା । ଏବଂ କିଛି ସମୟ ନୀରବ ରହିବା ପରେ ସେ ପୁଣି ତାର ଭାଷଣ ଆରମ୍ଭ କରି କହିଲା –

'ଯଦି ମାଲିକଙ୍କର କ୍ଷତିପୂରଣ କରି ଦିଆଯାଏ ତା ହେଲେ କାରଖାନା ବନ୍ଦ ହେବ ନାହିଁ । ଯଦି ତମେମାନେ ସମସ୍ତେ ପ୍ରତିଜ୍ଞାକର ଯେ କ୍ଷତିପୂରଣ କରିଦେବ, ତା ହେଲେ ମୁଁ ମାଲିକଙ୍କର ଗୋଡ ତଳେ ପଡି କାକୁତି ମିନତି କରି କାରଖାନା ବନ୍ଦ ନ କରିବାପାଇଁ ଅନୁରୋଧ କରିବି ।'

କିଛି ସମୟ ପ୍ରଶ୍ନକୁ ଅପେକ୍ଷା କଲାପରେ ପୁଣି ମିସ୍ତ୍ରୀ କହିଲା ଯେ- 'ତମେମାନେ କିଛି କହୁନ କାହିଁକି ?' ତମେମାନେ ତ କିଛି ପଚାରିଲ ନାହିଁ ଯେ, କ୍ଷତିପୂରଣ କେମିତି କରାଯାଇ ପାରିବ ?'

'ଏହାର ଉତ୍ତର ମଧ୍ୟ ନିଜେ କହିଦିଅ ନା ମିସ୍ତ୍ରୀ !'– ବେଲାୟୁଧନ କହିଲା ।

'ହଁ, ତା ହେଲେ ମୁଁ ନିଜେ କହୁଛି । ଟଙ୍କାରେ ଆଠଣା ହିସାବରେ ମଜୁରୀ କାଟିନିଆଯିବ । ମଜୁରୀ ଦେଇ ଦେଇ ତ ମାଲିକ ବରବାଦ ହୋଇଗଲେ ।'

'- - - - - ତୁମେମାନେ କିଛି କହୁନ କାହିଁକି ? କ'ଣ କମ ମଜୁରୀରେ କାମ କରିବା ସକାଶେ ତୁମେମାନେ ଚାହଁ ?'

ନିଜ ହସକୁ ଚାପି ଏଣ୍ଟୋନି କହିଲା –

'ତା ହେଲେ କାରଖାନା ବନ୍ଦ କରିଦିଅ, ମିସ୍ତ୍ରୀ !'

'ବନ୍ଦ କଲେ ମାଲିକଙ୍କର କିଛି କ୍ଷତି ହେବ ନାହିଁ ।

ତମ ମାନଙ୍କୁ ଭୋକ ଉପାସରେ ମରିବାକୁ ପଡିବ ।'

'ଆମେ ମରିବା ସକାଶେ ପ୍ରସ୍ତୁତ । କାରଖାନା ବନ୍ଦ କରିଦିଅ ।'

ମିସ୍ତ୍ରୀର ଚେହେରାର ରଙ୍ଗ ସମ୍ପୂର୍ଣ୍ଣ ବଦଳିଗଲା । ଏଣ୍ଟୋନି ବ୍ୟଙ୍ଗ ଭାବରେ ହସି କାରଖାନା ଭିତରକୁ ଚାଲିଗଲା । ସମସ୍ତେ ତା ପଛେ ପଛେ ଚାଲିଲେ ।

ସେ ଦିନ ଅଧରାତି ପର୍ଯ୍ୟନ୍ତ ଓର୍କୀ ଏବଂ ଏଲୀ ଉଭୟେ ଶୋଇ ନଥିଲେ । ସେମାନେ ଡିବି ଆଲୁଅ ସାମନାରେ ଗଭୀର ଦୁଃଖରେ ଚିନ୍ତାମଗ୍ନ ଅବସ୍ଥାରେ ବସିଥିଲେ । ଅନ୍ନା ମା ପାଖରେ ଜାକିଯୁକି ହୋଇ ଶୋଇଥିଲା । ମଜୁରୀ କ'ଣ କମାଇ ଦିଆଯିବ ? କାରଖାନା କ'ଣ ବନ୍ଦ ହୋଇଯିବ ? – ଏ ସବୁ ସେମାନଙ୍କର ଚିନ୍ତାର କାରଣ ଥିଲା । ଦୁଇଜଣଙ୍କ ଭିତରେ ତର୍କ ବିତର୍କ ହୋଇ କିଛି କଥାବାର୍ତ୍ତା ହେଲା । ଶେଷରେ ଏଲୀ କହିଲା –

'ମଜୁରୀ କମ କରିବା ସକାଶେ କାରଖାନା ବନ୍ଦ କଥା କେବଳ ଗୋଟିଏ ବାହାନା ହିସାବରେ ନିଆଯାଉଛି ମାତ୍ର ।'

'ହଁ ତା ବି ହୋଇପାରେ ।' ଗର୍କା ମାନିନେଲା । ପରେ କିଛି ସମୟ ଚିନ୍ତା କରି ସେ କହିଲା –

'ହୁଏତ ବଡ ମାଲିକ ଏ ସବୁ କଥା ଜାଣି ନଥାଇ ପାରନ୍ତି ।'

'ତମର କ'ଣ ହୋଇଯାଇଛି ? ଏଇଟା ହେଉଛି ବାପ ପୁଅ ଦୁଇଜଣଙ୍କ ମିଳିତ ଚାଲବାଜି ।'

'ଏମିତି କୁହନାହିଁ । ବଡ ମାଲିକ ଈଶ୍ୱର ସମାନ ଲୋକ ।'

'ଈଶ୍ୱର କିଏ ?' – ଏ କଥା ପଚାରିବା ମାତ୍ରେ ବୁଢ଼ା ଯୋଶେଫ୍ ସିଡି ପାର ହୋଇ ଆସି ପହଞ୍ଚିଲା । ବାରଣ୍ଡାରେ ବସି ସେ କହିଲା –

'ତମେମାନେ ଈଶ୍ୱରଙ୍କୁ ଜାଣିଛ, ନା ସଇତାନ୍ (ପିଶାଚ) କୁ ଜାଣିଛ ।'

'ଏମିତି କାହିଁକି କହୁଛ, ଯୋଶେଫ ଭାଇ ?'

'କାରଣ କଥାଟା ହିଁ ଏମିତି । ବଡ ମାଲିକଙ୍କୁ ତ ମୁଁ ପିଲାଦିନରୁ ଜାଣିଛି । ତାଙ୍କର ଚହଟ ଚିକଣ କଥା ଶୁଣିବା ମାତ୍ରେ ଯେ କେହି ଲୋକ ଭାବିବ ଯେ, ସେ ହେଉଛନ୍ତି ସ୍ୱୟଂ ଈଶ୍ୱରଙ୍କ ବାପା ! ଛାଡ, ପାନ ଗୁଆ ଟିକିଏ ଆଣ !'

ଏଲୀ ପାନଦାନୀ ଆଗରେ ଆଣି ଥୋଇଦେଲା । ପାନ ଖାଉ ଖାଉ ଯୋଶେଫ୍ ପୁଣି କହିଲା –

'ସେ ପ୍ରଥମେ କେମିତି କାରଖାନା ଖୋଲିଥିଲେ ତମେ କ'ଣ ସେ କଥା ଜାଣ ? ଯେଉଁଦିନଠାରୁ କାରଖାନା ଖୋଲିଲା, ସେହିଦିନଠାରୁ ମୁଁ ସେଠାରେ କାମ କରି ଆସୁଛି । ତାଙ୍କ ବାପାଙ୍କୁ ଥରେ ଲଟେରୀ ମିଳିଥିଲା । ପ୍ରାୟ ଚାରି ପାଞ୍ଚ ଶହ ଭଳି ଟଙ୍କା ହେବ । ତା ପରେ ସେ କାରଖାନା ଖୋଲିବାକୁ ଆସିଥିଲେ । ସେତେବେଳେ ଏ କାରଖାନାର ଛପର ଗୋରୁ ଗୁହାଳ ପରି ହୋଇଥିଲା । ଚାରିଆଡେ ସାମାନ୍ୟ କାନ୍ଥ ଥିଲା । କିନ୍ତୁ ଆଜିର ଅବସ୍ଥା ଯାହା, ବଗିଚାର ପହିଲା ଦିନ ନଡିଆ ତୋଳିବା ଆରମ୍ଭ କଲେ ମାସ ଶେଷରେ ଯାଇ ସେ କାମ ଶେଷ ହେଉଛି । ବଡ ବଙ୍ଗଳାର ଉପର ମହଲାରେ ରହୁଛନ୍ତି ଏବଂ କାରରେ ଯାତାୟତ କରୁଛନ୍ତି । ଏ ସବୁ ଆସିଲା କୁଆଡୁ ?'

ଏଲୀ ଏବଂ ଗର୍କା ଏକଥା ଶୁଣି ବଡ ବଡ ଆଖିରେ ଅନେଇ ରହିଥିଲେ । ଯୋଶେଫ୍ ତାର କଥା କହିଚାଲିଥିଲା ।

'ଏଣେ ଏବେ କହୁଛି, ଯେ କାରଖାନାରେ ତାର କ୍ଷତି ହେଉଛି ବୋଲି ! କାରଖାନା ବନ୍ଦ କରି ଦିଆଯିବ ! ମଜୁରି ଅଧା କମାଇ ଦିଆଯିବ !'

ଏବେ ଏଣ୍ଟୋନି ଏବଂ ରକ୍କି ସିଡି ଚଢି ଆସିଲେ । ଯୋଶେଫ୍ ପଚାରିଲା –

'କ'ଣ ମଭାୟ୍ରୀ ଏବଂ ସାଇମନ୍ ମୋର ସେଠିକୁ ଆସିଗଲେ ?'

'ହଁ ! ଆମେ ସମସ୍ତେ ଏକା ସାଙ୍ଗରେ ଆସିଥିଲୁ ।' ଏଣ୍ଟୋନି ଉତ୍ତର ଦେଲା ।

'ତା ହେଲେ ମୁଁ ଆସୁଛି' – କହି ଯୋଶେଫ୍ ଉଠିଲା । ସେ ପଚାରିଲା – 'କାରଖାନା ବନ୍ଦ କରିବା କଥା କେତେଦୂର ଗଲା ?'

'କାରଖାନା ବନ୍ଦ କରାଯିବ ନାହିଁ । ମଜୁରୀ କମ୍ କରିବା ସକାଶେ ସେ ଖାଲି ଗୋଟିଏ ବାହାନା ।'

'ମୁଁ ବି ସେଇଆ କହୁଥିଲି' – ବିଜୟିନୀର ଦର୍ପରେ ଏଲୀ କହିଲା ।

'ମଜୁରୀ କମ୍ କରିବା ସକାଶେ ତମେମାନେ କ'ଣ ସ୍ୱୀକୃତି ଦେଲ ?'

'ନା ! ଆମେମାନେ ସ୍ୱୀକୃତି ଦେବୁ ନାହିଁ ।'

'ଯଦି ମଜୁରୀ କମାଇ ଦିଆଯାଏ ତାହେଲେ ?'

'ଯଦି ସମସ୍ତେ ମିଳିମିଶି ଏକାଠି ହୋଇ ରହନ୍ତି ତାହେଲେ ମଜୁରୀ କମାଇ ଦିଆଯିବ ନାହିଁ !'– ଏଣ୍ଟୋନି ଏ କଥା ଦୃଢ ସ୍ୱରରେ କହିଲା ।

'କ'ଣ ସମସ୍ତେ ମିଳି ମିଶି ରହିବେ ?'

'ମିଳି ମିଶି ରହିବା ଉଚିତ । ସେମାନଙ୍କୁ ମେଳକରି ରଖିବା ଉଚିତ ।'– ଏଣ୍ଟୋନି ଏକଥା ଜୋର ଦେଇ କହିଲା ।

''ହଁ''– କହି ଯୋଶେଫ୍ ତା ଘରଆଡେ ଚାଲିଲା ।

## 6

ଏଲୀ କାନ୍ଦି କାନ୍ଦି ଗର୍କୀ ପାଖରେ ଲୋଟି ପଡିଲା । ପରେ ବାଘୁଣୀ ପରି ଗର୍ଜନ କରି ଉଠିଲା–

'କ'ଣ ମାରି ପକାଇଲା ? କ'ଣ ମୋର ପୁଅକୁ ମାରି ପକାଇଲା ?'

'ତୁମେ ଟିକିଏ ଶାନ୍ତ ରୁହ, ଏଲୀ ! ମୁଁ ଯାଇ ତାକୁ ନେଇ ଆସୁଛି'– ଗର୍କୀ ନିଜ ସ୍ତ୍ରୀକୁ ଶାସନ କରି ଏ କଥା କହିଲା ।

'ଆଣ ! ମୋର ଏଣ୍ଟୋନିକୁ ଏବଂ ରକ୍କିକୁ ଆଣ !'– କହି ସେ ପୁଣି ଗର୍ଜନ କରି ଉଠିଲା ।

'ବାପା !' - ବୋଲି ଅନ୍ନା ଡ଼ାକି ରାହା ଧରି କାନ୍ଦୁଥିଲା ।

'ଝିଅ, ମୁଁ ଯାଇ ତାକି ଆଣୁଛି, ତୁ ଶାନ୍ତ ହୋଇ ଯା ।'

'ଆଣ, ମୋ ପୁଅ ମାନଙ୍କୁ ଆଣ । ତୁମେ ଯାଇ ତୁମର ଈଶ୍ୱରକୁ (ମାଲିକକୁ) କୁହ, ଯେ ପୋଲିସ ବାଲା ମୋ ପୁଅକୁ ବାନ୍ଧି ନେଇଗଲେ ।'

ଗର୍କୀ ସିଡିରୁ ଓହ୍ଲେଇ ଗଳିରେ ଚାଲିବାକୁ ଆରମ୍ଭ କଲା ।

'ମୁଁ ବି - - - - ମୁଁ ବି ଯିବି'– କହି ଏଲୀ ମଧ୍ୟ ଗର୍କୀ ପଛରେ ଦଉଡିବାକୁ ଆରମ୍ଭ କଲା ।

ସନ୍ଧ୍ୟାବେଳ ଗଡି ଯାଇଛି । ବରାଦୁ ସାହେବଙ୍କର ବଙ୍ଗଳାର ଫାଟକ ସାମନାରେ ଗୋଟିଏ ଚୌକୀଦାର ଛିଡାହୋଇ ରହିଥିଲା । ଏହା ପୂର୍ବରୁ ସେଠାରେ କେବେ ଏମିତି ତ ନ ଥିଲା । ଆଗେ ଏଲୀ ତା ପଛକୁ ଗର୍କୀ ଏଭଳି ଭାବରେ ଆଗପଛ ହୋଇ ଚାଲୁଥିଲେ । ଦୁହେଁ ଭିତରକୁ ଯିବାକୁ ଉଦ୍ୟମ କରୁଥିବା ସମୟରେ ଚୌକୀଦାର ଗମ୍ଭୀର ଭାବରେ କହିଲା –

'ଖବରଦାର ! ଭିତରକୁ ଯାଅ ନାହିଁ !'

ଏଲୀ ଆଗକୁ ବଢାଇଥିବା ପାଦ ପଛକୁ ଫେରାଇଲା ନାହିଁ । ସେ ପଚାରିଲା –

'ଯିବାକୁ ଦେବ ନାହିଁ ବୋଲି ହୁକୁମ ଦେଇଛି କିଏ ?'

'ବର୍ତ୍ତମାନ ଏ ମୋର ଆଦେଶ । ସେଠାରେ ଅଟକିଯାଅ !'

'ଯଦି ଭିତରକୁ ଯାଏ ତା ହେଲେ ? - - - - '

ଗର୍କା ଗମ୍ଭୀର ଭାବରେ ପଚାରିଲା ।

'ଯାଅ ଦେଖ ? - - - - ମୁଁ ଭିତରକୁ ଯିବାକୁ ଦେବିନାହିଁ ।'– ଚୌକୀଦାର ନ ଡରି ଏ କଥା କହିଲା ।

'ମୋର ନାମ ହେଉଛି ଗର୍କା-ବୁଝିଲୁ- ଗର୍କା ।'

'ତୁ ଯଦି ଗର୍କା ହୋଇଥାଉ ତା ହେଲେ ରାସ୍ତାର ଅନ୍ୟପାଖକୁ ଚାଲିଯାଆ !' - ଚୌକୀଦାର ଘୃଣାର ସହିତ ଏ କଥା କହିଲା ।

'ମାଲିକଙ୍କୁ ଈଶ୍ୱରଙ୍କ ପରି ମାନିବା ଲୋକ ହେଉଛି ମୁଁ ।'

'ମାଲିକଙ୍କୁ ଈଶ୍ୱରଙ୍କ ପରି ମାନିବା କ'ଣ ତୋ ପାଇଁ ଯଥେଷ୍ଟ ? ତୋ ପୁଅ ମାନଙ୍କର ମଧ୍ୟ ଏ କଥା ମାନିବା ଉଚିତ୍ ନୁହେଁ ?'

'ଈଶ୍ୱରଙ୍କୁ ମଧ୍ୟ ମାନିବା ଉଚିତ ଯେ ଏ ହେଉଛି ଗରୀବ । ନୁହେଁ ?'– ଏଲୀ ଗଦ୍‌ଗଦ୍ ହୋଇ ଏକଥା ପଚାରିଲା ।

'ତୁ ଚୁପ ରହ ପାଗଳୀ ! ମୁଁ ନିଜେ ବୁଝାଇବି ।' - ଏ କଥା କହି ଗର୍କା ଏଲୀକୁ ଆକଟ କଲା । ପୁଣି ସେ ଚୌକୀଦାରକୁ କହିଲା –

'ମୋ ମାଲିକଙ୍କୁ ଦେଖାକରି ମୋ ଦୁଃଖର କାହାଣୀ କହିବାର ଅଛି । ତୁମେ ଯାଇ କହିଦିଅ, ଯେ ଗର୍କା ଏବଂ ଏଲୀ ଆପଣଙ୍କର ପ୍ରତୀକ୍ଷାରେ ବାହାରେ ଛିଡା ହୋଇଛନ୍ତି ।'

'ଯା, ନିଜ ରାସ୍ତା ଦେଖ !'– ଚୌକୀଦାର ଜୋରରେ ତାକୁ ନିର୍ଦ୍ଦେଶ ଦେଲା ।

ଗର୍କା ଏ ସବୁଥିରେ ଆଦୌ ବିଶ୍ୱାସ କରିପାରୁ ନଥିଲା । ସେ ମାଲିକଙ୍କୁ ଈଶ୍ୱରଙ୍କ ସମାନ ମାନୁଥିଲା । ତଥାପି ସେ ତାଙ୍କୁ ଦେଖାକରି ନିଜ ଦୁଃଖର କାହାଣୀ କହିପାରିଲା ନାହିଁ । ସେ ବ୍ୟାକୁଳ ହୋଇ କହିଲା –

'ମୋର ଏଣ୍ଟୋନି ଏବଂ ରକ୍ସିକୁ ପୋଲିସବାଲା ବାନ୍ଧି ନେଇଗଲେ । ମାଲିକଙ୍କୁ ଦେଖାକରି ନିଜ କଥା କହିବାକୁ ଆମେ ଆସିଥିଲୁଁ । କ'ଣ ଦୟାକରି ଆମକୁ ଭିତରକୁ ଯିବାକୁ ଅନୁମତି ଦେବ ?'

'ଏଇଠୁ ତମେ ଶୀଘ୍ର ଘୁଞ୍ଚିଯାଅ' – ଚୌକୀଦାର ଗମ୍ଭୀର ହୋଇ କହିଲା ।

'ଆମେ ଆମର ପୁଅମାନଙ୍କୁ ଦେଖା ନକରି ଏଠାରୁ ଯିବୁ ନାହିଁ' – ଏଲୀ ଏକଥା ଦୃଢ ସ୍ୱରରେ କହିଲା ।

'ତୁ ଏଇଠି ଛିଡା ହୋଇଥା ! ମୁଁ ନିଜେ ଭିତରକୁ ଯାଇ ଦେଖି ନେଉଛି'– ଗର୍କା ଏଲୀକୁ ପଛକୁ ପେଲି ଦେଇ ନିଜେ ଆଗକୁ ବଢିଲା ।

ଚୌକୀଦାରର ବଜ୍ରମୁଷ୍ଟି ଗର୍କୀର ଗଳା ଉପରେ ବସିଗଲା । ଚୌକୀଦାର ପ୍ରଥମେ ଧକ୍କା ଦେଲା ପରେ ତାକୁ ଗୋଇଠା ମାରିଲା । ଏଥିରେ ଗର୍କୀ ସଡକ ପର୍ଯ୍ୟନ୍ତ ପହଞ୍ଚି ଗଲା । ସେ ମାଡ ଖାଇ ତଳୁ ଉଠିଲା ସମୟରେ ଉଠି ନପାରି ପୁଣି ବସି ପଡିଲା ।

'ମାର ! ମୋତେ ବି ମାରି ପକାଅ !'– ଏଲୀ ଏକଥା କହି ଫାଟକ ସେ ପାଖକୁ ଚାଲିଗଲା ।

ଚୌକୀଦାରର ଲୌହମୁଷ୍ଟିରେ ଏଲୀର ହାତ ମଧ୍ୟ ପେଷି ହୋଇଗଲା । ଗୋଟିଏ ଫୋପଡା, ବାସ୍, ଏଲୀ ମଧ୍ୟ ସଡକ ପର୍ଯ୍ୟନ୍ତ ପହଞ୍ଚି ତଳେ ଚିତ୍ ହୋଇ ପଡିଗଲା !

ବାଟରୁ ଲୋକ ଏତେବେଳକୁ ଚାରିଆଡେ ଆସି ଜୁଟିଗଲେଣି । କିନ୍ତୁ କେହି ପାଖକୁ ଆସିଲେ ନାହିଁ କିମ୍ବା କିଛି କହିଲେ ନାହିଁ ।

ଗର୍କୀ ଝାଡିଝୁଡି ହୋଇ ଉଠିବସିଲା । ପୁଣି ସେ ସାହାଯ୍ୟକରି ଏଲୀକୁ ଉଠାଇଲା ।

'ହେ ଯୀଶୁ ।'

ଦର୍ଶକମାନେ ଲମ୍ବା ଦୀର୍ଘଶ୍ୱାସ ନେଲେ । ଏ ସମୟରେ ଚୌକୀଦାର ଭାଷଣ ଦେବାକୁ ଆରମ୍ଭ କଲା–

'ପୁଅମାନେ କାରଖାନାରେ ପଶି ମିସ୍ତ୍ରୀ ଏବଂ ଅଫିସରମାନଙ୍କୁ ବାଡେଇଲେ । ବର୍ତ୍ତମାନ ମାଲିକକୁ ମାରିବା ପାଇଁ ବାପ ମା ଏକାଠି ହୋଇ ଆସିଛନ୍ତି ।' ସମସ୍ତେ ଶୁଣିଲେ ! କେହି କିଛି କହିଲେ ନାହିଁ ।

ଗର୍କୀ ବଙ୍ଗଳାର ଉପର ମହଲା ଉପରେ ଦୂରଦୃଷ୍ଟି ନିକ୍ଷେପ କଲା । ସେଠାରେ ଝରକା ପାଖରେ କିଏ ଛିଡା ହୋଇ ଘମ୍ପା ଆଡକୁ ଅନେଇଥିଲା । ଗର୍କୀ ଚିତ୍କାର କରି ପଚାରିଲା--

'ସେଠାରେ କିଏ ଛିଡା ହୋଇଛି ? କ'ଣ ମାଲିକ ?' ତାର ସ୍ୱରରେ ରାଗ, ଅବଜ୍ଞା, ଏବଂ ଦୁଃଖ ସବୁ ମିଶି ରହିଥିଲା ।

ଏଲୀ ଗର୍କୀର ପ୍ରଶ୍ନର ଉତ୍ତର ଦେଲା–

'ତମର 'ଈଶ୍ୱର' ! ହଁ, ଈଶ୍ୱର ହିଁ ସେଠାରେ ଛିଡା ହୁଅନ୍ତି ।'

ଆସ, ଆମେ ଯିବା, - ଗର୍କୀ ଏଲୀର ହାତ ଧରି ଚାଲିବାକୁ ଆରମ୍ଭ କଲା ।

'ଯା ! ଯାଇ ପୋଲିସର ହାବୁଡରେ ପଡ !'–

ଚୌକୀଦାର ବ୍ୟଙ୍ଗ ହସ ହସି ଏ କଥା କହିଲା ।

ସେ ସମୟରେ କୋଲୁଣୀ, ଯେ ସେ ପର୍ଯ୍ୟନ୍ତ ସମସ୍ତ ଜିନିଷ ନୀରବରେ ଦେଖୁଥିଲା, ଗର୍କୀକୁ ପଚାରିଲା –

'ବର୍ତ୍ତମାନ ତୁମେ କେଉଁଠିକି ଯିବାକୁ ଚାହୁଁଛ ।'

'ଏଣ୍ଟୋନି ଏବଂ ଅନ୍ୟମାନଙ୍କୁ ପୁଲିସବାଲା ଥାନାକୁ ବାନ୍ଧି ନେଇଯାଇଛନ୍ତି ।'

'ତମର ସେଠାକୁ ଯିବା ଉଚିତ ।'

'ସେଠାକୁ ଗଲେ କ'ଣ ହେବାର ଅଛି ?'

'ଗଲେ ? - - - ସେଠାକୁ ଗଲେ ଫେରି ଆସିବାର ସମ୍ଭାବନା ନାହିଁ । - - - - ସେଠାରେ ହତ୍ୟାକାଣ୍ଡ ଚାଲିଛି । ରହି ରହି ମାଡ ମାରୁଛନ୍ତି । ଲୁହା ପୋଲ ପାଖ ପହଞ୍ଚିବା ସଙ୍ଗେ ସଙ୍ଗେ ଦୂରରୁ ପାଟିତୁଣ୍ଡ ଶୁଣାଯିବ ।'

'ସେମାନେ କ'ଣ ମାରି ପକାଇଛନ୍ତି ? ମୋର ନାବାଳକ ଛୁଆମାନଙ୍କୁ କ'ଣ ସେମାନେ ମାରି ପକାଇଛନ୍ତି ?'-- ଏଲୀ ଏ କଥା କହି ପାଗଳୀଙ୍କ ପରି ଦୌଡିବାକୁ ଆରମ୍ଭ କଲା । ଗର୍କୀ ମଧ୍ୟ ପଛେ ପଛେ ଦୌଡିଲା ।

ଥାନା ପାଖ ରାସ୍ତାରେ ଜଣେ ଲୋକ ଛିଡା ହୋଇ ଚିତ୍କାର କରି କହିଲା –

'ଗର୍କୀ ଭାଇ ସେଠାକୁ ଯାଅ ନାହିଁ । ଭୁଲରେ ସୁଦ୍ଧା ଯାଅ ନାହିଁ ।'

ଗର୍କୀ ଏବଂ ଏଲୀ ଏକଥା ଆଦୌ ଶୁଣିନାହାନ୍ତି । ବର୍ତ୍ତମାନ ସେମାନଙ୍କ କାନ ପାଖରେ କୌଣସି ଶବ୍ଦ ପହଞ୍ଚି ପାରୁନାହିଁ ।

'ମାରି ପକାଇଲେ ? ମୋର ନାବାଳକ ପିଲାମାନଙ୍କୁ ମାରିପକାଇଲେ ?'– ଏଲୀ ଏ କଥା କହି ଥାନାର ଫାଟକ ଖୋଲି ଭିତରକୁ ପଶିଗଲା ।

'ମାର ! ମୋତେ ବି ମାରି ପକାଅ !' - ଗର୍କୀ ଫାଟକ ଭିତରକୁ ଚାଲି ଆସିଲା ।

ତିନିଜଣ ସିପାହୀ ସେମାନଙ୍କୁ ଘେରିଗଲେ । ପୋଲିସଷ୍ଟେସନ ଭିତରୁ ଗୋଟିଏ ନିର୍ଦ୍ଦେଶ ଶୁଣାଗଲା -

'ସେମାନଙ୍କୁ ବାନ୍ଧିକରି ନାଳରେ ପକାଇଦିଅ ?'

ଏଲୀ ଏବଂ ଗର୍କୀକୁ ଉପରକୁ ଉଠାଇ ନେଇ ଫାଟକର ସେପଟେ ଏମିତି ଭାବରେ ଫୋପାଡି ଦିଆଗଲା ଯେ ସେମାନେ ଷ୍ଟେସନ ପାଖ ସାମନାର ନାଳରେ ପଡିଗଲେ । ନାଳ ସେ ପାଖରେ ଯାଉଥିବା ଲୋକ ଏ ଦୃଶ୍ୟ ଦେଖିଲେ । କିନ୍ତୁ କେହି କିଛି କହିଲେ ନାହିଁ । କାହାରି କହିବାର ସାହସ ମଧ୍ୟ ନଥିଲା ।

ଏଲୀ ଗର୍କୀର ହାତଧରି ତାକୁ ଉଠାଇଲା । ତାର ଗୋଟିଏ ଗୋଡ ଭାଙ୍ଗି ଯାଇଥିଲା । ଏଲୀ ତାକୁ ସାହାଯ୍ୟ କଲା । ସେ ଛୋଟେଇ ଛୋଟେଇ ଚାଲିଗଲା ।

ଏଲୀର ଆଉ କାନ୍ଦିବାର ଶକ୍ତି ନଥିଲା । ତଥାପି କୌଣସି ନା କୌଣସି ପ୍ରକାରରେ ସେ ଗର୍କୀକୁ ସମ୍ଭାଳି ନେଇ ସାମନା ଗଳିରେ ଯାଇ ପହଞ୍ଚିଲା । ବାରଣ୍ଡାରେ କିରାସିନୀର ଯେଉଁ ଡିବି ଜଳୁଥିଲା ତାରି ସାମନାରେ ଅନ୍ନା ମୋଡି ମାଡି ହୋଇ ଶୋଇ ଯାଇଥିଲା । ଯୋଶେଫ୍ ଅଗଣାରେ ଛିଡା ହୋଇ ଆକାଶର ତାରାକୁ ଅନାଇ ରହିଥିଲା ।

ବେଲାୟୁ ଧନର ମା ଖାଉ ଖାଉ ଅଇଁଠା ହାତରେ ଆସି ପହଞ୍ଚିଲା ।

ଫାଟକ ପାଖ ପହଞ୍ଚିବାରୁ ଏଲୀ ପାଟିକରି ଉଠିଲା– 'ନିଅ, ଧରିନିଅ !'

ସମସ୍ତେ ଦୌଡିକରି ଆସିଲେ । ସମସ୍ତେ ଏକ ସ୍ୱରରେ ଚିତ୍କାର କଲେ –

''କ'ଣ ମାରି ପକାଇଲା ?''

'ବାପା !' - କହି ଦୌଡିଯାଇ ଅନ୍ନା ଗର୍କୀକୁ କୁଣ୍ଢାଇ ପକାଇଲା ।

ସମସ୍ତେ କାନ୍ଦିବାକୁ ଆରମ୍ଭ କଲେ । ଗର୍କୀକୁ ଫାଟକ ପାଖରୁ ଉଠାଇନେଇ ବାରଣ୍ଡାରେ ଶୁଆଇ ଦିଆଗଲା ।

'କ'ଣ ମୋ ପୁଅକୁ ବି ସେମାନେ ମାରି ପକାଇଲେ ?' ଯୋଶେଫ୍ ଏ କଥା ପଚାରିଲା ।

'କ'ଣ ମୋ ପୁଅକୁ ସେମାନେ ମାରି ପକାଇଲେ ?' -ହାୟରେ କପାଳ, ମୋର ତ ଗୋଟିଏ ବୋଲି ପୁଅ'– ଏକଥା କହି ବେଲାୟୁଧନ ମା ଛାତିରେ ହାତ ପିଟି କାନ୍ଦିବାକୁ ଲାଗିଲା ।

କେହି କିଛି କହିଲେ ନାହିଁ । ଏଲୀ ଏବଂ ଅନ୍ନା ବେହୋସ ହୋଇ ଆଖି ବନ୍ଦକରି ଗର୍କୀ ପାଖରେ ଆଉଜି ହୋଇ ପଡ଼ିଥିଲେ ।

ଇତି ମଧ୍ୟରେ ଛ ସାତ ଜଣ ସିଡ଼ିରେ ଚଢ଼ି ଆସି ପହଞ୍ଚିଲେ । ସମସ୍ତେ ଆଶ୍ଚର୍ଯ୍ୟ ହୋଇ ସେମାନଙ୍କୁ ଅନାଇଲେ । ଏ ସମସ୍ତ ଥିଲେ– ଅଚ୍ଚୁତନ, ଶଙ୍କୁ, ପଦ୍ମନାଭନ, ଯୋଶେଫ୍ ଏବଂ ପପନ । ସେମାନଙ୍କୁ ଛାଡ଼ି ଅନ୍ୟ ଜଣେ ଲୋକ ଥିଲେ । ଦୁବଳା ପତଳା ଲୋକ । ସେ ସମସ୍ତଙ୍କ ପଛରେ ଛିଡ଼ା ହୋଇଥିଲେ ।

'ମୋ ପୁଅ କେଉଁଠି ଅଛି ?'– ବେଲାୟୁଧନର ମା କାନ୍ଦି କାନ୍ଦି ପଚାରିଲା ।

'ମୋ ପୁଅ ମରିଗଲା ନା ସେ ବଞ୍ଚିଛି ?'– ଯୋଶେଫ୍ ଏ କଥା ପଚାରିଲା ।

ଅନ୍ନା ଗର୍କୀ ପାଖରୁ ଉଠି, କାନ୍ଦିକାନ୍ଦି ରାହାଧରି ପଚାରିଲା –

'ମୋର ଦୁଇଜଣ ଭାଇ ଆସିବେ କି ନାହିଁ ?'

'ସମସ୍ତେ ଆସିବେ'–ବୋଲି ପଦ୍ମନାଭନ୍ ଜବାବ ଦେଲା । ସେ ପୁଣି କହିଲା– ସେମାନଙ୍କ ଦୁଇ ଜଣଙ୍କ ଉପରେ ମୋକଦ୍ଦମା ଚଲାଯିବ ନାହିଁ ବୋଲି ସେ ଶୁଣିବାକୁ ପାଇଛି ।

'କ'ଣ ସେମାନଙ୍କୁ ପିଟା ଯାଇଛି ।'– ବୋଲି ଯୋଶେଫ୍ ପଚାରିଲା ।

ଏ ପ୍ରଶ୍ନର ଉତ୍ତର କେହି ଦେଲେ ନାହିଁ । ଅନ୍ନା ପୁଣି କାନ୍ଦ ଚାପା ସ୍ୱରରେ ପଚାରିଲା –

'କ'ଣ ମୋ ଭାଇମାନଙ୍କୁ ବି ମାଡ ଦିଆଯାଇଛି ।'

ସେ ପତଳା ଲୋକଟି ଆଗେଇ ଆସିଲା । ସେ ଅନ୍ନାର ପିଠି ଉପରେ ହାତ ଥାପୁଡାଇ କହିଲା–

'ସାନ ଭଉଣୀ ମୋର, କାନ୍ଦନା ! ସେମାନେ କାଲି ଆସି ଯିବେ ।'

'ସେ କିଏ ?' - ବୋଲି ଯୋଶେଫ୍ ପଦ୍ମନାଭକୁ ପଚାରିଲା ।

'ସେ ଆମର ସାହାଯ୍ୟ କରିବା ସକାଶେ ଆସିଛନ୍ତି ।' ଯୋଶେଫ୍ କହିଲା– 'ସେ ପଢାଶୁଣା ଲୋକ । ଗରୀବ ଲୋକଙ୍କୁ ସାହାଯ୍ୟ କରିବା ସକାଶେ ଆସିଛନ୍ତି ।'

ପତଳା ଲୋକଟି ଗର୍କୀ ପାଖରେ ବସି ପଡିଲା । ସେ ଏଲୀକୁ ପଚାରିଲା–

'କ'ଣ ଗୋଡ ଭାଙ୍ଗିଯାଇଛି ?'

'ହଁ ' –ଏଲୀର କେବଳ 'ହଁ' କହିବାର ଶକ୍ତି ଥିଲା ।

'ବର୍ତ୍ତମାନ ଏହାକୁ ଏଠାରୁ ଡାକ୍ତରଖାନା ନେଇଯିବା ଉଚିତ ।'

'ଏଥିପାଇଁ ଗୋଟିଏ ଖଟିଆ ଦରକାର'– ବୋଲି ପଦ୍ମନାଭନ୍ ଯୋଶେଫ୍‌କୁ କହିଲା ।

ଯୋଶେଫ୍ ଏବଂ ପପନ୍ ଦୁହେଁ ଯୋଶେଫ୍ ଘରକୁ ଯାଇ ନଡିଆକତା ଦଉଡିରେ ବୁଣା ହୋଇଥିବା ଗୋଟିଏ ଖଟିଆ ଧରି ଆସିଲେ । ସମସ୍ତେ ମିଳିମିଶି ଗର୍କୀକୁ ଖଟିଆ ଉପରେ ଶୁଆଇ ଦେଲେ । ଶଙ୍କୁ, ପପନ, ଯୋଶେଫ୍, ଏବଂ ଅଚ୍ଚୁତନ, ଖଟିଆ ବୋହି ଚାଲିବାକୁ ଆରମ୍ଭ କଲେ । ସେମାନେ ସିଡିରୁ ଓହ୍ଲାଇ ଗଳୀର ରାସ୍ତାରେ ଗଲେ ।

ନୀରବ ନିବିଡ ଅନ୍ଧକାର । କୁଆଡୁ ଦମକାଏ ଗରମ ପବନ ଆସିଗଲା । ସ୍ପନ୍ଦନ କମ୍ପନ ତ ହୋଇଗଲା । କିନ୍ତୁ ଅନ୍ଧକାର ତ ଦୂର ହେଲାନାହିଁ ।

ଏକ ନୂଆ ଜାଗୃତି ! ଏକ ନୂଆ ଚେତନା ! ଏକ ନୂତନ ଆଶା ।

ଏ କେମିତି ସମ୍ଭବ ହେଲା, ଏ କଥା କାହାରିକି ଜଣା ନଥିଲା । କାରଖାନାର ସାମନାରେ ଏହି ସ୍ପନ୍ଦନ ଦେଖାଗଲା । ଚା ଦୋକାନ, ଛକ ଯାଗା ମାନଙ୍କରେ ଏହି ନୂତନ ଚେତନା, ନୂତନ ସ୍ପନ୍ଦନ, ଏକ ଆଲୋଚନାର ବିଷୟବସ୍ତୁ ହୋଇ ପଡିଲା । ଶ୍ରମିକମାନଙ୍କର ଘର ଗୁଡ଼ିକରେ ଏହି ସ୍ପନ୍ଦନ, ଏହି ଚେତନା, ଏହି ଉଲ୍ଲାସର ପ୍ରତିଧ୍ୱନି ହେବାକୁ ଲାଗିଲା ।

'ଆଜି ସେ, ଆସନ୍ତା କାଲି ଆମେ,' ସମସ୍ତଙ୍କ ମୁଖରେ ନିମ୍ନ ସ୍ୱରରେ ଏ ଆଲୋଚନା ଚାଲିଥିଲା ।

ଏଣ୍ଟୋନି, ରକ୍ସି, ମତ୍ତାୟୀ ଏବଂ ସାଇମନ୍ ଆଦି ସମସ୍ତେ କାଶି, ଗଳା ସଫା, ଏବଂ ଶବ୍ଦକରି ହାଜତରୁ ବାହାରକୁ ଆସିଲେ ।

ବେଲାୟୁଧନ୍‌ର ମୃତ ଶରୀର ପୋଷ୍ଟମର୍ଟମ ପରେ ତାର ଜ୍ଞାତି କୁଟୁମ୍ବମାନଙ୍କ ହାତରେ ଛାଡି ଦିଆଗଲା । ବେଲାୟୁଧନ ଆତ୍ମହତ୍ୟା କରିଛି ବୋଲି ଡାକ୍ତର 'ପ୍ରମାଣ ପତ୍ର' ମଧ୍ୟ ଦେଲେ ।

ବେଲାୟୁଧନର ଭଉଣୀ ତାର ଭାଇର ମୃତ ଶରୀର ଗ୍ରହଣ କଲା । କାରଣ ବେଲାୟୁଧନ୍‌ର ମା ତାର ମୃତ୍ୟୁଖବର ଶୁଣି ବେହୋସ ହୋଇ ଯାଇଥିଲା ।

'ପୋଲିସ ସେମାନଙ୍କୁ ପିଟିପଟି ମାରି ପକାଇଲା', ବୋଲି ସମସ୍ତେ ଫୁସଫୁସ ଆଲୋଚନା କରୁଥିଲେ ।

କିନ୍ତୁ ଏହା ଆତ୍ମହତ୍ୟା ବୋଲି ଡାକ୍ତରଙ୍କର ପ୍ରମାଣପତ୍ର ମଧ୍ୟ ଥିଲା । କିନ୍ତୁ ଅପାଠୁଆ ଗାଉଁଲୀ ଲୋକଙ୍କ କଥାକୁ ବିଶ୍ୱାସ କରିବ ବା କିଏ ?

ତଥାପି, ଏଇ ମାଡ ଦେଇ ମାରିବା କଥା, ନିବିଡ଼ ଅନ୍ଧକାରରେ ଦମକାଏ ଗରମ ପବନ ପରି, ଚାରିଆଡେ ବ୍ୟାପିଗଲା । ଏବଂ ସେଇ ପବନ ପଛରେ ଗୋଟିଏ ପ୍ରଶ୍ନ ଉଠିଲା— 'ଆଜି ତାହା ଉପରେ ଯାହା ହୋଇଛି, ଆସନ୍ତାକାଲି ଆମ ଉପରେ ତାହା ହେବ ।'

ସମୟ ଅପରାହ୍ନ । ପାଞ୍ଚଟା ବାଜିଛି । କାରଖାନାର ସାଇରନ୍ ବାଜି ଉଠିଲା । କାରଖାନାର ଗେଟକରୁ ଜନ ସମୁଦ୍ରର ଛୋଟ ନଦୀ ବିଭିନ୍ନ ଦିଗକୁ ବୋହିବାକୁ ଲାଗିଲା । କୋଟରଗତ ଚକ୍ଷୁ, ଅସ୍ଥି ପଞ୍ଜରାର ସମାହାର ଏ ଜନସମୁଦ୍ର ।

କିନ୍ତୁ ସେ ଦିନ ସେହି କୋଟରଗତ ଚକ୍ଷୁରେ ଅଗ୍ନିର ସ୍ଫୁଲିଙ୍ଗ ଉଦ୍‌ଗୀରଣ ହେଉଥିଲା । ପଶିଯାଇଥିବା ଚିବୁକ, ଅସ୍ଥି ପଞ୍ଜରାର ଶରୀରରେ ଉଲ୍ଲାସ ଦେଖା ଯାଇଥିଲା ।

କାରଖାନାର ଫାଟକରୁ ବୋହିଯାଉଥିବା ଜନ ସମୁଦ୍ରର ଛୋଟ ଛୋଟ ନଦୀମାନେ ନିଜ ଲକ୍ଷ୍ୟ ଆଡକୁ ଧାଇଁ ଯାଉଥିଲେ । ସନ୍ଧ୍ୟା ଆଗରୁ ବେଲାୟୁଧନର ଘରର ଚତୁର୍ଦ୍ଦିଗରେ ଏହି ବିରାଟ ଜନ ସମୁଦ୍ର ଦେଖାଗଲା । ଘରର ବାରଣ୍ଡାରେ ବେଲାୟୁଧନର ଜଡ ଶରୀର ଆପାଦମସ୍ତକ ଚାଦରରେ ଘୋଡେଇ ରଖାଯାଇଥିଲା । ସେହି ଶବ ପାଖରେ, ଏଲୀର କୋଳ ଉପରେ ମୁଣ୍ଡରଖି ବେଲାୟୁଧନର ମା ଆଖି ବନ୍ଦକରି ପଡି ରହିଥିଲା ।

ଅଗଣାରେ ଥିବା ବେଞ୍ଚ ଉପରେ ଚଢି ସେଇ ଦୁବଳା ପତଳା ଲୋକଟି ମାଇକ୍ରୋଫୋନ୍ ଜରିଆରେ ଜୋରରେ କହିବାକୁ ଆରମ୍ଭ କଲା–

"ବନ୍ଧୁଗଣ ! (କେମ୍‌ରେଡ୍‌ମାନେ !) ଶ୍ରମିକ ମାନଙ୍କର ଅଧିକାର ଏବଂ ସ୍ୱାତନ୍ତ୍ର୍ୟ ବଜାୟ ରଖିବା ପାଇଁ ଆମର ଯେଉଁ ସାଥୀ (କମରେଡ୍) ବେଲାୟୁଧନ୍ ଶହୀଦ୍ ହୋଇଗଲେ, ବର୍ତ୍ତମାନ ତାଙ୍କର ଶବ ଶୋଭାଯାତ୍ରା ଶ୍ମଶାନକୁ ଯିବା ଆରମ୍ଭ ହେବ ।"

ଗଳୀରେ ଯେଉଁ ଲୋକମାନଙ୍କର ଭିଡ ଥିଲା ସେଥିମଧ୍ୟରୁ ଗୋଟିଏ ଲୋକ ତା ପାଖରେ ଛିଡା ହୋଇଥିବା ଅନ୍ୟ ଲୋକକୁ ପଚାରିଲା –

'ଏମାନେ କାହିଁକି 'ସାଥୀ' ବୋଲି କହୁଛନ୍ତି ? କାରଣ କଥାଟା ହିଁ ଏଇଆ । କହିବାର ଉଦ୍ଦେଶ୍ୟ ହେଉଛି ଆମେ ସମସ୍ତେ ସାଥୀ !'

ଅନେକ ବ୍ୟକ୍ତି ଏ ଭଳି ପ୍ରଶ୍ନ କରିଥିଲେ । ଏବଂ ଅନେକ ଉତ୍ତର ମଧ୍ୟ ଦେଇଥିଲେ । ତଥାପି କେହି କିଛି ବୁଝି ପାରୁ ନଥିଲେ ।

ସେଇ ପତଳା ଲୋକଟି ମାଇକ୍ରୋଫୋନ୍‌ଧରି ଚିତ୍କାର କରି ଉଠିଲା –

'ପୁଞ୍ଜିବାଦ ମୁର୍ଦ୍ଦାବାଦ !'

ଏଣ୍ଟୋନି, ରକ୍କି, ମତ୍ତାୟୀ, ସାଇମନ, ପଦ୍ମନାଭନ୍, ଅକୁତନ, ଏବଂ ପପନ ଇତ୍ୟାଦି ସ୍ୱରରେ ସ୍ୱର ମିଳାଇଲେ । ସମ ସ୍ୱରରେ ସ୍ଲୋଗାନ ଦେଲେ, କିନ୍ତୁ ସେଇ ଜନ ସମୁଦ୍ରରୁ ପ୍ରତିଧ୍ୱନୀ ଆଦୌ ଆସିଲା ନାହିଁ । ପତଳା ଲୋକଟି ପୁଣି ଉଲ୍ଲାସରେ କହିଲା ।

'ପୁଞ୍ଜିବାଦ ହିଁ ଶ୍ରମିକମାନଙ୍କୁ ଶୋଷଣ କରେ । ପୁଞ୍ଜିବାଦୀ ଶାସନ ହିଁ ସାଥୀ ବେଲାୟୁଧନକୁ ପିଟି ମାରି ପକାଇଛି । ପୁଞ୍ଜିବାଦ ମୁର୍ଦ୍ଦାବାଦ !'

ବର୍ତ୍ତମାନ ସେଇ ଜନସମୁଦ୍ର ଭିତରୁ ଆହୁରି ଜୋରରେ ଶବ୍ଦ ଗୁଞ୍ଜରି ଉଠିଲା ।

'ପୁଞ୍ଜିବାଦ – ମୁର୍ଦ୍ଧାବାଦ !'

ଅଗଣାରେ ଛିଡା ହୋଇଥିବା ଲୋକମାନଙ୍କ ଭିତରୁ ଜଣେ ଅନ୍ୟଜଣକୁ ପଚାରିଲା–'ପୁଞ୍ଜିବାଦକୁ ମାରି ପକାଇବା ସକାଶେ ଏ ବ୍ୟକ୍ତି ଜଣକ କହୁଛନ୍ତି ! ସାଙ୍ଗ, ଏ କଥା କଣ ଠିକ୍ ?'

'ତା ଛଡା ଆଉ କ'ଣ କରାଯାଇପାରେ ? ଯେଉଁପରି ଭାବରେ ସେମାନେ ସାଥୀ ବେଲାୟୁଧନକୁ ମାରିଦେଲେ, ଠିକ୍ ସେହିପରି ଭାବରେ ପୁଞ୍ଜିପତି ମାନଙ୍କୁ ମାରିବା ଉଚିତ । ସେଯ୍ରା କରିବା ଦରକାର ।'

ବେଲାୟୁଧନର ଶବକୁ ଉଠାଗଲା । ସେଠାରୁ ଗଳିକୁ ଏବଂ ଆସ୍ତେ ଆସ୍ତେ ରାସ୍ତାକୁ ନିଆଗଲା ।
'ପୁଞ୍ଜିବାଦ ମୁର୍ଦ୍ଧାବାଦ !'– ଏହି ଶବ୍ଦରେ ଗଗନ ପବନ ମୁଖରିତ ହେଲା ।
ବେଲାୟୁଧନର ମା ଆଖି ଖୋଲିଲା । କିନ୍ତୁ ପୁଣି ବନ୍ଦ ହୋଇଗଲା । ଏଲୀ ତାର ସାଥୀକୁ ପୁଣି ଉଠାଇଲା ।

କାଶ ! - ରକ୍କି କାଶୁଥିଲା । ସେ କାଶି ଛେପ ପକାଇଲା । ଛେପରେ ରକ୍ତ ଥିଲା ।

## 7

ଗର୍କୀ ଡାକ୍ତରଖାନାରେ ଥିଲା । ତାର ଭଙ୍ଗା ଗୋଡକୁ ଯୋଡି ବାନ୍ଧି ଦିଆଯାଇଥିଲା । ଖୁବ୍ ଶୀଘ୍ର ସେ ଭଲ ହୋଇଯିବ ଏବଂ ପୂର୍ବପରି ଚାଲବୁଲ କରି ପାରିବ ବୋଲି ଡାକ୍ତର ତାକୁ କହିଥିଲେ । ତାର ଶାରୀରିକ କ୍ଷତିପୂରଣ ହେବାର ସମ୍ଭାବନା ଥିଲେ ହେଁ ମାନସିକ କ୍ଷତିପୂରଣ ହେବାର କୌଣସି ସମ୍ଭାବନା ନ ଥିଲା ।

ଯେତେବେଳେ ସେ ନିରାଶ୍ରୟ ହୋଇ ନିଜ ସ୍ତ୍ରୀ ସହିତ ଚାରିଆଡେ ବୁଲୁଥିଲା ସେତେବେଳେ ବରୀଦୁ ସାହେବ ତାକୁ ଶରଣ ଦେଇଥିଲେ । କେବଳ ଏତିକି ନୁହେଁ, ସାହେବ ତାକୁ ଚାକିରୀ ମଧ୍ୟ ଦେଇଥିଲେ । ଏହା ବ୍ୟତୀତ ସେ ଏବଂ ତାର ସ୍ତ୍ରୀ ମଧ୍ୟ ମାଲିକଙ୍କର ଧର୍ମରେ ଦୀକ୍ଷିତ ହୋଇଥିଲେ । ସର୍ବୋପରି ମାଲିକ ଯେ ଈଶ୍ୱରଙ୍କ ଚଳନ୍ତି ପ୍ରତୀକ ସେ କଥାରେ ସେ ପୂର୍ଣ୍ଣ ବିଶ୍ୱାସ ରଖିଥିଲା । ଯଦିଓ ସେମାନଙ୍କର ପୁଅମାନେ କେବେ କେବେ ସାହେବଙ୍କର ସମାଲୋଚନା କରୁଥିଲେ ତାହେଲେ ମଧ୍ୟ ସେ କଥା ସେ ସହ୍ୟ କରିପାରୁ ନଥିଲା । ମାଲିକ ଯେ ଚଳନ୍ତି ଈଶ୍ୱର ଏ କଥାରେ ଭରସାକରି ସେ ଯେତେବେଳେ ନିଜ ପୁଅମାନଙ୍କର ଭୁଲ ମାଗିବା ପାଇଁ ମାଲିକଙ୍କ ପାଖକୁ ଯାଉଥିଲା ସେତେବେଳେ ଫାଟକ ଭିତରକୁ ନ ଯିବା ସକାଶେ ଚୌକୀଦାର ନିର୍ଦ୍ଦେଶ ଦେଲା । ସେ କେବେହେଲେ ଏ ଭଳି ଘଟଣାର କଳ୍ପନା କରି ନଥିଲା ? ଆଶ୍ଚର୍ଯ୍ୟର କଥା ଏହି ଯେ, ଯେତେବେଳେ ତାକୁ ଏବଂ ତାର ସ୍ତ୍ରୀକୁ ଗଳାରେ ଧକ୍କା ଦେଇ ବାହାର କରି ଦିଆଯାଉଥିଲା ସେତେବେଳେ ସାହେବ ନିଜେ ଦ୍ୱିତୀୟ ମହଲାର ଝରକା ସାମନାରେ ଛିଡା ହୋଇ ସେ ଦୃଶ୍ୟ ଦେଖୁଥିଲେ ! ଏ ଭଳି ପ୍ରତ୍ୟକ୍ଷ କଥାରେ ସେ ବିଶ୍ୱାସ ନ କରିବ ବା କାହିଁକି ! ତାକୁ ଲାଗିଲା ଯେମିତି ଈଶ୍ୱର ସଇତାନର ରୂପଧରି ଛିଡା ହୋଇଛନ୍ତି ଅଥବା ଯାହାକୁ ସେ ଏତେଦିନ ଧରି ଈଶ୍ୱର ବୋଲି ମନେକରି ଆସିଛି, ପ୍ରକୃତରେ ସେ ଜଣେ

ସଇତାନ୍ । ଅସହନୀୟ ଦୁଃଖ, ରାଗ, ଏବଂ ଘୃଣାର ସହିତ ଏଲୀ ଯେଉଁକଥା କହିଥିଲା, ସେ କଥା ବର୍ତ୍ତମାନ ତା କାନରେ ଗୁଞ୍ଜରି ଉଠୁଥିଲା –

'ତମର 'ଈଶ୍ୱର' ହଁ, ଈଶ୍ୱର ହିଁ ସେଇଠି ଛିଡା ହୋଇଛନ୍ତି ।'

ସେ ଯେତେବେଳେ ବେହୋସ ହୋଇଥିଲା ସେତେବେଳେ ତାକୁ ପୋଲିସ ଥାନାକୁ ନିଆଯାଇଥିଲା । ଯେତେବେଳେ ପୋଲିସ ତାକୁ ଉଠାଇ ନେଇ ନାଳରେ ପିଙ୍ଗି ଦେଲା ସେତେବେଳେ ସେ ଅର୍ଦ୍ଧ ଚେତନ ଅବସ୍ଥାରେ ଥିଲା । ତେଣୁ ତାର ଗୋଡ ଭାଙ୍ଗିବା ଘଟଣା ସେ ନିଜେ ଜାଣି ପାରି ନ ଥିଲା । ଏବଂ ଏଇ କାରଣରୁ ତାର ନିଜ ଗୋଡର କଥା ଚିନ୍ତା ନଥିଲା । ଡାକ୍ତରଖାନାର ଖଟରେ ଶୋଇ ଏଲୀର କଥା ସବୁ ବାରମ୍ବାର ତାର କାନରେ ପ୍ରତିଧ୍ୱନିତ ହୋଇ ଉଠୁଥିଲା । ବଙ୍ଗଳାର ଦ୍ୱିତୀୟ ମହଲାର ଝରକା ନିକଟରେ ସଇତାନର ରୂପ ସର୍ବଦା ଦେଖାଯାଉଥିଲା । ମୁଣ୍ଡବୁଲେଇ ପଡିଯିବା ଏବଂ ସାଧାରଣ ଭାବରେ ପଡିଯିବା ପରେ ଜଣକୁ ଜ୍ଞାନ ଫେରାଇ ଆଣିବାରେ ପାର୍ଥକ୍ୟ ଥିଲା ବୋଲି ତାର ବିଶ୍ୱାସ ରହିଥିଲା । କେବଳ ନିଜ ପାଇଁ ନୁହେଁ, ସାରା ପରିବାର ପାଇଁ କ୍ଷତିର କାରଣ ଥିଲା– ଏଭଳି ଦୟନୀୟ ପରିସ୍ଥିତି କଥା ଚିନ୍ତାକରି ସେ ବିଚଳିତ ହୋଇ ପଡିଲା ।

ଏଲୀ ଏବଂ ଅନ୍ନା ଯଥାକ୍ରମେ ଗର୍କୀର ମୁଣ୍ଡ ଓ ଗୋଡ ପାଖରେ ସର୍ବଦା ବସୁଥିଲେ । ଏଣ୍ଟୋନି ଏବଂ ରଜ୍ଜିକୁ ବାରମ୍ବାର କହିବାପରେ ସେମାନେ ଘରକୁ ଯାଉଥିଲେ । ଏହିପରି ଭାବରେ ଦଶ-କୋଡିଏ ଦିନ ବିତିଗଲା ପରେ ଗର୍କୀକୁ ଡାକ୍ତାରଖାନାରୁ ଘରକୁ ଆଣାଗଲା । ବର୍ତ୍ତମାନ ସେ ଖୁବ୍ କଷ୍ଟ ବିନା ଚଲାବୁଲା କରିପାରନ୍ତା କିନ୍ତୁ ସେ ଚଲାବୁଲା କରୁ ନଥିଲା । ଏପରିକି ଉଠୁ ମଧ୍ୟ ନ ଥିଲା । ସେ ସବୁବେଳେ ମଶିଣା ଉପରେ ଅର୍ଦ୍ଧନିଦ୍ରିତ ଅବସ୍ଥାରେ ଶୋଇ ଦିନ କଟାଉଥିଲା ।

ଇତି ମଧ୍ୟରେ ଦିନେ ବରାଦୁ ସାହେବଙ୍କ କାରଖାନାର ମିସ୍ତ୍ରୀ ଯୋଶେଫର ଘରକୁ ଆସିଥିଲା । ସେ ସମୟରେ ମଭାୟୀ ଏବଂ ସାଇମନ ସେଠାରେ ନ ଥିଲେ । ଯୋଶେଫ୍ ଆଦର ସମ୍ଭାଷଣ ପୂର୍ବକ ମିସ୍ତ୍ରୀକୁ ବସାଇଲା । ମିସ୍ତ୍ରୀ ବିଜୟର ଅଙ୍ଗଭଙ୍ଗୀ କରି ପଚାରିଲା –

'ବର୍ତ୍ତମାନ ବୁଝିଗଲ ତ ?'

'ହଁ, ବୁଝିଗଲି । ତୁମେମାନେ ବଡ ନିଷ୍ଠୁର ଲୋକ ଏ କଥା ବୁଝିଗଲି ।'

'ଏବେ ବି ମଧ୍ୟ ଅନେକ କଥା ବୁଝିବାକୁ ବାକି ଅଛି ଯୋଶେଫ୍ ଭାଇ, ବାକି ଅଛି !'

'ଏବେ ଆଉ କ'ଣ ବାକି ଅଛି, ମିସ୍ତ୍ରୀ ? ମୋର ଦୁଇ ପୁଅର ଗଳାକୁ ପିଚିପିଚି ପାଣି ପରି କରି ଦେଇଛନ୍ତି ! ବର୍ତ୍ତମାନ ଆଉ କ'ଣ ଶିଖିବାକୁ ନା ବୁଝିବାକୁ ବାକି ଅଛି ।'

'ସେମାନଙ୍କୁ କାହିଁକି ଜୀବନରେ ମାରି ଦିଆଯାଇ ନାହିଁ, ସେ କଥା ଜାଣିଛ କି ? ଯଦି ମାଲିକ ସେମାନଙ୍କୁ ମାରିବା ସକାଶେ ହୁକୁମ ଦିଅନ୍ତି ତା ହେଲେ ଅବଶ୍ୟ ସେମାନଙ୍କୁ ମାରି ଦିଆଯିବ । କିନ୍ତୁ ମାଲିକ ଏପରି ହୁକୁମ ଦେବେ ନାହିଁ । ଜାଣ, କାହିଁକି ?'

'କାହିଁକି ?'

'କାରଣ - - - - - କାରଣ ଆମେ ସମସ୍ତେ ଖ୍ରୀଷ୍ଟିଆନ୍ । ସତ୍ୟରେ ବିଶ୍ୱାସ କରୁ । ଏଥିପାଇଁ ମାଲିକ ମାରିବାକୁ ହୁକୁମ ଦେଇନାହାନ୍ତି । ବୁଝିଲ ?'

'ତା ହେଲେ ସେମାନଙ୍କୁ ମାଡ ଦିଆଗଲା କାହିଁକି ?'

'ପିଟିଲେ କାହିଁକି ? - - - - - - ଆରେ ମାଡ ମାରୁଥିଲେ ତ ଈଶ୍ୱର । ଈଶ୍ୱରଙ୍କ ବିରୁଦ୍ଧରେ ଯେଉଁମାନେ କହୁଥିଲେ ! ବୁଝିଲ ତ ଏବେ ?'

ଏ କଥା କହୁ କହୁ ସାଇମନ୍ ଆସି ପହଞ୍ଚିଗଲା । ସେ ପଚାରିଲା –

'ପିଟିଲାବାଲା ଈଶ୍ୱର କୋଉଠିକାର ଈଶ୍ୱର ?'

'ଶୁଣୁଛ ତ ଯୋଶେଫ୍ ଭାଇ ? ଏ ଈଶ୍ୱରଙ୍କର ନିନ୍ଦା କରୁଛି !'– ଏକଥା ମିସ୍ତ୍ରୀ ଟିକିଏ ଉଚ୍ଚ ସ୍ୱରରେ କହିଲା ।

'ଈଶ୍ୱର ପିଟିବେ ଏ କଥା କହିବାର ଅର୍ଥ ଈଶ୍ୱର ନିନ୍ଦା କରିବା । ଏଣୁ ତୁମେ ନିଜେ ସ୍ୱୟଂ ଈଶ୍ୱରଙ୍କ ନିନ୍ଦା କରୁଛ ମିସ୍ତ୍ରୀ ।'– ସାଇମନ ମଧ୍ୟ ଏ କଥା ପାଟି କରି କହିଲା ।

'ପୁଅ, ତୁ ଚୁପ ରହ ।' - ଯୋଶେଫ୍ ତା ପୁଅକୁ ଆକଟ କରି କହିଲା ।

ବର୍ତ୍ତମାନ ମିସ୍ତ୍ରୀର ଚେହେରାର ରଙ୍ଗ ବଦଳିଗଲା । ସେ ସ୍ନେହରେ କହିଲା –

'ଯେତେହେଲେ ତମେମାନେ ହେଉଛ ପିଲା ଲୋକ, ଏବଂ ନ ବୁଝିଲା ପରି କଥାବାର୍ତ୍ତା କରୁଛ । ମାଲିକ ପ୍ରକୃତରେ ହେଉଛନ୍ତି ଈଶ୍ୱର । ତମେମାନେ ଏକଥା ଜାଣିଛ ନା ? ମାଲିକ ଯାହା କିଛି କହନ୍ତି ତାହା ହେଉଛି ଈଶ୍ୱରୀୟ ବାଣୀ । ବୁଝିଲ ତ ?'

'ତାହେଲେ ମାଲିକଙ୍କର ସମସ୍ତ କଥା ବେଦ ଗ୍ରନ୍ଥରେ ଲେଖିନିଅ ମିସ୍ତ୍ରୀ !'

'ତୋତେ ଚୁପ୍ ରହିବାପାଇଁ କହିଥିଲି ନା !' ଯୋଶେଫ୍ ପୁଣି ତା ପୁଅକୁ ଆକଟ କଲା ।

'ଛାଡ ସେ କଥା । ତମେ କାହିଁକି କାରଖାନାକୁ କାମ କରିବାକୁ ଆସୁନାହିଁ, ସେ କଥା କୁହ ?' ମିସ୍ତ୍ରୀ ହସି ହସି ସାଇମନ୍‌କୁ ଏକଥା ପଚାରିଲା ।

'କାହିଁକି ଆସୁନୁ ? - - - - ଏ କଥା କ'ଣ ସ୍ୱୟଂ ମିସ୍ତ୍ରୀକୁ ଜଣାନାହିଁ ?'

'ତମେମାନେ ଆସୁନ କାହିଁକି, ସେ କଥା ମୁଁ ଜାଣିବି କେମିତି ?'

'ବାଃ ! କଥାବାର୍ତ୍ତା ଏମିତି କରୁଛ ଯେମିତି ବର୍ତ୍ତମାନ ସିଧା ସ୍ୱର୍ଗରୁ ଓହ୍ଲାଇ ଆସିଛ । ପୁଲିସବାଲା ଦ୍ୱାରା ମାଡ ଖୁଆଇ - ଅଧାମରା କରି, ପୁଣି ପଚାରୁଛ ଯେ, ଆମେ କାହିଁକି ଆସୁନାହୁଁ ?'

'ତୁ ସେଠାରେ ଚୁପ ରହ !'- ଯୋଶେଫ୍ ପୁଣି ଥରେ ପୁଅକୁ ଆକଟ କରି କହିଲା ।

'ବାପା ! ପୁଣି ଥରେ ଯିବାକୁ କହୁଛନ୍ତି, କାରଣ ଗଲେ ତ ପୁଣି ସେମାନେ ଥରେ ପିଟି ପାରିବେ !'

ମିସ୍ତ୍ରୀ କହିଲା–

'ଆସିବାକୁ କହିବାର ଅର୍ଥ ହେଉଛି - ଆସି କାମ କରିବା । କାମ କଲେ ସିନା ମଜୁରୀ ମିଳିବ । ଯେଉଁମାନେ କାମକରି ମଜୁରୀ ପାଇବେ ସେମାନେ ନିଜ ରାସ୍ତାରେ ଠିକ୍ ରହିବା ଉଚିତ । ସେମାନେ ଯଦି ଅନ୍ୟକଥା କହି ଈଶ୍ୱର ନିନ୍ଦା କରନ୍ତି ତା ହେଲେ - - - - - - - - - - - - - ।'

'ଆଗେ ଯାଇ ପୁଣି ମାଡ ଗାଳି ସହିବାକୁ ପଡିବ, ଏ କଥା ପଟିବ ତ ନାହିଁ ମିସ୍ତ୍ରୀ !'– ସାଇମନ୍ ଏ କଥା ଦୃଢ ସ୍ୱରରେ କହିଲା ।

'ମାରପିଟ୍ ତମେମାନେ ସହ ବୋଲି କ'ଣ ମୁଁ କହିଲି ? ଯେତେବେଳେ ମାଲିକ ଶୁଣିଲେ ଯେ ତମେମାନେ ଭୋକ ଉପାସରେ ସଢି ଯାଉଛ, ସେତେବେଳେ ସେ ଦୟାରେ ବିଗଳିତ ହୋଇ ମୋତେ ଏଠାକୁ ପଠାଇଥିଲେ । ତିନି ଚାରିଦିନ ପରେ ଯେତେବେଳେ ଜାହାଜ ଆସିବ ସେତେବେଳେ ମାଲ ପଠେଇବା ଦରକାର ପଡିବ ।'

'ହଁ'– ବୋଲି କହି ସାଇମନ୍ ବ୍ୟଙ୍ଗରେ ହସିଲା ।

'ମିସ୍ତ୍ରୀ, ବର୍ତ୍ତମାନ ତମେ ଆସ । ଆମ୍ଭେମାନେ ବର୍ତ୍ତମାନ ଟିକିଏ ବିଚାର ପରାମର୍ଶ କରୁ ।'

'ଏଥିରେ ବିଚାର ପରାମର୍ଶ କରିବାର କ'ଣ ଅଛି ? କାହା ସାଙ୍ଗରେ ପରାମର୍ଶ କରିବ ? - - - - ଇଷବ ଜାତିର ଲୋକମାନଙ୍କ ସହିତ ବିଚାର ପରାମର୍ଶ କରି ଯଦି ସେମାନଙ୍କ ହାତ ଧରି ଚାଲ ତ ତମମାନଙ୍କର ନିସ୍ତାର ନାହିଁ, ହଁ ଏ କଥା ମୁଁ କହି ଦେଉଛି । ଖ୍ରୀଷ୍ଟିଆନ୍‌ମାନଙ୍କୁ ବଡ ଲୋକ ହେବା ଦେଖି ଇଷବ ଜାତିର ଲୋକମାନଙ୍କର ଆଖିରେ ପୋକ ପଡି ଯାଉଛି ।'

'ଛାଡ ସେ କଥା । ମିସ୍ତ୍ରୀ, ତମେ ବର୍ତ୍ତମାନ ଯାଇପାର ତା ହେଲେ । ଆମେ ଟିକିଏ ବିଚାର ଆଲୋଚନା କରୁ ।'

'କ'ଣ ଆସନ୍ତାକାଲି ଆସିବି ?'

'ହଁ' ।

ମିସ୍ତ୍ରୀ ଗଲା । ଯୋଶେଫ୍ କହିଲା–

'ତାହାର କହିବା ହେଉଛି ଠିକ୍ । - - - - - - ଆମେ ଖ୍ରୀଷ୍ଟିଆନ୍ । ତେଣୁ ମାଲିକ ଆମ ଉପରେ ଦୟା ରଖିଛନ୍ତି ।'

'ଆପଣଙ୍କ ମନକୁ ତ ପାଇଯାଇଛି । ଅସଲ କଥା ହେଉଛି, ଯେ ଜାହାଜ ପହଞ୍ଚିବା ମାତ୍ରେ ମାଲ ଖଲାସ କରିବାକୁ ହେବ ଏବଂ ମାଲ ଦେବାକୁ ହେବ । ତେଣୁ ସେ ଖ୍ରୀଷ୍ଟିଆନ୍ ମାନଙ୍କର ନାମ ନେଇ ଏଥିରୁ ପାର ହେବାକୁ ଚାହାନ୍ତି ।'

ତାପରେ ଯୋଶେଫ୍ ଆଉ କିଛି କହିଲା ନାହିଁ ।

• • • • •

ସେ ଦିନ ରାତି ଅଧଯାଏଁ କୁକୁପନର ଚା ଦୋକାନରେ ଆଲୁଅ ଜଳୁଥିଲା । ସେ ଦୁବଲା ପତଳା ଲୋକଟିର କଥା, ଏଣ୍ଟୋନି, ରକ୍ସି, ସାଇମନ୍, ମଣ୍ଡାସ୍ୱାମୀ ଏବଂ ପଦ୍ମନାଭନ୍ ଇତ୍ୟାଦି ମାନଙ୍କର ଶବ୍ଦ ଦୂରରୁ ଶୁଣାଯାଉଥିଲା ।

ପତଳା ଲୋକଟି କହିଲା –
'ଶ୍ରମିକମାନଙ୍କ ପାଇଁ ଜାତି, ଧର୍ମ , ଈଶ୍ୱର ତଥା ଦେଶ ବୋଲି କିଛି ନାହିଁ ।'
'ଏ ସବୁ ହେଇଛି ପୁଞ୍ଜିପତିମାନଙ୍କ ପାଇଁ । ଈଶ୍ୱର ହେଉଛନ୍ତି ପୁଞ୍ଜିପତିମାନଙ୍କ ମିସ୍ତ୍ରୀ ।'
'ଏ ବ୍ୟବସ୍ଥାକୁ ଭାଙ୍ଗିବା ଦରକାର । ଏବଂ ଏହା କରିବା ନିତାନ୍ତ ଆବଶ୍ୟକ ।'
ଏଣ୍ଟୋନି, ଯେ ଏପର୍ଯ୍ୟନ୍ତ ସମ୍ଭାଳି ରହିଥିଲା, ସେ ଜୋରରେ କହି ଉଠିଲା-

'ଭଙ୍ଗା ରୁଜା ସବୁ ବନ୍ଦକର । ଆସନ୍ତା କାଲି କାମ କରିବାକୁ ଯିବ କି ନାହିଁ ସେ କଥା ବର୍ତ୍ତମାନ ଚିନ୍ତା କରିବା ଦରକାର ।'

ପତଳା ଲୋକଟି ଉପଦେଶ ଦେଲା –
'ସମସ୍ତେ କାମ କରିବା ସକାଶେ ଯିବା ଉଚିତ । ଆମେ ସମସ୍ତେ ଖ୍ରୀଷ୍ଟିଆନ୍ ବା ମାଲିକ ଦୟାଳୁ ବୋଲି ଆମକୁ କାମ ଦିଆଯାଉନାହିଁ । ଆମେ ଈଷବ ଜାତିର ଲୋକ ହୋଇଥିଲେ ମଧ୍ୟ ଆମକୁ କାମ ଦିଆଯିବ । କାମ କରାଇବା ମାଲିକ ପାଇଁ ଯେତିକି ଆବଶ୍ୟକ, କାମ କରିବା ଶ୍ରମିକମାନଙ୍କ ସକାଶେ ସେତିକି ଦରକାର । ଏଣୁ ସମସ୍ତେ କାମ କରିବାପାଇଁ ଯିବା ଉଚିତ ।'

ଶେଷରେ କାମକୁ ଯିବା ବିଷୟ ସିଦ୍ଧାନ୍ତ କରାଗଲା ।

• • • • •

ଯେତେବେଳେ ଅଧ ରାତି ଯାଏଁ ହୋଇଗଲା ସେତେବେଳେ ଅନ୍ନା ଏବଂ ଏଲୀ ଡରିଗଲେ । ସେ ଦିନ ସେ ପରିବାରକୁ ଉପାସରେ ରହିବାକୁ ପଡିଥିଲା । ଉପବାସରେ ରହିବା ସେମାନଙ୍କପାଇଁ କୌଣସି ଚିନ୍ତାର କାରଣ ନଥିଲା । ନିଜର ଏଣ୍ଟୋନି ଏବଂ ରକ୍ସି ପାଇଁ ସେ ପ୍ରାର୍ଥନା କଲା । ଅର୍ଦ୍ଧ ନିଦ୍ରା ଯାଇଥିବା ଗର୍ଜୀ ମଝିରେ ମଝିରେ ପଚାରୁଥିଲା –

'କ'ଣ ସେମାନେ ଆସିଗଲେ ?'
ବର୍ତ୍ତମାନ ଏଲୀ ଏବଂ ଅନ୍ନା ଗଳିରେ ଛିଡା ହୋଇଥିଲେ । ଅନ୍ନା ପଚାରିଲା - 'ମା, ରାତି ଅଧ ହେଲାଣି ଆସି, ସେମାନେ ଆସୁ ନାହାନ୍ତି କାହିଁକି ?'

'ସେମାନେ ଆସିବେ ଝିଅ, ଆସିବେ ।'
'ଏବେ ବି ପୋଲିସ ବାଲାଏ - - - - - - - '
'ନା ଝିଅ, ନା ! ସେମାନେ ନିଶ୍ଚୟ ଆସିବେ ।'
'କ'ଣ ସେମାନେ ଆସିଗଲେ ?' - ଗର୍ଜୀ ସେମାନଙ୍କୁ ଘର ଭିତରକୁ ଡାକି ପଚାରିଲା ।

'ବର୍ତ୍ତମାନ ଆସିଯିବେ ।' - ଏଲୀ କହିଲା ।

ଯୋଶେଫର ଘରେ ଆଲୋକ ଥିଲା । ଯୋଶେଫ୍ ଗଳି ଉପରକୁ ଚାଲି ଆସିଲା । ସେ ପଚାରିଲା –

'କ'ଣ ଆସିଗଲେ ?'

'ନାଁ ତ' ।

'ମିସ୍ତ୍ରୀ ଏଠାକୁ ଆସିଥିଲା ବୋଲି ତ ତମେ ଜାଣ ?'

'ନାଁ ତ । କ'ଣ ପାଇଁ ଆସିଥିଲା ?'

'କାମକୁ ଯିବା ଉଚିତ ବୋଲି ସେ କହିବାକୁ ଆସିଥିଲା ।'

'ତା ହେଲେ ?'

'ମତେ ଲାଗୁଛି ସମସ୍ତେ ମିଳିମିଶି ବିଚାର ଆଲୋଚନା କରି କିଛି ଗୋଟିଏ ସିଦ୍ଧାନ୍ତ କରିବାକୁ ପଡ଼ିବ ।'

'ସେଇଟା ଠିକ୍ ହେବ ।'

'କ'ଣ ଆସିଗଲେ ?'– ପୁଣି ଘର ଭିତରୁ ଗର୍ଟା ପଚାରିଲା ।

'ବର୍ତ୍ତମାନ ଆସି ଯିବେ'– ଏଲୀ କଥାଟାକୁ ବୁଲାଇ କରି କହିଲା ।

ଯୋଶେଫ୍ କହୁଥିଲା - 'ମିସ୍ତ୍ରୀ କହୁଥିଲା, ଯେ ଆମେ ଖ୍ରୀଷ୍ଟିଆନ୍, ତେଣୁ ସେମାନେ ଆମମାନଙ୍କୁ ମାରପିଟ୍ କରି ମାରି ଦେବେ ନାହିଁ । ତା ନ ହେଲେ ମାରି ଦେଲା ପରେ ମଧ୍ୟ ପଚାରିବା ପାଇଁ ଅଛି କିଏ ?'

'ହଁ, ହୁଏତ ଏ କଥାଟା ଠିକ୍ ।'

'ମା, ଆଉ ଭଉଣୀ ଦୁହେଁ ଏ ଗଳିରେ ଛିଡ଼ା ହୋଇଛ କାହିଁକି ?' - ଏ କଥା ପଚାରୁ ପଚାରୁ ଏଣ୍ଟୋନି ଏବଂ ରକ୍କି ଆସି ପହଞ୍ଚିଗଲେ । ପଛରେ ମଭାସ୍ୱୀ ଏବଂ ସାଇମନ୍ ମଧ୍ୟ ଥିଲେ ।

'ଆରେ, ସେମାନେ କ'ଣ ଆସିଗଲେ ?'– ଗର୍ଟା ପୁଣି ପଚାରିଲା ।

'ହଁ ଆସିଗଲେ, ଆସିଗଲେ । - - - - ପିଲାମାନେ ତମେ ଭିତରକୁ ଆସ । ଜଲଦି ଆସ ।'

ଏଣ୍ଟୋନି ଏବଂ ରକ୍କି ଘରଭିତରକୁ ଆସିଲେ । ଏଲୀ ଏବଂ ଅନ୍ୟ ମଧ୍ୟ ସେମାନଙ୍କ ପଛେ ପଛେ ଆସିଲେ ।

## 8

କୁଞ୍ଜଶଙ୍କରନ୍ ସାହେବଙ୍କର କୋଏର (ନଡ଼ିଆ କତା ଦଉଡ଼ି ତିଆରି) କାରଖାନାରେ କାର୍ଯ୍ୟ ଚାଲିଥିଲା । ଏହି କାରଖାନା ଯେ କେବଳ ଗୋଟିଏ କାରଖାନା ଥିଲା ତାହା ନୁହେଁ, ବିଭିନ୍ନ କିସମ ବ୍ୟବସାୟର ଗୋଟିଏ ପ୍ରାଣ କେନ୍ଦ୍ର ଥିଲା । ସେଠାରେ ନଡ଼ିଆର କତା ଛଡାଇ, ପଚାଇ, ଚରଖାରେ ଦଉଡ଼ି ତିଆରି କରିବା ପର୍ଯ୍ୟନ୍ତ ସବୁକାମ ଚାଲୁଥିଲା । ସେଠାରେ ଭୁଷା ଦୋକାନ ଓ ଚା ଦୋକାନ ମଧ୍ୟ ଥିଲା । ପରେ ନଡ଼ିଆକତାର ଆସନ, ଚଟେଇ ଆଦି ବୁଣିବା କାର୍ଯ୍ୟ ମଧ୍ୟ ଆରମ୍ଭ କରାଯାଇଥିଲା ।

ପ୍ରଥମେ ନଡିଆରୁ ଚୋପା ଛଡାଇ, ଚୋପା ପଚାଇ ବିକିବା ଏକ କାର୍ଯ୍ୟ ଥିଲା । ପରେ ଚିନ୍ତା କରାଗଲା, ଯେ ଶ୍ରମିକମାନଙ୍କୁ ଦିଆଯାଉଥିବା ପଇସା କେବଳ ସେମାନଙ୍କ ପେଟରେ ପଡିଲେ ଲାଭ କ'ଣ ? ଏହି ବିଚାରର ଫଳ ସ୍ୱରୂପ ଭୁଷା ଦୋକାନ ଓ ଚା ଦୋକାନ ଖୋଲାଗଲା । ମାଲିକ ଶ୍ରମିକମାନଙ୍କୁ ବୁଝାଇ ଦେଲେ, ଯେ ସେମାନଙ୍କ ମଜୁରୀ କେବଳ ଲୁଣ, ଲଙ୍କା, ଚାଉଳ କିଣିବା, ଚା ଆଦି ପିଇବା ଅର୍ଥାତ୍ ଦ୍ରବ୍ୟ ଆକାରରେ ଦିଆଯିବ । ଯେଉଁମାନେ ଏହି ସର୍ତ୍ତରେ ରାଜି ହେବେ ନାହିଁ ସେମାନେ କାମ କରିବାକୁ ଆସିବେ ନାହିଁ । ସର୍ତ୍ତକୁ ସମାଲୋଚନା କରିବାର ସାହସ କାହାରି ନଥିଲା । ଏହି ସର୍ତ୍ତାବଳୀର କେହି ଯେପରି ବିରୁଦ୍ଧାଚରଣ ନ କରନ୍ତି ସେଇଥିପାଇଁ ସେ ପଚାରି ଦେଉଥିଲେ ଯେ – – –

'ତୁମ୍ଭମାନଙ୍କର ପଇସା ପତ୍ର କ'ଣ ଦରକାର ? କ'ଣ ଚାଉଳ ଡାଲି କିଣିବା ପାଇଁ ଦରକାର, ଏଇଯ୍ୟା ତ ? ହଁ, ଏହା ବ୍ୟତୀତ ଚା ମଧ୍ୟ ପିଇବା ଦରକାର । ଏଇଥିପାଇଁ ମୁଁ ଭୁଷା ଦୋକାନ ଓ ଚା ଦୋକାନ ଖୋଲିଛି । ପ୍ରଥମେ ତୁମେମାନେ ଡାଲି ଚାଉଳ କିଣି ନିଅ । ତା ପରେ ଚା ମଧ୍ୟ ପିଇନିଅ । ହଁ, ଏହାପରେ ଯଦି ମଜୁରୀ ବଳିଯାଏ ତା ହେଲେ ଟଙ୍କା ହିସାବରେ ତାକୁ ନେଇନିଅ ।'

ସତକଥା କହିବାକୁ ଗଲେ, କୁଞ୍ଜୁଶଙ୍କରନ୍ ଭୁଷା ଦୋକାନରୁ ଡାଲି ଚାଉଳ କିଣିବା ତଥା ଚା ପିଇବା ପରେ ଶ୍ରମିକମାନଙ୍କର ଗୋଟିଏ ହେଲେ ପଇସା ବଞ୍ଚୁ ନଥିଲା ।

ବର୍ତ୍ତମାନ ସାହେବ ଚିନ୍ତା କଲେ, ଯେ ପଚା ନଡିଆ ଚୋପା ବିକ୍ରୀ କରିବା ପରିବର୍ତ୍ତେ ସେଥିରୁ ଦଉଡି ପ୍ରସ୍ତୁତ କରି ବିକ୍ରିକରିବା ଲାଭଜନକ ବ୍ୟବସାୟ । ନଡିଆରୁ ଚୋପା ଛଡାଇବା, ଦଉଡି ବଳିଲାବାଲା ଆସିଲେ ଶ୍ରମିକମାନଙ୍କ ସଂଖ୍ୟା ବଢିଯିବ ଏବଂ ସେମାନେ ସମସ୍ତେ ଚାଉଳ-ଡାଲି କିଣିଲେ, ଚା ପିଇଲେ ମାଲିକଙ୍କର ଲାଭ ମଧ୍ୟ ସେହି ପରିମାଣରେ ବଢିବ । ଏଣୁ ଚୋପା ଛଡାଇବା, ଦଉଡି ବଳିବା କାର୍ଯ୍ୟ ଶୀଘ୍ର ଆରମ୍ଭ କରାଗଲା । ସେହି ଅନୁସାରେ ଭୁଷା ଦୋକାନ ଏବଂ ଚା ଦୋକାନର ଆକାର ପ୍ରକାର ମଧ୍ୟ ବଢିଗଲା । ଏ ସବୁ ଜିନିଷପତ୍ରର ଦରଦାମ ମଧ୍ୟ ବଢାଇ ଦିଆଗଲା । ସାହେବ ଚୋପା ଛଡାଇବାବାଲା, ଦଉଡି ବଳିଲାବାଲା ମାନଙ୍କୁ କହୁଥିଲେ ଯେ --

'ଦେଖି ନିଅ, ଆଲପୁଷା ବଜାରରେ ଚାଉଳର ମୂଲ୍ୟ ନଈବଢି ପରି ବଢିବାରେ ଲାଗିଛି । ଲଙ୍କା ମୂଲରେ ଯେପରି ନିଆଁ ଲାଗିଯାଇଛି । ହଁ, ସମସ୍ତେ ଯଦି ଚା ପିଇବା ଅଭ୍ୟାସ ଛାଡି ଦିଅନ୍ତି ତା ହେଲେ ତ ଭଲ । ଚା ଗୁଣ୍ଡ କିଣିବାର ଅର୍ଥ ହେଉଛି ଜମି ବନ୍ଧକ ରଖି କିଣିବା ।'

କୁଞ୍ଜୁଶଙ୍କରନ ସାହେବଙ୍କର ଦୋକାନରେ ସମସ୍ତ ଜିନିଷର ଭାଉ ସବୁବେଳେ ଅଧିକ ଥିଲା । ତାଙ୍କ ତନ୍ତ୍ରଶାସ୍ତ୍ର ଅନୁଯାୟୀ କୌଣସି ଜିନିଷର ଦାମ କମାଇବା ତାଙ୍କ ପାଖରେ ଅସମ୍ଭବ ଥିଲା ।

କୁଞ୍ଜୁଶଙ୍କରନ୍ ସାହେବଙ୍କ କେସିଅର ତଥା ମାଲିକଙ୍କର ସ୍ତ୍ରୀ ହେଉଛନ୍ତି କାଳିକୁଟୀ । କଞ୍ଚା ନଡିଆ କିଣିବାଠାରୁ ଆରମ୍ଭ କରି ଦଉଡି ବଳିବା ପର୍ଯ୍ୟନ୍ତ ତଥା ଭୁଷା ଦୋକାନ ଠାରୁ ଆରମ୍ଭକରି ଚା ଦୋକାନ ପର୍ଯ୍ୟନ୍ତ ସମସ୍ତ

କଥା ସେ ନିଜେ ସମ୍ଭାଳି ନେଉଥିଲା । ସେ ଅବସରର ହିସାବ କିତାବ କଲାବେଳେ ସେ ଇଚ୍ଛା କରି ଭୁଲ କରୁଥିଲା । କିନ୍ତୁ ଏ ଭୁଲ କେତେବେଳେ ହେଲେ ଶ୍ରମିକମାନଙ୍କ ସପକ୍ଷରେ ଯାଉ ନଥିଲା । କାଳୀକୁଟ୍ଟୀ ନଡିଆ ଚୋପା ଛଡାଇବା ପୁରୁଷ ଓ ମହିଳା ଶ୍ରମିକମାନଙ୍କ ସହିତ କଥାବାର୍ତ୍ତା କରୁକରୁ କହୁଥିଲା, ଯେ – ମଜୁରି ଟଙ୍କା ହିସାବରେ ନ ନେଇ ଜିନିଷ ପତ୍ର ଆକାରରେ ନେଲେ ବହୁତ ଲାଭ ଅଛି । ସେ ତାର ଭାଷଣ ଚାଲୁରଖି ପୁଣି କହିଲା ଯେ –

'ସ୍ତ୍ରୀ ଲୋକମାନେ ମଜୁରୀ ନେଇ ହାଟ ବଜାରରେ ବୁଲିବା ହେଉଛି ଭୀଷଣ ଅପମାନଜନକ ବ୍ୟାପାର । ଆଉ ମୋର ଅନୁରୋଧ କରିବା ଫଳରେ ସାହେବ ଏ ଦୋକାନ ଖୋଲିଛନ୍ତି । ବର୍ତ୍ତମାନ ଏ ହେଉଛି କେତେବଡ ସୁବିଧା ! - କାମ ସାରିବା ପରେ ବର୍ତ୍ତମାନ ଯିଏ ଯାହା ଜିନିଷ କିଣି ଘରକୁ ସିଧାସଳଖ ଯାଇପାରୁଛନ୍ତି ।'

ସେ ମହିଳା ଶ୍ରମିକମାନଙ୍କୁ କହୁଥିଲା ଯେ–
'ସେମାନେ ମାଗିଲେ ମଧ୍ୟ ମାଲିକ ମଜୁରୀ ଦେବେ ନାହିଁ । କାରଣ କାହିଁକି, ଜାଣ ? ପଇସା ନେଇଯାଇ ସେମାନେ ସାଙ୍ଗେ ସାଙ୍ଗେ ତାଡି ପିଇ ଦିଅନ୍ତି । ପୁରୁଷମାନଙ୍କ ହାତରେ ଯେଉଁ ପଇସା ପଡେ ତାକୁ ଛାଣି ନେବା ପାଇଁ କେତେକ ସ୍ତ୍ରୀ ଲୋକ ମଧ୍ୟ ଅନେଇ ରହିଥାଆନ୍ତି । ପୁରୁଷ ଲୋକମାନେ ତାଡି ପିଇ ଏପରି ସ୍ତ୍ରୀ ଲୋକ ମାନଙ୍କୁ ସଙ୍ଗରେ ନେଇ ବୁଲିଲେ ଘରଣୀମାନଙ୍କୁ ଭୋକ ଉପାସରେ ରହିବାକୁ ପଡେ । ଏଇଥିପାଇଁ ଆମ୍ଭେମାନେ ସେମାନଙ୍କ ହାତରେ ପଇସାପତ୍ର ଦେବାକୁ ଚାହୁଁନା ।'

ଏହିଭଳି ଭାବରେ କୁଞ୍ଜୁଣ୍ଣଙ୍କରନ୍ ସାହେବ ଖୋଳପା ଛଡାଇବା ଏବଂ ଦଉଡି ବଳିବା ଭୂଷା ଦୋକାନ, ଏବଂ ଚା ଦୋକାନ ଚଳାଇବାରେ ବେଶ୍ କିଛି ଲାଭ ପାଉଥିଲେ । ବଳାଯାଉଥିବା ନଡିଆ ଦଉଡିକୁ ଯଦି ଚଟେଇ ବୁଣିବାରେ ଲଗାଯାଏ ତା ହେଲେ ଅଧିକ ଲାଭ ହେବ ବୋଲି ସେ ସେତେବେଳେ ଜାଣିଥିଲେ । ଏହିପରି ଭାବରେ କିଛିଦିନ ଗଲାପରେ ଚଟେଇ ବୁଣିବା ଆରମ୍ଭ ହେଲା । ଭୂଷା ଦୋକାନ ଓ ଚା ଦୋକାନର ଆକାର ଓ ପ୍ରକାରରେ ପରିବର୍ତ୍ତନ ହେଲା ।

ବର୍ତ୍ତମାନ ସେ ଚିନ୍ତା କଲେ, ଯେ ଗୋଟିଏ ଦର୍ଜୀ ଦୋକାନ ଏବଂ ଗୋଟିଏ ସେଲୁନ ନ ଖୋଲାଯିବ କାହିଁକି ? ସାହେବଙ୍କର ଶ୍ରମିକମାନେ କାହିଁକି ଲୁଗା କିଣିବାକୁ ତଥା ସିଲେଇ କରିବାକୁ ବାହାରକୁ ଯିବେ ? ସାହେବଙ୍କର ଶ୍ରମିକମାନେ କାହିଁକି ଦାଢି କଟାଇବା ପାଇଁ ସବୁବେଳେ ସେଲୁନ ଖୋଜିବାରେ ଲାଗିବେ ? ସାହେବ କହୁଥିଲେ –

'ମୋ ଶ୍ରମିକମାନଙ୍କ ପାଇଁ ଯାହା କିଛି ଦରକାର, ମୁଁ ଦେବି । ମା ବାପା ଛଡ଼ା ତମ ମାନଙ୍କର ଯାହା ଦରକାର, ତାହା ମାଗି ନିଅ ।'

ଗୋଟିଏ ଦୁଷ୍ଟ ଶ୍ରମିକ କିଛି ମାଗିବା ସକାଶେ ଚାହିଁଥିଲା । କିନ୍ତୁ ମାଗିଲା ନାହିଁ ।
ଦୁଇଗୁଣ ଚଢାଦାମ ଦେଇ କେହି ସାହେବଙ୍କର ଦୋକାନରୁ ଜିନିଷପତ୍ର କିଣିବାକୁ ଚାହୁଁ ନଥିଲେ । କିନ୍ତୁ ନିଜ

ନିଜର ଚାକିରୀ ଯିବା ଭୟରେ, ସେମାନଙ୍କୁ ଏସବୁ ମାନିବାକୁ ପଡୁଥିଲା । କିନ୍ତୁ ଶେଷରେ ଏହି ବିରୋଧ ଓ ପ୍ରତିଶୋଧ ମନୋବୃତ୍ତି ଆପୋଷ ଆଲୋଚନା ମାଧ୍ୟମରେ ଚାରିଆଡେ ପ୍ରକଟ ହେବାକୁ ଲାଗିଲା । ସାହେବ ଏ ସବୁ ଜାଣିବାପରେ ମଧ୍ୟ ନ ଜାଣିବାର ବାହାନା କରୁଥିଲେ ।

ଶ୍ରମିକମାନଙ୍କର ଏହି ଚାପା କଥାବାର୍ତ୍ତା ଶେଷ କରିବା ସକାଶେ ସେ ଏବଂ ତାଙ୍କର ସ୍ତ୍ରୀ କାଳୀକୁଚ୍ଚୀ ଆପଣା ମଧ୍ୟରେ ବୁଝି ବିଚାରି ଶେଷରେ ଗୋଟିଏ ଉପାୟ ସ୍ଥିର କଲେ । ବଡଝିଅ ସୁମତୀକୁ ଚା ଦୋକାନରେ ମେନେଜର ଏବଂ ଦ୍ୱିତୀୟ ଝିଅ ନଳିନୀକୁ ଦର୍ଜୀ ଦୋକାନର ମେନେଜର ନିଯୁକ୍ତି କରାଯିବାର ସ୍ଥିର କରାଗଲା । ଏହିଭଳି ଭାବରେ ଯେତେବେଳେ ଦୁଇଜଣ ନୂତନ ମେନେଜରଙ୍କର ନିଯୁକ୍ତି ହେଲା ସେତେବେଳେ ଏହି ଫୁସ୍‌ଫାସ୍ କିଛିଦିନ ପାଇଁ ବନ୍ଦ ହେଲା ।

ସୁମତୀ ଓ ନଳିନୀ ଶ୍ରମିକ ମାନଙ୍କ ସହିତ ହସ, ଥଟ୍ଟା, ତାମସା ମଧ୍ୟ କରୁଥିଲେ । ଏସବୁ ମାଲିକଙ୍କର ଜାଣତରେ, ଅଜାଣତରେ, ବା ନିର୍ଦ୍ଦେଶ ଅନୁସାରେ ହେଉଥିଲା ସେ କଥା କେହି କହି ପାରିବେ ନାହିଁ ।

ଏହାର ଫଳସ୍ୱରୂପ ପ୍ରଣୟର ଉତ୍ପତ୍ତି ହେବା ସଙ୍ଗେ ସଙ୍ଗେ କିଛି ମାରପିଟ୍ ମଧ୍ୟ ହୋଇଥିଲା । କିନ୍ତୁ କୌଣସି ଘଟଣା ଗମ୍ଭୀରତାର ରୂପ ନେଇ ନଥିଲା ।

ଦିନକର ଘଟଣା । ଦିନେ ଯେତେବେଳେ ଲୋକମାନେ ଚା ପିଉଥିଲେ ସେତେବେଳେ ସୁମତୀ ଗୋଟିଏ ଗ୍ଲାସରେ ଚା ନେଇ କୁଷ୍ଣୁକୁ ପିଇବା ସକାଶେ ଦେବାକୁ ଗଲା । କୁଷ୍ଣୁ, ଗ୍ଲାସ ପଡିଯିବା ବାହାନାରେ ସୁମତୀର ହାତ ସ୍ପର୍ଶ କଲା ଓ ସାମାନ୍ୟ ଟିକେ ମଧ୍ୟ ହାତକୁ ଟାଣିଦେଲା । ତା ଗ୍ଲାସ ତଳେ ପଡି ଭାଙ୍ଗି ଚୁରମାର ହୋଇଗଲା । ଏତିକି ହୋଇଗଲା ପରେ ସୁମତୀ କୁଷ୍ଣୁକୁ ମୃଦୁ ଭର୍ତ୍ସନା କଲା ଏବଂ କୁଷ୍ଣୁ ମଧ୍ୟ କ୍ରୋଧରେ ତାକୁ ଭଲ ମନ୍ଦ କିଛି କହିଲା । ଏ ସମ୍ପର୍କରେ ଯେତେବେଳେ ଶ୍ରମିକମାନଙ୍କ ମଧ୍ୟରେ ଆଲୋଚନା ହେଲା ସେତେବେଳେ ମାଲିକଙ୍କୁ ଏଥିରେ ହସ୍ତକ୍ଷେପ କରିବାକୁ ପଡିଲା । ସାହେବ କହିଥିଲେ ଯେ –

'ସେ (କୁଷ୍ଣୁ) ଜବରଦସ୍ତି ଗୋଟିଏ ଝିଅର ହାତ ଟାଣି ନେବା ଦ୍ୱାରା ସେପରି କୌଣସି ଗଣ୍ଡଗୋଳ ବା କିଛି ପାପ ହୋଇନାହିଁ । କିନ୍ତୁ ମୁଁ କହୁଛି ଯେ, କାହାରି ଦେଖିବା ବିନା ମଧ୍ୟ ହାତ ଧରାଯାଇ ପାରିଥାଆନ୍ତା ।'

ଦର୍ଜୀ ଦୋକାନରେ ମଧ୍ୟ ଏଭଳି ପ୍ରେମ ସମ୍ପର୍କ ଚାଲିଥିଲା । ପ୍ରେମ ପତ୍ର ଲେଖିବା ଦ୍ୱାରା ଯେଉଁ ସମ୍ପର୍କର ସୂତ୍ରପାତ ହୋଇଥିଲା ତାହା ଶ୍ରମିକମାନଙ୍କ ତଥା ଦର୍ଜୀମାନଙ୍କ ଆପୋଷ ଅଟକ, ଧମକ, ଚମକ, ମାରପିଟ୍, ମଧ୍ୟରେ ବଦଳି ଗଲା । ଶେଷରେ ଏହା ମାଲିକ ଏବଂ କାଳୀକୁଚ୍ଚୀର ବ୍ୟାପାର ଜନିତ ଷଡଯନ୍ତ୍ର ବୋଲି ଶ୍ରମିକମାନେ ଫୁସଫୁସ ଆଲୋଚନା କଲେ । ଏହା କିଭଳି ଭାବରେ ପ୍ରଚାର ଆରମ୍ଭ ହେଲା ସେ କଥା ଜଣାନାହିଁ ।

ଏଇ ଅବସ୍ଥାରେ କୋଏର (ନଡିଆ କତା) କାରଖାନାର କିଛି ଶ୍ରମିକ ଆନ୍ଦୋଳନ ଆରମ୍ଭ କରିଦେଲେ । ଯେତେବେଳେ କୁଷ୍ଣଶଙ୍କରନ୍ ସାହେବ ଜାଣିଗଲେ, ଯେ ବରୀଦୁ ସାହେବଙ୍କର କାରଖାନାରେ ଝଗଡା ହୋଇଛି

ଏବଂ ତାର ଫଳ ସ୍ୱରୂପ ଏଣ୍ଟୋନି ଇତ୍ୟାଦିଙ୍କୁ ପୋଲିସ ଧରି ନେଇଛି ଏବଂ ବେଲାୟୁ ଧନ ମରିଯାଇଛି, ସେତେବେଳେ ସେ ବରାଦୁ ସାହେବଙ୍କ ପୁଅ ଛୋଟ ମାଲିକଙ୍କୁ ଅଭିନନ୍ଦନ ଜଣାଇଲେ । ସେଇ ଅବସରରେ ଛୋଟ ମାଲିକ ଏବଂ ମିସ୍ତ୍ରୀ ଉଭୟେ ମିଶି ଖ୍ରୀଷ୍ଟିଆନ୍ ଏବଂ ଇଷବ ଶ୍ରମିକମାନଙ୍କ ମଧ୍ୟରେ ପାର୍ଥକ୍ୟ ସୃଷ୍ଟିକଲେ ।

କୁଟ୍ଟୁପନର ଚା ଦୋକାନ ପାଖରେ, ସୋନି (ଅନ୍ୟ ଏକ ଖ୍ରୀଷ୍ଟିଆନ୍) ର ଚା ଦୋକାନ୍ ଥିଲା । ବରାଦୁ ସାହେବଙ୍କ କାରଖାନାର ମିସ୍ତ୍ରୀ, କିରାଣୀ ଆଦି ଲୋକମାନେ ସୋନିର ଦୋକାନରେ ଚା ପିଉଥିଲେ । କୁଟ୍ଟୁପନର ଦୋକାନରେ ଚା ପିଇବା, ଖବର କାଗଜ ପଢ଼ିବା, ଦୁନିଆର କଥା ଆଲୋଚନା କରିବା ଆଦି ବିଷୟକୁ ସୋନିର ଦୋକାନକୁ ଆସୁଥିବା ଲୋକମାନେ ଘୃଣାର ସହିତ ଦେଖୁଥିଲେ । ସୋନି ସ୍ୱୟଂ କୁଟ୍ଟୁପନର ଦୋକାନ ଆଡକୁ ଅନେଇ ବ୍ୟଙ୍ଗ ସୂଚକ କଥାବାର୍ତ୍ତା କରୁଥିଲା ଏବଂ ଥଟ୍ଟା କରୁଥିଲା । କେବେକେବେ କୁଟ୍ଟୁପନ ମଧ୍ୟ ଏହାର ଜବାବ ଦେଉଥିଲା ।

ବେଲାୟୁ ଧନର ଶବ ଶୋଭାଯାତ୍ରା ପରେ ସୋନିର ଚା ଦୋକାନରୁ ଯେଉଁ ବ୍ୟଙ୍ଗୋକ୍ତି ସବୁ ବାହାରୁ ଥିଲା, ସେଥିରୁ ସାମ୍ପ୍ରଦାୟିକତାର ରଙ୍ଗ ବେଶ ପରିସ୍ଫୁଟ ହୋଇଯାଉଥିଲା । ଆସ୍ତେ ଆସ୍ତେ ଶବ୍ଦ ଜୋର ଏବଂ ବାତାବରଣ ଉତ୍ତପ୍ତ ହେଲା । ଦିନେ ସୋନି ବିରାଟ ରୂପ ଧାରଣ କରି କହିଲା –

'ଇଷବ ଜାତିର ଲୋକଙ୍କ ଆଖିରେ ଅଗ୍ନିକଣା ଅଛି । ଯେତେବେଳେ ଖ୍ରୀଷ୍ଟିଆନ୍ ଲୋକମାନେ ଧନୀ ହେଉଛନ୍ତି ସେତେବେଳେ ଇଷବ ଜାତିର ଲୋକଙ୍କ ଆଖିରେ ଶୁଖୁଆକଣ୍ଟା ପଶିଯାଉଛି । ଏଇଥିପାଇଁ ଖ୍ରୀଷ୍ଟିଆନ୍ ଲୋକଙ୍କ କାରଖାନାରେ କାମ କରୁଥିବା ଶ୍ରମିକମାନଙ୍କୁ ମତାଇ ଗଣ୍ଡଗୋଳ ସୃଷ୍ଟି କରାଯାଉଛି ।'

ପାନାବାଲା ବାସୁ ଗୁଆ କାଟୁ କାଟୁ ଗୁଆକାତି ଉଠାଇ କହିଲା–
'ଇଷବ ଜାତିର ଲୋକଙ୍କ ବିରୁଦ୍ଧରେ ଯେଉଁ ଖେଳ ଖେଳାଯାଉଛି ତାହା ଠିକ୍ ନୁହେଁ । ଯଦି ଖ୍ରୀଷ୍ଟିଆନ୍‌ମାନେ ଭାବୁଛନ୍ତି, ଯେ ଇଷବଜାତିର ଲୋକମାନେ ସେମାନଙ୍କ ନିକଟରେ କାମ କରୁଥିବାରୁ ସେମାନଙ୍କର ପକେଟ ପଇସାରେ ଭର୍ତ୍ତି କରି ଦିଆଯାଉଛି, ତା ହେଲେ ସେଇଟା ଭୁଲ କଥା ।'

ବାସୁର କଥାର ପ୍ରତିଧ୍ୱନି କୁଟ୍ଟୁପନର ଦୋକାନ, ଭୁଷା ଦୋକାନ, ଏବଂ ଡାକ୍ତରଖାନା ପର୍ଯ୍ୟନ୍ତ ପହଞ୍ଚିଗଲା । ଏହା ପୂର୍ବରୁ ସୋନିର ଭାଷଣ ମଧ୍ୟ ବେଶ କ୍ଷୋଭଜନକ ଥିଲା । ଅପରପକ୍ଷ ମଧ୍ୟ ଠିକ୍ ସେହିପରି ଭାବରେ ଉତ୍ତେଜନାମୂଳକ ଭାଷଣ ଦେଲେ । ସଂକ୍ଷେପରେ ଏତିକିମାତ୍ର କୁହାଯାଇ ପାରେ ଯେ, ବାତାବରଣ ଏପରି ହେଲା ଯେପରି, ଯେ କୌଣସି ମୁହୂର୍ତ୍ତରେ ସାମ୍ପ୍ରଦାୟିକ ଦଙ୍ଗା ସୃଷ୍ଟି ହୋଇପାରେ ।

କୁଞ୍ଜଶଙ୍କରନ ସାହେବ ଏକଥା ଜାଣିଗଲେ । ସେ କହିଥିଲେ ଯେ–
'ଖ୍ରୀଷ୍ଟିଆନ୍ ସାହେବମାନଙ୍କୁ ପଇସା ରୋଜଗାର କରିବାକୁ ହେଲେ ଖ୍ରୀଷ୍ଟିଆନ୍ ଶ୍ରମିକମାନଙ୍କ ଜରିଆରେ କାମ୍ କରିବା ଉଚିତ । ଏବଂ ଇଷବ ଜାତିର ସାହେବଙ୍କୁ ଟଙ୍କା ଆୟ କରିବାକୁ ହେଲେ ଇଷବ ଶ୍ରମିକମାନଙ୍କୁ କାମ ଦେବା ଦରକାର । ଏ ହେଉଛି ଠିକ୍ ନ୍ୟାୟ । ମୁଁ ତ ସବୁବେଳେ ଏମିତି କରିଥାଏ । ମୋର ସମସ୍ତ ଶ୍ରମିକ

ହେଉଛନ୍ତି ଇଝବ ଶ୍ରେଣୀର ଲୋକ । କିନ୍ତୁ ଇଝବ ଜାତିର ଲୋକ ନିଜ ପ୍ରତି ମମତା ରଖନ୍ତି ନାହିଁ । ଏହାର ପ୍ରମାଣ ହେଉଛି ଯେ, ମୁଁ ପଇସା ରୋଜଗାର କରୁଛି ଅଥଚ ମୋ ଜାତି ଭାଇମାନଙ୍କ ଆଖିରେ ଶୁଖୁଆ କଣ୍ଟା ଗଳିଯାଉଛି ।'

ଖ୍ରୀଷ୍ଟିଆନ୍ ଶ୍ରମିକମାନେ ଖ୍ରୀଷ୍ଟିଆନ୍ ମାଲିକମାନଙ୍କ ପ୍ରତି ସ୍ନେହ, ମମତା, ସୌହାର୍ଦ୍ଦ୍ୟ ଅକ୍ଷୁର୍ଣ୍ଣ ରଖିବା ଉଚିତ ବୋଲି ବରାଦୁ ସାହେବଙ୍କ କାରଖାନାର ଅଫିସରମାନେ ତଥା ଦୋକାନୀ ସୋନି ପ୍ରଚାର ଚଳେଇଚନ୍ତି । ଠିକ୍ ସେହିପରି ଭାବରେ ଇଝବ ଜାତିର ଶ୍ରମିକମାନେ ଇଝବଜାତିର ମାଲିକଙ୍କ ପ୍ରତି ମମତା ରଖବା ତଥା ଆନୁଗତ୍ୟ ପ୍ରକାଶ କରିବା ଉଚିତ ବୋଲି କୁଞ୍ଚୁଶଙ୍କରନ୍ ସାହେବ, କାଳୀକୁଟ୍ଟୀ, ଏବଂ ଦର୍ଜୀବାଲା ବାପୁ ପ୍ରଭୃତି ପ୍ରଚାର ଆରମ୍ଭ କରିଛନ୍ତି । ଯଦି ଇଝବ ଜାତିର ଶ୍ରମିକମାନେ ଖ୍ରୀଷ୍ଟିଆନ୍ ମାନଙ୍କ କାରଖାନାକୁ କାର୍ଯ୍ୟ କରିବାକୁ ଯାଆନ୍ତି ତା ହେଲେ ସେମାନେ ଅଧିକ ମଜୁରୀ ଦାବୀ କରିବା ଉଚିତ । କୁଞ୍ଚୁଶଙ୍କରନ୍ ସାହେବ ଇତିମଧ୍ୟରେ ଦୁଇ ତିନୋଟି ଇଝବ ଜାତିର ସମ୍ମେଳନରେ ଭାଗ ନେଲେଣି । ନିଜ ଘର ସାମନାରେ ଶ୍ରୀ ନାରାୟଣ ଗୁରୁଙ୍କ ଚିତ୍ର ଟଙ୍ଗା ଗଲାଣି । ଇଝବ ସମାଜର ଉଦ୍ଧାର ସକାଶେ ସେ ଦୁଇଟଙ୍କା ଚାନ୍ଦା ମଧ ଦେଲେଣି । ବରାଦୁ ସାହେବଙ୍କର ବଙ୍ଗଳାକୁ ତ ପ୍ରତ୍ୟେକଦିନ ପାଦ୍ରୀମାନେ ଆସନ୍ତି ।

କୁକୁପନର ଚା ଦୋକାନରେ ବସି ରହି ସେ ପତଳା ଲୋକଟି କହିଲା–

'ଶ୍ରମିକମାନଙ୍କର ଜାତି ନାହିଁ, ଧର୍ମ ନାହିଁ, କି ଦେଶନାହିଁ ।'

ଏଣ୍ଟୋନିର ରୋକି ହୋଇଥିବା ଶବ୍ଦ ଗୁଞ୍ଜରି ଉଠିଲା –

'ଖ୍ରୀଷ୍ଟିଆନ୍ ପୁଞ୍ଜିପତି ହେଉ ବା ଇଝବ ଜାତିର ପୁଞ୍ଜିପତି ହେଉ, ଉଭୟେ ହେଉଛନ୍ତି ପୁଞ୍ଜିପତି । ଠିକ୍ ସେହିପରି ଖ୍ରୀଷ୍ଟିଆନ୍ ହେଉ ବା ଇଝବ ହେଉ, ଉଭୟେ ହେଉଛନ୍ତି ଶ୍ରମିକ ।'

ଏହି ଶବ୍ଦ ଚା ଦୋକାନ, ଛକ ଏବଂ ଶ୍ରମିକ ବସ୍ତିର ପ୍ରତିଟି ଘରେ ଗୁଞ୍ଜରି ଉଠିଲା ।

ବୁଢା ଯୋଶେଫ୍ ଏଲୀର ଘରକୁ ଆସି ଏଲୀକୁ କହିଲା–

'ତୁମର ପୁଅ ଆଉ ମୋ ପୁଅ ଚା ଦୋକାନରେ କଥାବାର୍ତ୍ତା ହେଉଥିଲେ, ଯେ ଶ୍ରମିକ ମାନଙ୍କର କୌଣସି ଜାତି ଆଉ ଧର୍ମର ଆବଶ୍ୟକତା ନାହିଁ । ମାଲିକ ଖ୍ରୀଷ୍ଟିଆନ୍ ହେଉ, ବା ଇଝବ ହେଉ, ବା ନାୟାର ହେଉ, କେହି ଶ୍ରମିକକୁ ବିନା ପରିଶ୍ରମରେ ମଜୁରୀ ଦେବେ ନାହିଁ ।'

'ଏ କଥା ଠିକ୍' – ବୋଲି ଏଲୀ ସ୍ୱୀକାର କଲା ।

'ଯଦି ଜାତି ଓ ଧର୍ମ ନ ରହେ, ତା ହେଲେ - - - - - ?'

'ନ ରହିଲେ କ'ଣ ହେବ ?'

'ମୁଁ ଖ୍ରୀଷ୍ଟିଆନ୍ ନା ତୁମେ - - - - - ?'

'ମାଲିକି ମଧ୍ୟ ହେଉଛନ୍ତି ଖ୍ରୀଷ୍ଟିଆନ୍ । ମାଲିକଙ୍କର ସେ ଚୌକୀଦାର କ'ଣ ଖ୍ରୀଷ୍ଟିଆନ୍? ସେହି ଖ୍ରୀଷ୍ଟିଆନ୍ ଚୌକୀଦାର ଏଣ୍ଟୋନିର ପିତା ଓ ମୋତେ ଧକ୍କା ଦେଇ ବାହାର କରି ଦେଇଥିଲା । ଖ୍ରୀଷ୍ଟିଆନ୍ ମାଲିକ ଦ୍ୱିତୀୟ ମହଲାରେ ଛିଡ଼ାହୋଇ ସେ ଦୃଶ୍ୟ ଦେଖୁନଥିଲେ କି ? ତଥାପି ସେ ଊଁ କି ଚୁଁ କିଛି କହି ନଥିଲେ ।'

ଗର୍କୀ ସେ ଘର ଭିତରେ ଶୋଇରହି ପଚାରିଲା–

'କ'ଣ ସେମାନେ ଆସିଗଲେ ?'
'ବର୍ତ୍ତମାନ ଆସିଯିବେ ।'

**9**

ପ୍ରତି ହପ୍ତାର ଶେଷରେ ଶ୍ରମିକମାନେ ନିଜ ନିଜ ଋଣ ଶୁଝିବାପାଇଁ ମଜୁରୀ ନେଉଥିଲେ । ସେମାନେ କେତେବେଳେ ହେଲେ ଋଣ ସମ୍ପୂର୍ଣ୍ଣଭାବରେ ଶୁଝି ପାରୁ ନଥିଲେ । ଅଥବା, ଋଣ ଶୁଝିବା ପରି ମଜୁରୀ ସେମାନେ ପାଉ ନଥିଲେ ବୋଲି ମଧ୍ୟ କହି ପାରନ୍ତି । ଯଦି କୌଣସି ଶ୍ରମିକ ତାର ଋଣ ପୁରା ଶୁଝିବା ସକାଶେ ପ୍ରସ୍ତୁତ ହେଉଥିଲା, ତା ହେଲେ ଦୋକାନୀ ତାହାକୁ ଠିକ୍ ମନେକରୁ ନଥିଲା ।

ଋଣର କିଛି ଅଂଶ ସବୁବେଳେ ବାକୀ ରହୁ ଏ କଥା ଦୋକାନୀ ସବୁବେଳେ ଚାହୁଁଥିଲା । ତା ନ ହେଲେ ସେ ଦ୍ୱିତୀୟ ଥର ଋଣ ନେବା କଥା ଚିନ୍ତା କରିବ ନାହିଁ । ଉଧାର ନେଇଥିବା ଜିନିଷର ଦାମକୁ ସାମାନ୍ୟ ଭାବରେ ବଢାଇ ଜିନିଷପତ୍ରର ଅନୁଚିତ ଦାମ ଲେଖାଯାଇ ପାରିବ । ଏ ହେଉଛି ବ୍ୟବସାୟର ତନ୍ତ୍ର । ଏହି ଶ୍ରମିକମାନେ ଭୂଷା ଦୋକାନୀ ତଥା ବିଡି ଦୋକାନୀମାନଙ୍କ ପାଖରେ ଚିର ଋଣୀ ଥିଲେ । ସେମାନେ କାମ କରୁଥିଲେ ଏବଂ ଋଣ ଶୁଝିବା ସକାଶେ ମଜୁରୀ ନେଉଥିଲେ ।

ଶନିବାର ଦିନ ସପ୍ତାହକର ମଜୁରୀ ଦିଆଯାଉଥିଲା । ଏଣ୍ଟୋନି ଏବଂ ରକ୍କିକୁ ସେଦିନ ମଜୁରୀ ମିଳିଲା ନାହିଁ । ସେମାନେ କାମ ପୁରା କରି ନଥିଲେ । ମଓାୟୀ ଏବଂ ସାଇମନ୍‌କୁ କିଛି ମିଳିବାର ସମ୍ଭାବନା ଥିଲା । ସେ ଚାରିଜଣ ବ୍ୟକ୍ତି ଅନ୍ୟ ଶ୍ରମିକମାନଙ୍କ ସହ କାରଖାନାର ଅଗଣାରେ ଛିଡା ହୋଇଥିଲେ । ସମସ୍ତଙ୍କ ହାତରେ ଛୋଟ ଛୋଟ ଟୋକେଇ ଥିଲା । ସେ ଦିନ ସେମାନଙ୍କୁ ଦୋକାନରୁ ଉଧାରରେ ଜିନିଷପତ୍ର ମିଳିବାର ଥିଲା । ଏଇଥିପାଇଁ ସେମାନେ ଛୋଟ ଛୋଟ ଟୋକେଇ ଧରି ଆସିଥିଲେ ।

କିନ୍ତୁ ସେ ଦିନ ସମସ୍ତଙ୍କ ଚେହେରାରେ କେମିତି ଗୋଟାଏ ବ୍ୟଗ୍ରତା ଥିଲା– ଯେମିତି କିଛି ଗୋଟାଏ କରିବାର ଉତ୍କଣ୍ଠାର ଝଲକ ଥିଲା । ଗତକାଲି କୁଟ୍ଟପନର ଚା ଦୋକାନରେ ରାତିରୁ ସକାଳ ପର୍ଯ୍ୟନ୍ତ ବିଚାର ଆଲୋଚନା ଚାଲିଥିଲା । ସେଇ ପତଳା ଲୋକ, ପଦ୍ମନାଭନ୍, ଅଙ୍କୁତନ, ପପନ, ଏଣ୍ଟୋନି, ରକ୍କି, ମଓାୟୀ, ଏବଂ ସାଇମନ୍, ସମସ୍ତେ ସେ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ । ସେଦିନ କାରଖାନାରେ ଚାରିପଟେ ଶ୍ରମିକମାନେ ଗମ୍ଭୀର ହୋଇ ତଥା ଫୁସଫାସ ହୋଇ ଏ ସବୁ ଆଲୋଚନା କରୁଥିଲେ ।

ଅଫିସ ଭିତରେ ମଧ୍ୟ ସେ ଦିନ କିଛି ଆଲୋଚନା ଚାଲିଥିଲା । ଦ୍ୱିପ୍ରହର ବେଳେ ପୋଲିସ ଇନ୍‌ସପେକ୍ଟର

କାରଖାନାର ଭିତରକୁ ଯାଇ... । ... ... ସମୟ ପର୍ଯ୍ୟନ୍ତ ଛୋଟ ମାଲିକଙ୍କ ପାଖରେ ରହି କଥାବାର୍ତ୍ତା କରୁଥିଲେ । ମିସ୍ତ୍ରୀ ତ ରୁଦ୍ରସଂହାର ରୂପ ଧାରଣ କରି କାରଖାନାରେ ବୁଲୁଥିଲା । କିରାଣୀ ଏବଂ କେସିଅର ଏମିତି ଗମ୍ଭୀର ମୁଖରେ ଛିଡା ହୋଇଥିଲେ ଯେପରି କି ଅଳ୍ପ ସମୟ ଭିତରେ କିଛି ଗୋଟାଏ ଘଟିବାର ଅଛି ।

ମଜୁରୀ ଦେବାର ସମୟ ହେଲା । ମିସ୍ତ୍ରୀ ବାରଣ୍ଡାକୁ ଆସି ଆଜ୍ଞା ଦେଲା –

'ଆରେ, ମଜୁରୀ ନେବା ଲୋକ ସମସ୍ତେ ଏଇଠି ଆସ ।

'ଏ କଥା କାହିଁକି ମିସ୍ତ୍ରୀ, ଆଜି ଭୀଷଣ ଗମ୍ଭୀରତା ?'–ସାଇମନ ପଚାରିଲା ।

'ତାହେଲେ କେମିତି ହେବା ଦରକାର ? ଆରେ, ତମେମାନେ ଯେମିତି ଲୋକ ସେଥିପାଇଁ ଆଦର ସତ୍କାର ହେବା ଦରକାର ?'

ସାଇମନ କିଛି କହିବାକୁ ଚାହୁଁଥିଲା । କିନ୍ତୁ ମଣ୍ଡାୟୀ ତାକୁ ବନ୍ଦ କରିଦେଲା ।

କେସିଅର ପାଖରେ ଯେଉଁ କିରାଣୀ ବସିଥିଲା ସେ ଗୋଟିଏ ଶ୍ରମିକର ନାମ ବଡ ପାଟିରେ ଡାକିଲା–

'ଗର୍କୀ ଶୋରୀ ! ହାଜର ହେ ?'

'ଆଜ୍ଞା, ହଁ'- ବୁଢା ଶୋରୀ ପଛପଟରୁ ବୁଲିପଡି କହିଲା ।

ସେ କାଖରେ ତାର ଟୋକେଇ ଯାକି, ଯାଇ କେସିଅରର ଟେବୁଲ ପାଖରେ ପହଞ୍ଚିଲା । କେସିଅର କିଛି ରୂପାଟଙ୍କା, ଖୁଚୁରା ପଇସା ଟେବୁଲ ଉପରେ ରଖି ଦେଲେ । ଶୋରୀ ତାକୁ ନେଇ ଗଣିଲା । ତାର ଚେହେରାରେ ଯେପରି କଳା ମେଘ ଘୋଟି ଆସିଲା ।

'ଏ କାହାର ହିସାବ ? କେଉଁଠିକା ହିସାବ ?'

'ଆରେ, ଚାହୁଁଛୁ ତ ନେଇପଳା'- ମିସ୍ତ୍ରୀ ଗର୍ଜ୍ଜନ କରି ଉଠିଲା ।

'ମୋତେ କେହି ଦୟା କରିବାର ନାହିଁ'– ଶୋରୀ ଟଙ୍କା ଗୁଡିକୁ ଟେବୁଲ ଉପରେ ରଖି ଏକଥା କହିଲା–

'ମୋତେ ମୋର ପାରିଶ୍ରମିକ ମିଳିବା ଦରକାର ।'

'ଏ ହେଉଛି ମଜୁରୀ'– କେସିଅର ଗମ୍ଭୀର ହୋଇ କହିଲା ।

'ତା ହେଲେ ହିସାବରେ ତ ଗଣ୍ଡଗୋଳ ହୋଇ ଯାଇଛି, ଆଜ୍ଞା !'

'କ'ଣ ତୁ ମୋତେ ହିସାବ ଶିଖାଇବାକୁ ଆସିଛୁ ?'

'ଶିଖାଇବାକୁ ନୁହେଁ ଆଜ୍ଞା, ଶିଖିବାକୁ । ମୋର ହିସାବ ଅନୁଯାୟୀ ମୋତେ ଆଉ ପାଞ୍ଚଟଙ୍କା ମିଳିବା ଦରକାର ।'

'ସମସ୍ତଙ୍କୁ ମଜୁରୀ ଦେବାପରେ ତୋତେ ତୋର ହିସାବ ବତାଇଦେବି । ବର୍ତ୍ତମାନ ତୁ ଚାଲି ଯା ।'

ଶୋରୀ କିଛି ଦୂରକୁ ଚାଲିଗଲା । କିରାଣୀ ଦ୍ୱିତୀୟ ନାମ ଡାକିଲା –

'କଣ୍ଡନ କୋଇୟପନ !'

'କଣ୍ଡନ କୋଇୟପନ ହାଜିର ହେ ?' - ମିସ୍ତ୍ରୀ ବୁଲିକରି ପୁଣି ପଚାରିଲା ।

'ଆଜ୍ଞା, ହଁ'– ହାତର ଟୋକେଇ ଭୂଇଁରେ ରଖି କୋଚ୍ଚୁପନ, ଜଣେ ପ୍ରେତାତ୍ମା ପରି, କେସିଅରର ଟେବୁଲ ପାଖରେ ଛିଡା ହେଲା ।

କୋଚ୍ଚୁପନ୍ ମଧ୍ୟ ବୁଢା ଥିଲା । ସେ ଶୋରୀ ଅପେକ୍ଷା ଅଧିକ ବୁଢା ଏବଂ ନିତାନ୍ତ ଗାଉଁଲୀ ଥିଲା । ସେ କାରଖାନାର ଆରମ୍ଭରୁହିଁ ସେଠାରେ କାମ କରି ଆସୁଥିଲା । ଯଦିଓ ସେ ବର୍ତ୍ତମାନ ଖୁବ ବୁଢା ହୋଇ ଯାଇଥିଲା ଏବଂ ତାର ଶାରୀରିକ ଶକ୍ତି ନଷ୍ଟ ହୋଇଥିଲା, ତଥାପି ସେ କାମରୁ ଅବସର ଗ୍ରହଣ କରି ନଥିଲା । ଆଉ ସେ ଯଦି କାମ କରୁ ନଥାଆନ୍ତା ତା ହେଲେ ତାର ପରିବାର ଉପାସରେ ରହୁଥାଆନ୍ତେ । ବୁଢା ଉପରେ ପ୍ରାଣପ୍ରାଣୀ ନିର୍ଭର କରି ଚଳୁଥିଲେ । ବୁଢୀ ସ୍ତ୍ରୀ, ବିଧବା ଝିଅ, ଏବଂ ତିନୋଟି ନାତି ନାତୁଣୀ । ବାର୍ଦ୍ଧକ୍ୟ ତଥା ମୃତ୍ୟୁର ମୁକାବିଲା କରି ମଧ୍ୟ ସେ କାମକରି ଚାଲୁଥିଲା ।

କେସିଅର କିଛି ରୂପା ଟଙ୍କା ଏବଂ ପଇସା ଟେବୁଲ ଉପରେ ରଖିଦେଲେ । କୋଚ୍ଚୁପନ୍ ତାକୁ ନେଇ ଗଣିନେଲା । ତାର ହାତ ଓ ସାରା ଶରୀର କମ୍ପିବାକୁ ଲାଗିଲା । ଟଙ୍କା ଏବଂ ପଇସା ତା ହାତରୁ ଖସି ଚାରିଆଡେ ଛିନ୍ନାତି ହୋଇ ପଡିଲା ।

'ହେ ମା କାଳୀ !'- କହି ସେ ଛାତି ପିଟି କାନ୍ଦିବାକୁ ଲାଗିଲା ।

'ତୁ ତୋର ଭଗବତୀକୁ ନେଇ ଏଠାରୁ ଚାଲି ଯା, ରେ !' - ମିସ୍ତ୍ରୀ ଗର୍ଜି ଉଠିଲା । ସେ କୋଚ୍ଚୁପନକୁ ଠେଲିବାକୁ ଆରମ୍ଭ କଲା । ତାର ଲୌହ ମୁଷ୍ଟି କୋଚ୍ଚୁପନର ଗଳା ଉପରକୁ ଉଠିବାକୁ ଆରମ୍ଭ କଲା ।

'ତାକୁ ଆଦୌ ଛୁଅଁନା !' - ଜଣେ ଯେପରି ଦୃଢ ସ୍ୱରରେ କହିଲା !

ମିସ୍ତ୍ରୀ ଆଶ୍ଚର୍ଯ୍ୟ ହୋଇ ପଛକୁ ଅନାଇଲା ।

'ତୁ କିଏସେ ରେ ?'

'ମିସ୍ତ୍ରୀ, ମୁଁ ରଙ୍କୁ- ରଙ୍କୁ– ରଙ୍କୁ ଆଗେଇ ଚାଲିଲା- ରଙ୍କୁକୁ ହଟାଇ ଦେଇ ଏଣ୍ଟୋନି ଆଗେ ଚାଲିଲା । ତାର ସମ୍ଭାଳି ହୋଇଥିବା ଶବ୍ଦ ପୁଣି ଗୁଞ୍ଜରି ଉଠିଲା –

'କେସିଅର ବାହାଦୁର- ଆମେ କାମ କରୁଛେ, ତେଣୁ ଆପଣ ଆମକୁ ମଜୁରୀ ଦେଉଛନ୍ତି । ଆଉ ହିସାବ ପଚାରିଲେ ଭୁଆଁ ବୁଲାଉଛନ୍ତି ଏବଂ ଗଳାରେ ଧକକା ଦେଉଛନ୍ତି କାହିଁକି ?'

'ସେ କଥା ମୁଁ ମଧ୍ୟ ପଚାରୁଛି' - ଶୋରୀ ତାକୁ ସମର୍ଥନ କରି କହିଲା ।

'ପ୍ରତ୍ୟେକ ଲୋକର ହିସାବ ଦେବାକୁ ଆରମ୍ଭ କଲେ ତ ଅଧରାତି ହୋଇଯିବ ।'– କେସିଅର ଅନ୍ୟମନସ୍କ ହୋଇ କହିଲା ।

ଇତିମଧ୍ୟରେ ଅଫିସର ଜଣେ କିରାଣୀ ଆସି କେସିଅରର କାନରେ ଫୁସଫୁସ ହୋଇ କ'ଣ କହିଲା । କେସିଅରର କହିବା ଭଙ୍ଗୀ ବଦଳିଗଲା । ସେ ମର୍ଯ୍ୟାଦା ସହକାରେ କହିଲା –

'ତା ହେଲେ ଠିକ୍ ! ଶୋରୀ, ଏ ଆଡେ ଆସି ଯା, ପ୍ରଥମେ ତୋର ହିସାବ କରି ଦେଉଛି ।' ତା ପରେ ସେ ସେଇ ଖାତାକୁ ଦେଖି କହିଲା –

'ଏ ସପ୍ତାହରେ ତୋର ମଜୁରୀ ହେଉଛି- ଚାରି ଟଙ୍କା ବାଇଶ ପଇସା ।'

'ହଁ' ।

'ସେଥିରୁ 'ମିସ୍ତ୍ରୀ-ପଇସା' ଟଙ୍କେ ପଚିଶ ପଇସା ନେଲି ।'

'ସେ ନେବାଟା କ'ଣ, ବାହାଦୁର ?'

'ଟଙ୍କାରେ ଚାରି ଅଣା ହିସାବରେ ।'

'ବର୍ତ୍ତମାନ ପର୍ଯ୍ୟନ୍ତ ବାର ପଇସା ହିସାବରେ ନେଉଥିଲେ, ବାହାଦୁର ?'

'କିନ୍ତୁ ଏବେ ଠାରୁ ଚାରିଅଣା ନିଆଯାଉଛି ।'

'ହଁ, ମାର ଗୁଳି ସେ କଥାକୁ !'

'କାହିଁକି ସେ ଏକଥା କହିଲା ?' ମିସ୍ତ୍ରୀ ଗର୍ଜି ଉଠିଲା ।

'ଆଉ କ'ଣ କହିଥାଆନ୍ତି ?'

ଏଣ୍ଟୋନି କହିଲା ।

'ଆମର ଏତେ କଷ୍ଟର ପଇସା ଯଦି ମିସ୍ତ୍ରୀ ଏପରି ଶୋଷଣ କରିନିଏ ତା ହେଲେ ଏଇଯ୍ୟା ନକହି ଆଉ କହିଥାଆନ୍ତା କ'ଣ ?'

'ଆରେ, ତୋତେ କ'ଣ ପଚାରିଥିଲି ଏକଥା ?'

'ପଇସା ଛଡାଇନେବା କଥା କହିବାର ଦରକାର କ'ଣ ଥିଲା ?'

'ଆରେ ତୁ ଯଦି ଆଗରେ ପଡ଼ି କଥାବାର୍ତ୍ତା କରୁ ତ - - - - - '

'କହିଲେ କ'ଣ ହେବ ?'– ରକ୍କି ଆଗକୁ ବଢି ଏକଥା କହିଲା । ଏଣ୍ଟୋନି ତା ଛୋଟ ଭାଇକୁ ପଛକୁ ଠେଲି ଦେଇ ଆଗେଇଲା । କେସିଅର ନିଜକୁ ସମ୍ଭାଳି ନେଇ କହିଲା –

'ମିସ୍ତ୍ରୀ, ତମେ ଟିକିଏ ଚୁପ୍ ରହ !' ପୁଣି ସେ ଶୋରୀକୁ କହିଲା–

'ମିସ୍ତ୍ରୀ, ଟଙ୍କାକୁ ଚାରିଅଣା ହିସାବରେ ହିସାବ କରିବା ଯାହା ପଇସା ପ୍ରତି ମଧ୍ୟ ସେଇଯ୍ୟା । ଏହାକୁ କାଟିକରି ମଜୁରୀ ଦିଆଯିବ । ଯଦି ତମମାନଙ୍କର ଏହା ପସନ୍ଦ ନହୁଏ ତା ହେଲେ ମଜୁରୀ ଦିଆଯିବ ନାହିଁ ।'

'ଏହା ପୂର୍ବରୁ ବାହାଦୁର କହି ଦେଉଛି ତ, 'ମାର ଗୁଳି ସେ କଥାକୁ ।' ଏ ଗୁଡାକ ସବୁ କାଟି ନେବା ପରେ ମଧ୍ୟ ସାଢେ ତିନି ଟଙ୍କାରୁ ତ ଅଧିକ ପୁଣି ବାକୀ ରହୁଛି ।'

'ସେଥିରୁ ପୁଣି ଆଠ ଅଣା କାଟି ନେଲୁ ।'

'କାହିଁକି ?'

ମିସ୍ତ୍ରୀ ଗୋଟିଏ ଛୋଟିଆ ନାଲି କାଗଜର ଟୁକୁରା ଶୋରୀକୁ ବଢାଇଦେଲା–

'ନେ, ଏଇଯାକୁ ନେଇ ନେ ।'

'ଏ କ'ଣ ?'

'ଏ ? ଏ ହେଉଛି ଗୋଟିଏ ନାଟକର ଟିକେଟ ।'

'କେଉଁ ନାଟକ ? କାହାର ନାଟକ ?'

'ନାଟକର ନାମ ଚବିଙ୍ଗୁ [1]। ତୁ ଥରେ ଦେଖିନେ ।'

'ଆଗରୁ ମୁଁ ଦେଖିଛି । ଆଉ ଦେଖିବାର ଦରକାର ନାହିଁ ।'

'ତୁ କ'ଣ ମଉାୟ୍ଣୀ 'ଆଶାନ୍' (ଉସ୍ତାତ୍)ର ନାଟକ ଦେଖିଛୁ ?'

'ଆଉ ମୋର ଦେଖିବାର ଦରକାର ନାହିଁ ।'

'ତୁ ନ ଦେଖିବୁ ନାହିଁ, କିନ୍ତୁ ଟିକେଟ ତ ନେଇନେ ।'

'ମୋର ଦରକାର ନାହିଁ ।'

'ଯେତେବେଳେ ସମସ୍ତେ ଟିକେଟ କିଣୁଛନ୍ତି ସେତେବେଳେ ଯଦି ତୁ କହୁ, ଯେ 'ତୋର ଦରକାର ନାହିଁ', ତା ହେଲେ - - - - - '

'ସମସ୍ତଙ୍କ ଏ ଟିକେଟ କିଣିବା ଦରକାର ବୋଲି କିଏ କହିଲା ?'– ପଛରୁ ମଉାୟ୍ଣୀ ଏ ପ୍ରଶ୍ନ କଲା ।

'ଆରେ, ତୁ ସେଠି ଚୁପ୍ ରହ !'– ମିସ୍ତ୍ରୀ ଗର୍ଜି ଉଠି କହିଲା ।

'କ'ଣ ତାହେଲେ ତୋର ଦରକାର ?'– କେସିଅର ଗମ୍ଭୀର ହୋଇ ଶୋରୀକୁ ଏ ପ୍ରଶ୍ନ ପଚାରିଲା ।

'ହଁ । ମାର ଗୁଲି ସେ କଥାକୁ, ଏହା ପରେ ବି ତିନି ଟଙ୍କା ଆଉ କିଛି ପଇସା ବାକି ଅଛି ।'

'ସେଥିରୁ ପୁଣି ଗୋଟିଏ ଟଙ୍କା କାଟି ନିଆଗଲା ।'

'କୋଉଥିପାଇଁ ?'

'ଚାନ୍ଦା ।'

'କୋଉଥିପାଇଁ ଚାନ୍ଦା ?'

'ବଡବାବୁ (ହେଡ କିରାଣୀ)ଙ୍କର ଝିଅ ବାହାଘର ପାଇଁ ।'

'ହେ ଯୀଶୁ !'– ଶୋରୀ ଛାତି ପିଟି କହିଲା ।

'କେସିଅର କହିଲା – ତୁ ଯୀଶୁଙ୍କ ନାମ ନେବୁ ନାହିଁ । ଯଦି ଦେବାକୁ ନ ଚାହୁଁ, ତା ହେଲେ ନ ଦେ । ମୁଁ କହିଦେବି ଯେ, ତୁ ଦେଲୁନାହିଁ ବୋଲି ।'

'ଏହାକୁ ମଧ୍ୟ ଆପଣ ନେଇ ନିଅନ୍ତୁ, ନେଇ ନିଅନ୍ତୁ । ପରେ ଯାହା ବଳିବ, ତାକୁଇ ଦେବେ ।'

'ଶତକଡା 25 ଭାଗ ମଜୁରୀ କମାଇ ଦିଆଗଲା । ତାକୁ କାଟି ଯାହା ବଳିଥିଲା, ତାହା ବର୍ତ୍ତମାନ ଦିଆଗଲା ।'

'ଚେତଲାର ଭଗବତୀ ! ହେ ମା କାଳୀ !'– କୋଚୟ୍ୟପନ୍ କମ୍ପି କମ୍ପି ଟେବୁଲକୁ ଧରି ଭୂଇଁ ଉପରେ ବସି ପଡ଼ିଲା ।

1. ଖ୍ରୀଷ୍ଟିଆନ ମାନଙ୍କ ମଧ୍ୟରେ ପ୍ରଚଳିତ ଗୋଟିଏ ପୁରୁଣା ଧରଣର ନାଟକ ଚବିଙ୍ଗୁ ନାଟକ ।

'ମଜୁରୀ କମ୍ କରିବାକୁ ଦିଆଯିବ ନାହିଁ ।'– ସାଇମନ୍ ପଛରୁ ଚିତ୍କାର କଲା ।

'କିଏ କହିଲା ଏକଥା ?'– ମିସ୍ତ୍ରୀ ଗର୍ଜି ଉଠିଲା ।

'କାମ କଲାବାଲା କହିଛନ୍ତି ଏ କଥା'– ରକ୍କି କହିଲା ।

'ତାହେଲେ ତମେମାନେ ସମସ୍ତେ ବାହାରିଯାଅ । କାରଖାନାରେ ତାଲା ବନ୍ଦ ଘୋଷଣା କରାଯିବ ।'

'ମଜୁରୀ ଦେଇସାରି ତାଲା ବନ୍ଦ କର'- ଜାନୁ (ଜାନକୀ) ପଛରୁ ଚିତ୍କାର କରି କହିଲା ।

'ତୁ କିଏ ସେ ?' - ମିସ୍ତ୍ରୀ ବ୍ୟଙ୍ଗ କରି କହିଲା । ଜାନୁ ଆଗରେ ଆସି ଛିଡା ହୋଇଗଲା । ସେ ବଡ ଅବଜ୍ଞା କରି ପଚାରିଲା –

'ଜାନୁ କିଏ ସେ ଜାଣିନୁ ? ଜାନୁକୁ କ'ଣ ଚିହ୍ନିନୁ ? - - - - - - ଦେଖିଲୁ ଟିକିଏ ଏଆଡେ ।'

'ତୋତେ - - - - - ତୋତେ - - - - '- ମିସ୍ତ୍ରୀ ଏହା କହି ଜାନୁର ଗଳାକୁ ଚିପି ଧରିଲା ।

'ଠାପ୍'- କରି ରକ୍କି ଗୋଟିଏ ଘୁଷି ମିସ୍ତ୍ରୀର ଛାତିରେ ଚଟ୍‌କରି ବସାଇଦେଲା ।

'ମିସ୍ତ୍ରୀର ହାତ ତାର ଗଳାରୁ ଛାଡିଗଲା । ଜାନୁ ମଧ୍ୟ ମିସ୍ତ୍ରୀର ମୁଣ୍ଡରେ ଥାପଡ୍ ମାରିଲା ।

ଅଫିସ ଭିତରକୁ ଚାରି ପାଞ୍ଚ ଜଣ ମୋଟା ବଳୁଆ ଲୋକ ବାହାରୁ ଆସିଲେ । ଚା ବାଲା ସୋନି ଫାଟକ ପାଖରୁ ଚିତ୍କାର କଲା–

–'ହଁ, ତମେମାନେ ସମସ୍ତେ ଫାଟକ ଭିତରକୁ ପଶିଯାଅ, ପଶିଯାଅ ।'

ବାହାରର କିଛି ଲୋକ ଶ୍ରମିକମାନଙ୍କ ଭିତରେ ପଶିଗଲେ । ମାରପିଟ୍ । ଘୁଷି ? ଗୋଇଠା ମାଡ ! ଗର୍ଜନ ତର୍ଜନ ! କାନ୍ଦ ବୋବାଳି !

'ଘୁଷି ଲଗାଅ, ଘୁଷି ଲଗାଅ !'- ରକ୍କି ସେଠାରେ ଚିତ୍କାର କଲା ।

ମଷ୍ଟାସ୍ୱାମୀ, ସାଇମନ୍, ଜାନୁ, ରକ୍କି, ଶୋରୀ, କୋଚ୍ଚସ୍ୱପନ- ସମସ୍ତେ ମାରପିଟ୍ କରୁଥିଲେ । ସେମାନେ ମାଡ ମଧ୍ୟ ଖାଉଥିଲେ ।

କେବଳ ଏଣ୍ଟୋନି ଏକାକୀ ହାତ ବନ୍ଦକରି ଛିଡା ହୋଇଥିଲା । ସେ ମାଡ ମଧ୍ୟ ଖାଉଥିଲା । ଅଫିସ ଭିତରେ ମଧ୍ୟ ଗର୍ଜନ ଆଉ କାନ୍ଦବୋବାଳି ଶୁଣା ଯାଉଥିଲା । ଟେବୁଲ ଓଲଟି ପଡିଥିଲା । ଚେଆର ଆଦି ସବୁ ଭାଙ୍ଗିରୁଜି ଯାଇଥିଲା ।

'ମାରିପକାଅ, ମାରି ପକାଅ !'- ରକ୍କିର ଶବ୍ଦ ଆହୁରି ଜୋରରେ ଶୁଣାଗଲା ।

'ଆରେ ; ପୁଲିସ ଆସୁଛନ୍ତି ।' - ବୋଲି କେହି ଜଣେ ଚିତ୍କାର କଲା ।

ଏଣ୍ଟୋନି ହସିବାକୁ ଲାଗିଲା ।

• • •

ଅଧରାତି ବିତି ଯାଇଥିଲା । ଗର୍କୀର ଘର ବାରଣ୍ଡାରେ ଏଲୀ ଏବଂ ଅନ୍ନା ଶୋଇ ରହିଥିଲେ । ବାରଣ୍ଡାରେ କିରାସିନୀ ଡିବିର ତେଲ ସରିଯାଇଥିବାରୁ ସେଇଟା ପ୍ରେତାତ୍ମା ଭଳି ହସି ଉଠୁଥିଲା ।

'ଆରେ, ସେମାନେ କ'ଣ ଆସିଗଲେ ?'

କିଛି ଉତ୍ତର ମିଳିଲା ନାହିଁ ।

'ହୁହୁ' - - - - 'ହୁହୁ' - - - - 'ହୁହୁ' - ଦୂରରେ କୌଣସି ଗଛର ଡାଳରେ ପେଚାଟିଏ ବସି ରାବୁଥିଲା ।

'ସେମାନେ କ'ଣ ଆସିଗଲେ ?' - ନିଦ୍ରିତ ଅବସ୍ଥାରେ ଗର୍କୀ ଚାଲି ଚାଲି ଆସି ବାରଣ୍ଡାରେ ପହଞ୍ଚିଗଲା ।

ସେମାନେ କ'ଣ ଆସିଗଲେ ?' - କହି ଗର୍କୀ ଅଗଣାକୁ ଓହ୍ଲାଇ ଆସି ଛୋଟେଇ ଛୋଟେଇ ଚାଲିବାକୁ ଆରମ୍ଭ କଲା ।

'କ'ଣ ଆସିଗଲେ ?' - ପୁଣି ଗଳିରେ ସେ ପ୍ରଶ୍ନ ଶୁଣାଗଲା ।

ଏଲୀ ପାଗଳୀ ପରି ଉଠି ଛିଡା ହୋଇଗଲା । ପାଗଳୀ ପରି ସେ ପଚାରିଲା -

'କେଉଁଠି ? କ'ଣ ଚାଲିଗଲେ ?'

ସେ ଅଗଣା ଉପରକୁ ଡେଇଁ ପଡିଲା ।

'କ'ଣ ଚାଲିଗଲେ ?'- କହି ସେ ଦୌଡିଲା ।

'କ'ଣ ଆସିଗଲେ ?'

'କ'ଣ ଚାଲିଗଲେ ?'

'ହୁହୁ' - - - - - 'ହୁହୁ' - - - - - 'ହୁହୁ' - - - - - ପେଚାଟି ରାବୁଥିଲା ।

10

'ଯାଅ ନାହିଁ , ଯାଅ ନାହିଁ ' - ଏଲୀ କାନ୍ଦି କାନ୍ଦି, ଗର୍କୀର ପଥରୋଧ କଲା ।

'ତୁମେ ଚାଲିଯାଅ । ମୋର ପୁଅମାନଙ୍କୁ ମୋତେ ଦେଖିବାକୁ ଦିଅ ।' - କହି ଗର୍କୀ ଆଗେଇଲା ।

'ଯାଅ ନାହିଁ ' - ଏଲୀ କାନ୍ଦି କାନ୍ଦି ଗର୍କୀର ଗଳାରେ ଲୋଟି ପଡିଲା । ସେ ବ୍ୟାକୁଳ ହୋଇ ପ୍ରାର୍ଥନା କଲା -

'ସେମାନେ ତ ଆସିଯିବେ - ତମେ ଆଦୌ ଯାଅ ନାହିଁ ।'

ଗର୍କୀର ଶରୀର ଅବସନ୍ନ ହୋଇ ପଡିଥିଲା । ସେ ରାସ୍ତା ଉପରେ ବସିପଡିଲା । ଏଲୀ ତାକୁ ଉଠାଇ ସାଷ୍ଟାମ କଲା ।

'ଆସିବେ - ସେମାନେ ନିଶ୍ଚୟ ଆସିବେ ?' - ଗର୍କୀ ଆକାଶକୁ ଅନାଇ ପ୍ରଶ୍ନ କଲା ।

'ଆସିବେ - ସେମାନେ ନିଶ୍ଚୟ ଆସିବେ ।'

'ସେମାନେ ଆସିବା ପର୍ଯ୍ୟନ୍ତ - - - - ମୁଁ ଏଇଠି ଶୋଇ ରହେ ।' ଏହାକହି ସେ ମାଟି ଉପରେ ଶୋଇ ପଡିଲା । ଏଲୀ ଗର୍କୀର ମୁଣ୍ଡକୁ ଉଠାଇ ନିଜ କୋଳ ଉପରେ ରଖିଲା ।

'ଏଲୀ, - - - - - ଯେତେବେଳେ ସେମାନେ ଆସିବେ - - - - -' ଏହାକହି ସେ ଏଲୀର ହାତକୁ ଧରି ନିଜ ଛାତି ଉପରେ ରଖିଲା ।

'ହେ ଯୀଶୁ !' -ସେ ଏହା କହି ଥରେ ଛଟପଟ ହେଲା । ମୁହଁ ଖୋଲିଗଲା । ଆଖି ମଧ୍ୟ ବନ୍ଦ ହୋଇଗଲା

'ହେ ଯୀଶୁ !' - ଏଲୀର ଦୁଃଖ ବହୁଗୁଣରେ ପରିଣତ ହେଲା । ସେ ପଛଆଡେ ଓଲଟି ଗଡି ପଡିଲା ।

'ବାପା ! ମା !' - କହି ଅନ୍ନା ଦୌଡି ଆସିଲା ।

ସେ ବଡ ପାଟିକରି କାନ୍ଦିବାକୁ ଲାଗିଲା ।

ପଡୋଶୀମାନେ ସଜାଗ ହୋଇ ଦୌଡି ଆସିଲେ । ସକାଳ ହେଉ ହେଉ ଗର୍କୀର ଜଡ ଶରୀର ସହିତ ବୋହୋସ ହୋଇଥିବା ଏଲୀକୁ ଘରକୁ ଆଣି ବାରଣ୍ଡାରେ ଶୁଆଇ ଦିଆଗଲା । ଅନ୍ନା ତାର ବାପାର ଜଡଶରୀର ପାଦ ପାଖରେ ଗାଲରେ ହାତରଖି ବସିଥିଲା । ସେ କାନ୍ଦି ନ ଥିଲା । ଏଲୀ ବାରମ୍ବାର ଚେଇଁ ଉଠୁଥିଲା । ସେ ପ୍ରାୟ ସ୍ୱପ୍ନ ଅବସ୍ଥାରେ ରହି ପଚାରୁଥିଲା -- 'କ'ଣ ସେ ଚାଲିଗଲେ ? କ'ଣ ଚାଲିଗଲେ ?'

ମାତା, ପିତା, ଏବଂ ବନ୍ଧୁମାନଙ୍କୁ ଛାଡି ଜାତି କୁଟୁମ୍ବ ଏବଂ ଗାଁ ବାଲାଙ୍କୁ ତିରସ୍କାର କରି, ପ୍ରାୟ ଅର୍ଦ୍ଧରାତ୍ରି ସମୟରେ ସେମାନେ ବାହାରି ପଡିଲେ । ତା ହାତ ଧରି ସେ ବହୁତ ଦୂର ଚାଲିଗଲା । - ଦୁଃଖ ଏବଂ ବାଧାବିଘ୍ନର ରାସ୍ତା ଉପରେ । ବିଘ୍ନର କାରଣ ହେଉଛି ଦୁଇଟି ଆତ୍ମା ପରସ୍ପର ମଧ୍ୟରେ ମିଳିତ ହୋଇ ଏକ ହୋଇ ଯାଇଥିଲେ । ସେମାନଙ୍କର ଜୀବନର ତିକ୍ତ ମଧୁର ଅଭିଜ୍ଞତା ଅନେକ ସୁନ୍ଦର ହୋଇଯାଇଥିଲା ।

'କ'ଣ ଚାଲିଗଲେ ? କ'ଣ ଚାଲିଗଲେ ?' ସେ ଶୂନ୍ୟକୁ ଅନାଇ ଏ କଥା ପଚାରି ଚାଲିଥିଲା ।

କେହି କୌଣସି ଉତ୍ତର ଦେଲେ ନାହିଁ । ଅନ୍ନା ସେ ସମୟରେ ମଧ୍ୟ ମୁହଁ ଗମ୍ଭୀର କରି ବସିଥିଲା । ଜୀବନର ଗୋଟିଏ ଜୁଆର ଉଠି ଭଟ୍ଟା ପଡିଲା । ଏବଂ ଆଉ ଗୋଟିଏ ଉଠିବାକୁ ବାକି ଥିଲା ।

• • •

ପୁଲିସ ଏଣ୍ଟୋନି, ରହିମ,ମନ୍ତାୟୀ, ସାଇମନ ତଥା ବୁଢା କୋଚୟପନ, ଶୋରୀ ଆଦିଙ୍କୁ ନେଇ ହାଜତରେ ରଖିଲା । ସେମାନଙ୍କୁ ହାଜତରେ ରଖିବା ସମୟଠାରୁ ସକାଳ ପର୍ଯ୍ୟନ୍ତ ସେମାନଙ୍କର କାନ୍ଦ, ଚିତ୍କାର ଶୁଣାଯାଉଥିଲା ବୋଲି ପଡୋଶୀମାନେ କହୁଥିଲେ ।

ଯେତେବେଳେ ସକାଳ ହେଲା ସେତେବେଳେ ସାରା ଆଲପୁଷା ସହରରେ ଏବଂ ଆଖପାଖରେ ଗୋଟିଏ ତୋଫାନ ପ୍ରବଳ ବେଗରେ ବହିଗଲା ।

'ଆମେ ସମସ୍ତେ ମରିଗଲୁ ଭାଇ, ମରିଗଲୁ ।' — ଗଳିରୁ ସଡକ ଆଡକୁ ଲୋକମାନଙ୍କର ଯେଉଁ ଭିଡ ବଢୁଥିଲା, ସେତେବେଳେ ଜଣେ ଲୋକ ଆଉ ଜଣକୁ ଏ କଥା କହିବାର ଶୁଣାଗଲା ।

'ତିଳ ତିଳ ହୋଇ ମରିବା ଅପେକ୍ଷା ଥରେ ମରିବା ଯଥେଷ୍ଟ ଭଲ' ବୋଲି - ଅନ୍ୟ ଜଣେ ଶ୍ରମିକ ତାର ସମର୍ଥନ କଲା ।

'ଆମେ ସମସ୍ତେ ମିଳିମିଶି ରହିଲେ, ଆମକୁ ମାରିଲାବାଲା କିଏ ଅଛି ?'- ବୋଲି ତୃତୀୟ ବ୍ୟକ୍ତି ଜଣକ ପଚାରିଲା ।

'ଆମେ ସମସ୍ତେ ଏକା ସଙ୍ଗରେ ଯିବା ଉଚିତ, ଏକା ସାଙ୍ଗରେ' - ଅନ୍ୟ ଗୋଟିଏ ଲୋକ ଜୋରରେ ଚିତ୍କାର କଲା ।

'ଏକା ସାଙ୍ଗରେ । ଆମେ ସମସ୍ତେ ଏକା ସାଙ୍ଗରେ' - ସମସ୍ତେ ସ୍ୱରରେ ସ୍ୱର ମିଳାଇଲେ ।

ଏହିଭଳି ଭାବରେ ସାରା ରାସ୍ତାରେ ଶ୍ରମିକ ମାନଙ୍କର ଭିଡ ଜମିଗଲା । ହଜାର ହଜାର ଲୋକଙ୍କର ଗରମ ନିଶ୍ୱାସ ଉପରକୁ ଉଠିଲା । ହଜାର ହଜାର କଣ୍ଠରୁ ନିସୃତ ହେଉଥିବା ପ୍ରତିଜ୍ଞା ଏକାଠି ମିଳିତ ହୋଇ ମେଘର ଗର୍ଜ୍ଜନ ପରି ଗୁଞ୍ଜରି ଉଠିଲା ।

ସେଇ ଲୋକ ! - ସେଇ ପତଳା ଲୋକ ! ସେଇ ସମୟରେ ସେ ଲୋକ ବିଜୁଳି ଭଳି ଦୌଡୁଥିଲା । ବରାଦୁ ସାହେବଙ୍କର କାରଖାନାର ଫାଟକ ନିକଟରେ ଛିଡା ହୋଇଥିବା ମିସ୍ତ୍ରୀ, ସେଇ ପତଳା ଲୋକଟିକୁ ଇଶାରା ଦେଇ ଛୋଟ ମାଲିକଙ୍କୁ କହିଲା ଯେ -

'ସେ - ସେଇ ହେଉଛି ନାଟର ଗୋବର୍ଦ୍ଧନ !'

କାରଖାନାର ଫାଟକ ଖୋଲା ହୋଇଥିଲା । କିନ୍ତୁ ଶ୍ରମିକମାନେ ଭିତରକୁ ଗଲେ ନାହିଁ । ରାସ୍ତାର କୋଣରେ, ଦୋକାନର ସାମନାରେ, ଗଛତଳର ଛାଇରେ, ବନ୍ଦରରେ,ବସ ଷ୍ଟାଣ୍ଡରେ ଶ୍ରମିକମାନେ ଦଳଦଳ ହୋଇ ଛିଡା ହୋଇଥିଲେ ।

'ଗର୍ଜ୍ଜୀ ମରିଗଲା !' - ଏ କଥା ସମସ୍ତେ ଫୁସଫୁସ ହେଉଥିଲେ । ବହୁତ ଶୀଘ୍ର ଏ କଥା ଚାରିଆଡେ ରାଷ୍ଟ୍ର ହୋଇଗଲା । ଯେତେବେଳେ ଏ କଥା ବ୍ୟାପିଗଲା, ସେତେବେଳେ ତାର ରୂପ ମଧ୍ୟ ବଦଳିଗଲା ।

'ଗର୍ଜ୍ଜୀ ମରିଗଲା !'

'ଗର୍ଜ୍ଜୀ କିଏ ?'

'ଗର୍ଜ୍ଜୀ ? ସେ ହେଉଛି ଏଣ୍ଟୋନି ଏବଂ ରକ୍କିର ବାପା ।'

'ଏଣ୍ଟୋନି ଏବଂ ରକ୍କିକୁ ତ ସମସ୍ତେ ଜାଣିଥିଲେ,ସେମାନଙ୍କ ବାପାକୁ ମାରି ଦିଆଗଲା ? କିଏ ମାରିଲା ?'

'ଏଣ୍ଟୋନିର ବାପାକୁ ମାରିଲା କିଏ ?'

ସମସ୍ତେ ପ୍ରଶ୍ନ କଲେ । କିନ୍ତୁ କେହି ଉତ୍ତର ଦେଲେ ନାହିଁ ।

ସମସ୍ତେ ଏଣ୍ଟୋନିର ଘର ଆଡକୁ ଚାଲିଲେ । ସେତେବେଳେ ମଧ୍ୟ ଲୋକମାନେ ଫୁସଫାସ ଆଲୋଚନା କରୁଥିଲେ । ସେ ମଧ୍ୟ ଚାରିଆଡେ ବ୍ୟାପିଗଲା ।

'ବର୍ତ୍ତମାନ ଯଦି ଆମ୍ଭେମାନେ ଚୁପ୍ ରହିଯାଉ ତାହେଲେ ଆମ୍ଭମାନଙ୍କୁ ମଧ୍ୟ ଏଭଳି ମାରି ଦିଆଯିବ ।' - ଗୋଟିଏ ଶ୍ରମିକ ଏ କଥା ପ୍ରଶ୍ନ କଲା -

'ଚୁପ୍ ରହିବା ବ୍ୟତୀତ ଆଉ କରିବା କ'ଣ ?'

'କ'ଣ କରିବା ? - ଆମେ ସମସ୍ତେ ସେଇଠି ପହଞ୍ଚିବା - ଆଉ କ'ଣ କରିବା ।'

'ପହଞ୍ଚିବା ପରେ କ'ଣ କରିବା ?'

'ପହଞ୍ଚିବା ପରେ ? - - - - - ସେଇଠି କୁହାଯିବ ।'

ଏଣ୍ଟୋନିର ଘର ପାଖରେ ବିରାଟ ଜନସମୁଦ୍ର ଦେଖାଗଲା । ଆଖପାଖରେ କିଛି ଲୋକ ସେହି ଜନ ସମୁଦ୍ରରେ ମିଳିତ ହେଉଥିଲେ ।

'ଏଣ୍ଟୋନିର ଏବଂ ରକ୍କିର ବାପାକୁ ମାରି ପକାଇଲା' – ବୋଲି ସମସ୍ତେ ଫୁସଫୁସ ହେଉଥିଲେ ।

'କିଏ ?'

'କିଏ ? - - - - - - ମୂଷାକୁ ମାରେ କିଏ ? କୁକୁଡାକୁ ଧରେ କିଏ ?'

ଅନ୍ଧ ଉଠି ଚାରିଆଡକୁ ଦେଖିଲା । ଏହା ପୂର୍ବରୁ ସେ ଏତେ ଅଧିକ ଲୋକଙ୍କୁ କେବେ ଦେଖି ନଥିଲା । କେମିତି ଏ ରାଗ ? ସେମାନେ କାହିଁକି ଏତେ ରାଗିଛନ୍ତି ? ଅନ୍ଧକୁ ଲାଗିଲା ଯେମିତି ତାର ପିତାର ଜଡ ଶରୀରରୁ ହଜାର ହଜାର ପିଶାଚ ଜନ୍ମ ହୋଇଛନ୍ତି ।

ସେ ଅଗଣାକୁ ଓହ୍ଲାଇ ଆସି ଲୋକମାନଙ୍କର ଭିଡ ଭିତରେ ଚାଲିବାକୁ ଆରମ୍ଭ କଲା । ଗୋଟିଏ ଶ୍ରମିକ କହିଲା –

'ସେ ହେଉଛି ଏଣ୍ଟୋନି ଏବଂ ରକ୍କିର ଭଉଣୀ ।'

ଦ୍ୱିତୀୟଜଣକ ତା ସହିତ ଏକମତ ହୋଇ ପଚାରିଲା

'ଝିଅ, ତୁ କୁଆଡେ ଯାଉଛୁ ?'

'ମୋ ବଡ ଭାଇ, ଏବଂ ମଝିଆ ଭାଇଙ୍କୁ ଡାକିବାପାଇଁ ଯାଉଛି ।'

ଶୁଣିବା ଲୋକମାନେ ସହାନୁଭୂତିର ସହିତ ହସୁଥିଲେ । ଗୋଟିଏ ଲୋକ ପଚାରିଲା -

'ଝିଅ, ତୁ ଗଲେ ସେମାନେ କ'ଣ ଆସିବେ ?'

'ହଁ, ଆସିବେ । ମୁଁ କହିଲେ ମୋର ଦୁଇଜଣ ବଡଭାଇ ଆସିବେ ।'

'ପୁଲିସ ସେମାନଙ୍କୁ ଛାଡିବ ନାହିଁ, ଝିଅ !'

'ଛାଡିବ । ମୁଁ କହିଲେ ପୁଲିସ୍ ଛାଡିଦେବ । ମୁଁ କହିବି, ଯେ ସେମାନେ ମୋର ବଡ ଭାଇ । ଏବଂ ଘରେ ମୋ ବାପା ମରି ପଡିଛନ୍ତି ।' ଶୁଣିବାବାଲା ପୁଣି ହସିଲେ । ଅନ୍ଧ ଚାଲିଗଲା ।

କିଛିଦୂର ଗଲାପରେ ଭିଡରେ ଗୋଟିଏ ସ୍ପନ୍ଦନ ହେଲା । କିଛି ଫୁସଫୁସ ଶୁଣାଗଲା - 'ହଁ, ଆସିଗଲେ ! ସେମାନେ ଆସିଗଲେ !'

'କ'ଣ ଆସିଗଲେ ? ମୋ ପୁଅମାନେ ଆସିଗଲେ ?' – ଏଲୀ ଖୁସି ହୋଇ ଉଠିଲା । ସେ ଅଗଣାକୁ ଓହ୍ଲାଇ ଦୌଡିଲା –

'କ'ଣ ଆସିଗଲେ ? ଆସିଗଲେ ?'

ସମସ୍ତେ ଏଲୀକୁ ରାସ୍ତା ଦେଲେ । ଏଣ୍ଟୋନି ଏବଂ ରକ୍କି ଏଲୀକୁ ସାଷ୍ଟାମ କରି ଏବଂ ହାତ ଧରି ଘରକୁ ପହଞ୍ଚିଲେ । ସେମାନଙ୍କ ପଛରେ ସେହି ପତଳା ଲୋକଟି ଆସୁଥିଲା । ଯେତେବେଳେ ସେମାନେ ଘର ଭିତରକୁ ପଶିଲେ ସେତେବେଳେ ସେ ଲୋକ ଭିଡ ଭିତରେ ହଜିଗଲା ।

ଏଲୀ ଏବଂ ଅନ୍ନା ମୃତ ଶରୀରକୁ ଛାତିରେ ନେଇ କ୍ରମାଗତଭାବେ କାନ୍ଦୁଥିଲେ । ରଙ୍କି ଆଖିରୁ ଲୁହ ପୋଛିଲା ।

ଏଣ୍ଟୋନି କେବଳ ବୁଲି ବୁଲି ଦେଖୁଥିଲା ।

'କ'ଣ ପୁଲିସବାଲା ସେମାନଙ୍କୁ ଛାଡିଦେଲା ?'– ଜଣେ ଶ୍ରମିକ ପ୍ରଶ୍ନ କଲା ।

'ପୁଲିସବାଲା ତ ସମସ୍ତ ବ୍ୟବସ୍ଥା କରି ସେଠାରେ ଛିଡା ହୋଇଥିଲା । ଶବକୁ ଦେଖି ସାରିବା ପରେ ସେମାନଙ୍କୁ ପୁଣି ବାନ୍ଧି କରି ନେଇଯିବ ।'

ପାଦ୍ରୀ ଆସିଲେ । କ୍ରିୟା କର୍ମ ଶେଷ ହେଲା । ଶବକୁ କାସ୍‌କେଟ୍ ଉପରେ ରଖାଗଲା ।

'କ'ଣ ଚାଲିଗଲେ ? - - - - - ମୋତେ ଏଠାରେ ଛାଡି ଚାଲିଗଲେ ?' - ଏଲୀ ପୁଣି ବେହୋସ ହୋଇଗଲା ।

ଅନ୍ନା ଏଲୀକୁ ସମ୍ଭାଳି ନେଲା ।

ଶ୍ମଶାନକୁ ଶବ ନିଆଗଲା ବେଳେ ତାଙ୍କୁ ଯଥେଷ୍ଟ ସମ୍ମାନ ସହକାରେ ନିଆଯାଇଥିଲା । କାସକେଟର ପଛରେ ଏହି ବିରାଟ ଜନସମୁଦ୍ର ଗଭୀର ଦୁଃଖରେ ମ୍ରିୟମାଣ ହୋଇ ଚାଲିଥିଲେ ।

ଛକଠାରେ ଛିଡା ହୋଇଥିବା ଜଣେ ଲୋକ ଅନ୍ୟ ଜଣେ ଶ୍ରମିକକୁ ପଚାରିଲା –

'କିଏ ମରିଗଲା ?'

'ଏଣ୍ଟୋନିର ବାପା ।'

'ଏଣ୍ଟୋନି କିଏ ?'

'ଏଣ୍ଟୋନିକୁ କ'ଣ ଜାଣ ନାହିଁ ?' - ଶ୍ରମିକ ଜଣକ ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

'ସେ କ'ଣ କାରଖାନାର ମାଲିକ ?'

'ଆରେ ମାଲିକର ବାପା ମରିଗଲେ ମଧ୍ୟ ଆମେ ଏଭଳି ପଛରେ ଚାଲିବୁ ନାହିଁ ?'

'ତା ହେଲେ ସେ କିଏ ?'

'ସେ ! ସେ ଆମର ନେତା ! ତାଙ୍କର ବାପା ମରିଯାଇଛନ୍ତି ।'

ଶ୍ମଶାନକୁ ଯାଉଥିବା ଶୋଭାଯାତ୍ରା ବରୀବୁ ସାହେବଙ୍କର ବଙ୍ଗଳାର ସାମନା ଦେଇ ଗଲା । ବାରଣ୍ଡାରେ ଛିଡା ହୋଇ ବରୀବୁ ସାହେବ ଥରେ ସେ ବିରାଟ ଜନ ସମୁଦ୍ରକୁ ଦେଖିନେଲେ । ଏବଂ ସଙ୍ଗେ ସଙ୍ଗେ ନିଜର କୋଠରୀ ଭିତରକୁ ଚାଲିଗଲେ । ଛୋଟ ମାଲିକ ସେଠାରେ ଛିଡା ହୋଇଥିଲେ । ସେ ଅଗଣା ଭିତରେ ଛିଡା ହୋଇଥିବା ମିସ୍ତ୍ରୀକୁ ରାଗି ଦାନ୍ତ କଡ ମଡ କରି କ'ଣ ସବୁ କହୁଥିଲେ ।

ଶୋଭାଯାତ୍ରାର ପଛରେ ସେଇ ପତଳା ଲୋକଟି ଏକୁଟିଆ ଆସୁଥିଲା । ତାକୁ ଛୋଟ ମାଲିକଙ୍କୁ ଦେଖାଇ ମିସ୍ତ୍ରୀ କହିଲା ଯେ–

'ଏ ହେଉଛି ସେହି ନାଟର ଗୋବର୍ଦ୍ଧନ ।'

## 11

ସେ ଲୋକଟି କିଏ ? ସେଇ ପତଳା ଲୋକ ?

**ଜଣେ ଭାବୁକ ଶ୍ରମିକ ଉତ୍ତର ଦେଲା ସେ ହେଉଛି ହାଓ୍ବା, ଗରମ ପବନ । ଅନ୍ୟଜଣେ ଶ୍ରମିକ କହିଲା, ସେ ହେଉଛି ଗୋଟିଏ ଝଡ ।**

ପବନ ପରି ଛପି ଛପି ସେ ଗଳିରେ ଯାତାୟତ କରୁଥିଲା, ଶ୍ରମିକମାନଙ୍କ ଘରେ ସେ ପଶି ଯାଉଥିଲା । ଚା ଦୋକାନ ଓ ପାନ ଦୋକାନରେ ଅଟକି ଯାଉଥିଲା । କିନ୍ତୁ ସେ ପବନରେ ଥଣ୍ଡା ନଥିଲା । ସେ ପବନରେ କାହାର ନିଦ ଆସୁନଥିଲା ।

ସେ ପବନରେ ଗରମ ଥିଲା । ସେ ପବନ ଶୋଇବା ଲୋକକୁ ଉଠାଇ ଦେଉଥିଲା । ଜଳନ୍ତା ନିଆଁକୁ ଆହୁରି ପ୍ରଜ୍ୱଳିତ କରୁଥିଲା । ତଳେ ପଡିଥିବା ଲୋକକୁ ଉଠାଉ ଥିଲା । ଶାନ୍ତିରେ ଅଶାନ୍ତି ସୃଷ୍ଟି କରୁଥିଲା ଏବଂ ଅନେକ ସମୟରେ ସନ୍ତୋଷରେ ଅସନ୍ତୋଷ ମିଶାଇ ଦେଉଥିଲା ।

ସେ କିଏ ? ସେଇ ପତଳା ଗାଉଁଲୀ ଲୋକଟି ବିଷୟରେ କାହାରିକୁ କିଛି ହେଲେ ଜଣା ନଥିଲା । ଯଦି କେତେବେଳେ ତାକୁ ଏ ସମ୍ପର୍କରେ ପ୍ରଶ୍ନ କରାଯାଇଥିଲା, ତା ହେଲେ ସେ କୌଣସି ନା କୌଣସି ବାହାନାକରି ସେଠାରୁ ଖସି ଯାଉଥିଲା । ଏଣୁ ସମସ୍ତେ ତାକୁ 'ପବନ' ବୋଲି ଡାକିବାକୁ ଲାଗିଲେ । ସେଇଟା ତା ପାଇଁ ସାର୍ଥକ ନାମ ଥିଲା । ପବନ ! - ଗରମ ପବନ ! - ତୋଫାନ ସୃଷ୍ଟି କରିବା ସକାଶେ ଆସିଥିବା ଛୋଟ ପବନ !

ସେଇ ପବନ କେବେ କେବେ ଲୁଚି ଛପି କୁଞ୍ଜୁଶଙ୍କରନଙ୍କ କାରଖାନାରେ ମଧ୍ୟ ପଶି ଯାଉଥିଲା । ଦିନେ କାଳୀକୁଟ୍ଟୀ କୁଞ୍ଜୁକୁ ପଚାରିଲା -

**'କୁଞ୍ଜୁ, ଏଠିକୁ ଯିବା ଆସିବା କରୁଥିବା ଲୋକଟି କିଏ ?'**

**'ଏଠିକୁ କିଏ ଆସୁଛି ?'**

**'ପାଗଳ ପରି ଜଣେ ଲୋକ ଏଠିକୁ ଆସୁଛି ? ସେ କିଏ ?'**

**'ସେ ? - - - - ହଁ, ସେ । ସେ ଏଠିକୁ ହିଁ ଆସେ !'**

**'ସେ ଯଦି ଏଇଠିକୁ ହିଁ ଆସୁଛି ତା ହେଲେ ତମେମାନେ କାହିଁକି ତା ସହିତ ଲୁଚି ଛପି କଥାବାର୍ତ୍ତା କରୁଛ ?'**

'ଆମ୍ଭେମାନେ ଅନେକ ସମୟରେ ତା ବକ୍‌ବକ୍ ବା ଆଜେବାଜେ କଥାବାର୍ତ୍ତା ଶୁଣିବାକୁ ଯାଉଁ ।'

'ଯଦି ଆଜେବାଜେ କଥା ବା ଗପ ଶୁଣିବାର ଇଚ୍ଛାଥାଏ ତାହେଲେ ରାସ୍ତାରେ ଯାଇ ଶୁଣିବା ଦରକାର, କାମ ସମୟରେ ଛିଡା ହୋଇ ଶୁଣିବାର ଦରକାର ନାହିଁ ।'

'ଯଦି ସେ ଆସେ, ତାହେଲେ ଆମ୍ଭେମାନେ କ'ଣ କରିବା ?'

'ତମେମାନେ ତା କଥା ଶୁଣିବାରୁ, ସେ କଥାବାର୍ତ୍ତା କରୁଛି ସିନା ?'

'ଯେତେବେଳେ ସେ କଥାବାର୍ତ୍ତା, ଗପସପ କରୁଛି, ଆମ୍ଭେମାନେ ଆଉ ନ ଶୁଣି ରହନ୍ତୁ ବା କିପରି ?'

'ସେ ବିଚାରାର କେହି ନାହିଁ, ସେଇ କଥା ଚିନ୍ତା କରି ।'

'ଭବିଷ୍ୟତରେ ସେ ଯେମିତି ଏଠିକୁ ନ ଆସେ ସେ କଥା କହିଦେବ ।'

'ସେ ଆସିଲେ କ'ଣ ହେବ ?'

'ଆସିଲେ ତ ! - - - - - ଆସିଲେ କ'ଣ ହେବ, ସେ କଥା ଦେଖେଇ ଦେବି ।'

ସେ ଦିନ ମଧ୍ୟ ସେ ଆସିଥିଲା - ସେ ଗରମ ଉତ୍ତପ୍ତ ପବନ । ପୁରୁଷ ଓ ସ୍ତ୍ରୀ ଶ୍ରମିକମାନେ ତାର ଚାରିପଟେ ଜୁଟିଗଲେ । ପ୍ରତ୍ୟେକ ଶ୍ରମିକ ତାକୁ କିଛି ନା କିଛି କହିବାକୁ ଚାହୁଁଥିଲେ । ତାର ମଧ୍ୟ ସମସ୍ତଙ୍କୁ କିଛି କହିବାର ଥିଲା । ଶ୍ରମିକମାନେ ଯାହା କହିଲେ, ସେ ମନଦେଇ ଶୁଣିଲା । ସେ ଯାହା କହିଲା - ଶ୍ରମିକମାନେ ମଧ୍ୟ ମନଦେଇ ସେ କଥା ଶୁଣିଲେ । ଯେତେବେଳେ ସେ ଫେରିଗଲା ସେତେବେଳେ କାଳାକୁଟ୍ଟା ମାଧବୀକୁ ଡାକି ପଚାରିଲା -

'ସେ କିଏ ରେ, ମାଧବୀ ?'

'ସେ ହେଉଛି, 'ପବନ' !'

'ପବନ ? - - - - ଏଇଠିକୁ ଆସିଥିବା ଲୋକଟି ବିଷୟରେ ମୁଁ ତୋତେ ପଚାରୁଛି ।'

'ତାକୁ ସମସ୍ତେ 'ପବନ' ବୋଲି କହନ୍ତି ।'

'ସେ ପବନ କାହିଁକି ଆସେ ?'

'ଏଇଠିକୁ ତ ଆସେ ।'

'ତମେମାନେ ତାକୁ ଏତେ ଭଲପାଅ କାହିଁକି ! ମୁଁ ଦେଖିଛି ଯେ, ତୁ ତା କାନ୍ଧ ପାଖକୁ ଲାଗିଯାଇ ଛିଡା ହୋଇଥିଲୁ ।'

'ପାଖକୁ ଲାଗି କରି ଛିଡା ହେବାରେ କ'ଣ ହେଲା ?' 'ତମେ ଯାହା କରୁଛ ସେ କଥା ନିଜ ନିଜର ଘରେ କର । ଏଠାରେ ସେମିତି କିଛି ହୋଇ ପାରିବ ନାହିଁ ।'

'ସେ ଖରାପ ଚରିତ୍ରର ଲୋକ ନୁହେଁ କିମ୍ବା ମନ୍ଦ ଉଦ୍ଦେଶ୍ୟ ରଖି ଚଲାବୁଲା କରୁନାହିଁ ।'

'ତାହେଲେ ସେ କାହିଁକି ଏ ପଟେ ଆସୁଛି ?'

'ସେ ? ସେ - - - - ନା, ମୁଁ ଜାଣେନାହିଁ ।' - ଏ କଥା କହି ସେଠାରୁ ଶୀଘ୍ର ଚାଲିଗଲା ।

ପୁଣି ସେ ଲୋକ ଆସିଲା । ଶ୍ରମିକମାନେ ତା ସହିତ ଏବଂ ସେ ଶ୍ରମିକମାନଙ୍କ ସହିତ କଥାବାର୍ତ୍ତା କଲେ ।

ଏ କଥା ଶୁଣିବା ମାତ୍ରେ କୁଞ୍ଜୁ ଶଙ୍କରନ୍ ସାହେବ କ୍ରୋଧରେ ଲାଲ ହୋଇ ଗଲେ । ସେ ଗୋପାଳନ୍‌କୁ ଡାକି ପଚାରିଲେ -

'ଆରେ, ସେ ବୁଲା ଲୋକଟିକୁ ଏଠାକୁ ଡାକୁଛି କିଏ ?'

'ସେ ନିଜେ ଆସୁଛି, ମାଲିକ !'

'ତାର ଜାତି କ'ଣ ?'

'ଆଜ୍ଞା ?'

'ସେ କ'ଣ ଇଝବ ଜାତିର ଲୋକ ? ସେ କଥା ମୁଁ ପଚାରୁଛି ।'

'ମୁଁ ଜାଣେ ନାହିଁ, ମାଲିକ ?'

'ସେ ହେଉଛି ଇଝବମାନଙ୍କୁ ବରବାଦ୍ ନଷ୍ଟଭ୍ରଷ୍ଟ କରିବା ଲୋକ ।'

'ଏପରି କାହିଁକି କହୁଛନ୍ତି, ମାଲିକ ? ସେ କୋଉ ଇଝବକୁ ବରବାଦ କରିଛି ?'

'ମୋତେ - ମୋତେ ବରବାଦ କରିବା ସକାଶେ ସେ ଏଭଳି ଏଠାକୁ ଯିବା ଆସିବା କରୁଛି ।'

'ତା ଘୂରିବା ଫେରିବାରେ ମାଲିକ କ'ଣ ବରବାଦ ହୋଇଯିବେ ?'

'ତା ବୁଲାବୁଲି କରିବାରେ ହିଁ ବରାଦୁ ସାହେବଙ୍କ କାରଖାନାରେ ଗଣ୍ଡଗୋଳ ହୋଇଥିଲା । ଠିକ୍ କି ନା ?'

'ତାହେଲେ ବରାଦୁ ସାହେବ କ'ଣ ଇଝବ, ମାଲିକ ?'

'କହିବାର ଉଦ୍ଦେଶ୍ୟ ହେଉଛି - - - - - - - - ?'

'କହିବାର ଉଦ୍ଦେଶ୍ୟ କ'ଣ ?'

'ଆରେ, ମୁଁ କ'ଣ ଇଝବ ନୁହେଁ ?'

'ଆଜ୍ଞା, ହଁ ।'

'ଇଝବ ମାଲିକଙ୍କର ଭଲ କରିବା ଉଚିତ କି ନୁହେଁ ?'

'କାହାକୁ ?'

'ଇଝବ ଶ୍ରମିକମାନଙ୍କୁ ।'

'ତାହେଲେ ଇଝବ ଶ୍ରମିକମାନଙ୍କୁ ଭଲ ଦୃଷ୍ଟିରେ ଦେଖିବା ଦାୟିତ୍ୱ କାହାର ?'

'ଆରେ, ତମ ମାନଙ୍କ ମଙ୍ଗଳ ସକାଶେ ମୁଁ ସବୁପ୍ରକାର ବ୍ୟବସ୍ଥା କରୁଛି ।'

'ନାଁ, ଦରକାର ନାହିଁ, ଏଭଳି ମଙ୍ଗଳ କରିବା ଦରକାର ନାହିଁ ।'

'ହଁ, ଇଝବ ଲୋକମାନେ ଏକ ପ୍ରକାର କୁକୁଡା କହିଲେ ଅତ୍ୟୁକ୍ତି ହେବ ନାହିଁ ।'

'ଇଝବ ଲୋକମାନେ କିଭଳି ଭାବରେ କୁକୁଡା ହେଲେ ମାଲିକ ?'

'ଦେଖ, କୁକୁଡାକୁ ମାରିବା ସକାଶେ ଧରିବାକୁ ଉଦ୍ୟମ କରୁଥିବା ବେଳେ, ବା ପାଳନ କରୁଥିବାବେଳେ କୁକୁଡା ନିଶ୍ଚୟ ପାଟି କରିବ । ସେଥିପାଇଁ ମୁଁ କହୁଛି, ଇଝବ ଲୋକମାନେ ହେଉଛନ୍ତି କୁକୁଡା ।'

'ମୋର କହିବାର ଉଦ୍ଦେଶ୍ୟ ହେଉଛି, ଯେ ଆମ୍ଭେମାନଙ୍କୁ ଏଭଳି ଭାବରେ ଲାଳନ ପାଳନ କରିବା ଦରକାର ନାହିଁ ।'

'ତାହେଲେ ସେ ଲଫଙ୍ଗାର କଥା ଶୁଣ ଏବଂ ଯାଇ ମର ! ହଁ ମର !'

'ତା ଅପେକ୍ଷା ମରିଯିବା ଶ୍ରେୟସ୍କର, ମାଲିକ !'- ଗୋପାଳନ୍ ଏ କଥା କହି କୌଣସି ଉତ୍ତରକୁ ଅପେକ୍ଷା ନ କରି ସେଠାରୁ ଚାଲିଗଲା ।

'ତମେମାନେ ସମସ୍ତେ ହେଉଛ କୁକୁଡା, କୁକୁଡା !'- ସାହେବ ଡାକିକରି କହିଲେ ।

କୁଣ୍ଣୁ ଗୋପାଳକୁ ପଚାରିଲା-

'ଗୋପାଳନ୍ ! ମାଲିକ କ'ଣ ପାଇଁ ଚିତ୍କାର କରୁଥିଲେ ? ଯଦି ଲାଳନ ପାଳନ କରିବାକୁ ଚାହିଁ, ସେତେବେଳେ ଧରିବାକୁ ଉଦ୍ୟମ କଲାବେଳେ ବା ମାରିବା ସକାଶେ ଚେଷ୍ଟା କଲା ସମୟରେ, ନିଶ୍ଚୟ ପାଟି କରିବେ ।'

'କୁକୁଡା ଧରିବାର କାରଣ ଯଦି ପାଟି କରିବା ହେଲା -

ତା ହେଲେ ତୁମେ କୁକୁଡା ଧରୁଛ କାହିଁକି ?'

'ସେ କହୁଛନ୍ତି ଯେ, କୁକୁଡା ଧରି ପାଳନ କରିବାକୁ ଚାହାଁନ୍ତି ।'

'କିନ୍ତୁ ମାରିବା ସକାଶେ ହିଁ କୁକୁଡା ପାଳନ କରାଯାଏ, ଠିକ୍ ନା ?'

'ମାଲିକଙ୍କର କହିବା ଉଦ୍ଦେଶ୍ୟ ହେଉଛି, ଆମ୍ଭମାନଙ୍କୁ ଧରାଯାଉଥିବା ସମୟରେ ଆମ୍ଭମାନଙ୍କର ପାଟି କରିବା ଉଚିତ ନୁହେଁ ।'

'ଯଦି କୁକୁଡା ମାନଙ୍କର ପାଟିକରିବା ମନା ବା ସ୍ୱଭାବ ବଦଳିଯାଏ ତାହେଲେ ବିଲୁଆ ମାନେ ମଧ୍ୟ ତାକୁ କ'ଣ ଧରିବା ଛାଡିଦେବେ ।'

'କୁଣ୍ଣୁ ଭାଇ ! ତମେ ହିଁ ଯାଇ କହିଦିଅ ।

ସେ ସେଠାରେ ଛିଡା ହୋଇଛନ୍ତି ।

'ଗୋପାଳନ୍, ମୁଁ କହିଦେବି, ଥରେ କହିଦେବି ।'

ପବନ ତଥାପି ସେଠାକୁ ଆସୁଥିଲା । ପବନର ଗରମ ଏବଂ ଶକ୍ତି ଯେପରି ବଢି ଚାଲିଥିଲା । ଫୁସଫାସ କଥାବାର୍ତ୍ତା ବର୍ତ୍ତମାନ ଦାନ୍ତ ଚୋବାଇ କଡମଡ କରି ଏବଂ ହୁଙ୍କାର କରି କଥାବାର୍ତ୍ତାରେ ପରିଣତ ହୋଇ ଯାଇଥିଲା । ଦିନେ କୁଣ୍ଣୁ କାଳୀକୁଟ୍ଟୀକୁ ପଇସାକର ବିଡି ମାଗିଲା । କାଳୀକୁଟ୍ଟୀ ଦୁଇଟି ବିଡି ଦେଲା ।

କୁଣ୍ଣୁ ପଚାରିଲା -

'ଏ କ'ଣ ?'

'ତମେ କ'ଣ ବିଡି ମାଗି ନଥିଲ ?'

'ହଁ ।'

'ଏ ତ ହେଉଛି ବିଡି ।'

'ମୁଁ ତ ପଇସାକର ବିଡି ମାଗିଥିଲି ।'

'ଏ ତ ପଇସାକର ବିଡି ।'

'କ'ଣ ପଇସାକର ଦୁଇଟି ବିଡି ?'

'ତାହେଲେ କେତେ ଦରକାର ?'

'ଅନ୍ୟ ଦୋକାନରେ ପଇସାକର ଚାରୋଟି ବିଡି ମିଳୁଛି ।'

'ତାହେଲେ ତମେ ସେଇଠି ଯାଇ କିଣିନିଅ ।'

'ତମେ ଯଦି ଶ୍ରମିକମାନଙ୍କ ପଇସା ବନ୍ଦ କରି ରଖ, ତାହେଲେ ସେଇଠି ଯାଇ କିଣିବୁ କେମିତି ?'

'ତାହେଲେ ଏଠାରୁ ଯେତିକି ମିଳୁଛି, ସେତିକି କିଣିନିଅ ।'

'ଜୋର ଜବରଦସ୍ତି ତ ନାହିଁ ।'

'କ'ଣ ତମର ବାପା ଏ ସବୁ କମାଇଥିଲେ ?'

'କାହାରି ବାପା ଏ ସବୁ ରୋଜଗାର କରି ନଥିଲେ । ଆମେ ଯାହା କରୁଛୁ, ଆମକୁ ଆମର ମଜୁରୀ ଦେଇଦିଅ, ବାସ !'

'ମଜୁରୀ ତ ଦେଉଛି ।'

'ପଇସା ଆକାରରେ ଦେଇଦିଅ, ସେଇକଥା କହୁଛି ।'

'ପଇସା ଦିଆଯାଇ ପାରିବ ନାହିଁ ।'

'ଦିଆଯିବ କି ନାହିଁ, ସେ କଥା ମୁଁ ଦେଖିନେବି ।'

'ବାଃ, ଦେଖିସାରି ଆସ ।'

କୁସ୍ମ ବିଡି ନେଲା ନାହିଁ ।

ପୁଣି ମାଧବୀ କାଳୀକୁଟୀ ସହିତ ଝଗଡା କରିଥିଲା । ଦିନେ ସେ ସେରେ ଚାଉଳ କିଣିଲା । ସେ ପଚାରିଲା-

'ଏହାର ଦାମ କେତେ ?'

'ଦାମ କାହିଁକି ଜାଣିବାକୁ ଚାହୁଁଛ ? ଘରେ ଖାଇବାକୁ ପାଉଛ, ସେତିକି ଯଥେଷ୍ଟ । ଅନ୍ୟ ଜିନିଷ ଜାଣି ଲାଭ କ'ଣ ?'

'ଆମେ ତ ପରିଶ୍ରମ କରୁଛୁ । ମାଗଣାରେ ତ ଏସବୁ ନେଇ ଯାଉନୁ ।'

'ଆରେ, ତୁ ଏସବୁ ଆଜେ ବାଜେ ବକୁଛୁ କାହିଁକି ? ନେବୁ ତ ନେ !'

ମାଧବୀ ନେଇଗଲା । ଯିବା ସମୟରେ ସେ କ'ଣ ସବୁ ଧିରେ ଧିରେ କହି ଚାଲିଥିଲା -

'କାମ କରିବା ସ୍ଥାନରେ ମଧ୍ୟ ହତ୍ୟା ! ଜିନିଷ ବିକ୍ରୀ କରିବା ସ୍ଥାନରେ ମଧ୍ୟ ହତ୍ୟା ! ତା ହେଲେ ଏକାଥରକେ ମାରି ଦେଉନାହାନ୍ତି କାହିଁକି ?'

କିଛି ସମୟ ପରେ ମାଧବୀ ଚାଉଳ ନେଇ ଫେରି ଆସିଲା । ଚାଉଳ ଟୋପାଟି କାଳୀକୁଟୀ ସାମନାରେ ରଖି ରାଗରେ କମ୍ପି କମ୍ପି କହିଲା -

'ମାରି ପକାଅ ! ମୋତେ ଏକାଥରକେ ମାରିଦିଅ ।'

'ତୁ କାହିଁକି ରାଗରେ କମ୍ପି ଯାଉଛୁ କିରେ ?'

'ଏ ଚାଉଳ ଥରେ ମାପିକରି ଦେଖ !'

'କ'ଣ ? ବେଶୀ ହୋଇଗଲା ?'

'ବେଶୀ କି କମ୍ ମାପିଲେ ବଳେ ଜଣା ପଡିବ ଯେ ।'

'ତୁ ଟିକିଏ କହିଦେ ନା ?'

'ଏ ତ ମୋଟେ ତିନି ପାଆ ।'

'ତାହେଲେ ତୁ ଆଉ ପାଏ କାହାକୁ ଦେଇଥିବୁ !'

'ଖବରଦାର ! ମିଛକଥା ମୋ ନାମରେ ନ କହୁ ଯେପରି ! - - - - ଦାମ୍ ତ ଅଧିକ । ତାପରେ ଓଜନରେ କମ୍ ! ଏମିତି ବେପାର କଲେ ତୋ ମୁଣ୍ଡରେ ଚଡକ ପଡିଯିବ ଯେ !' - ସେ ତାର ମୁଣ୍ଡ ଦେଖାଇ ଅଙ୍ଗଭଙ୍ଗୀ କରି କହିଲା ।

କାଳୀକୁଟୀ ତରାଜୁ ନେଇ ମାଧବୀର ଗାଲରେ ମାଡ ଦେଲା । ପୁଣି ସେ ଗର୍ଜନ କରି ଉଠିଲା -

'ହଟି ଯା, ଚଣ୍ଡାଳ କୋଉଠିକାର !'

ମାଧବୀ ଦୋକାନ ଭିତରକୁ ଚଢିଗଲା । ଲୁହାର ତରାଜୁ ନେଇ କାଳୀକୁଟୀର ମୁଣ୍ଡରେ ପ୍ରହାର କଲା । କାଳୀକୁଟୀର ମୁଣ୍ଡଫାଟି ରକ୍ତ ବୋହିବାକୁ ଲାଗିଲା ।

କୁପ୍ପୁ ଶଙ୍କରନ୍ ସାହେବ କାରଖାନାରେ ଏ ଖବର ପାଇ ପହଞ୍ଚିବା ଆଗରୁ ମାଧବୀ ଗାଏବ ହୋଇ ଯାଇଥିଲା

12

ଏ ଭିତରେ ଅନ୍ନାର ବୟସ 17 ବର୍ଷ ପୁରି ଯାଇଥିଲା । ଏକ ଦରପ୍ରସ୍ଫୁଟିତ କଳିକା ଏକ ସୁନ୍ଦର ଫୁଲରେ ପରିଣତ ହେବାକୁ ଯାଉଥିଲା । ଶୁଖିଲା ଭୂଇଁ, ଗରମପବନ, ଏବଂ ଅନ୍ଧକାରରେ ଭରା ଆକାଶରେ ସେ କଳିକା ବା କିପରି ପ୍ରସ୍ଫୁଟିତ ହୁଅନ୍ତା !

ମନରେ ବିଭିନ୍ନ କଳ୍ପନାର ରଙ୍ଗ ଲଗେଇବାର ଥିଲା ସେ ସମୟ । ଆଖିରେ ସ୍ୱପ୍ନ ଆସିବାର ଥିଲା ସେ ସମୟ । କିନ୍ତୁ ଅନ୍ନାର କଳ୍ପନାର ଉତ୍କଣ୍ଠା କଣ୍ଟକିତ ହୋଇ ଉଠିଥିଲା । ତାହାର ଆଖିର କୋଣରେ ଅଶ୍ରୁ ଲୁଚକାଳି ଖେଳିବାକୁ ଲାଗିଲେ ।

ତାହାର ପିତା ସ୍ୱର୍ଗକୁ ଗଲେ । ତାହାର ଦୁଇଭାଇ ମଧ୍ୟ ଜେଲକୁ ଗଲେ । ମା'ତ ବର୍ତ୍ତମାନ ସ୍ୱର୍ଗକୁ ଯାଇ ବାପାଙ୍କର ସେବା ଶୁଶ୍ରୁଷା କରିବା ସକାଶେ ଆତୁର ଥିଲା ।

ଏଲୀ ସାରା ଘରର କାମ କରୁଥିଲା । ଘର, ଅଗଣା, ବାରଣ୍ଡା, ଝଡାଝଡି କରିବା, ବାସନ କୁସନ ସଫାକରିବା, ଓ ଚୁଲୀ ଲଗାଇବା କାମ ମଧ୍ୟ କରୁଥିଲା । କିନ୍ତୁ ସେ ପ୍ରତ୍ୟେକ କାମ କଲାବେଳେ ଏଭଳି

ଭାବରେ କରୁଥିଲା ଯେମିତି କି ସେ ସ୍ୱପ୍ନାବିଷ୍ଟ ଭାବରେ ଏ ସବୁ କରୁଛି ।

କାମକରିବା ସମୟରେ ସେ ହଠାତ୍ ଆସି ପେଟି ଖୋଲୁଥିଲା । ସଫାଲୁଗା ଏବଂ କଳାଧଡି ଥିବା ଧୁପଛା ପିନ୍ଧି ସେ ଅନ୍ନାକୁ କହୁଥିଲା -

'ଝିଅ, ମୁଁ ଟିକିଏ ସେ ଆଡୁ ବୁଲି ଆସେ ?'

- 'ମା, କୁଆଡେ ଯାଉଛୁ ?'

ଏ ପ୍ରଶ୍ନ ଶୁଣିବା ମାତ୍ରେ ଏଲୀ ବିଗଡି ଯାଉଥିଲା । 'ଅନ୍ନାର ତ ପିତା କୋଉଠି ଅଛନ୍ତି ସେ କଥା କ'ଣ ସେ ଜାଣେ ନାହିଁ ? ତା ଛଡା ବାପାଙ୍କ ପାଖରେ ମା'ର ରହିବା କେତେ ଆବଶ୍ୟକ ସେ କଥା କ'ଣ ସେ ଜାଣେ ନାହିଁ ? ତଥାପି ମୁଁ କୁଆଡେ ଯାଉଛି ବୋଲି ସେ କାହିଁକି ପୁଣି ପ୍ରଶ୍ନ ପଚାରୁଛି ?'

'ଆରେ, ମୁଁ କୁଆଡେ ଯାଉଛି, ସେ କଥା ତୁ ଜାଣିନାହୁଁ ? ମୋତେ ସେଠାରେ ପହଞ୍ଚି ତାଙ୍କ କାଛି ତିଆରି କରିବାକୁ ପଡିବ ।' ଏଲୀ ଏକଥା କହି ଶୀଘ୍ର ଚାଲିବାକୁ ଆରମ୍ଭ କଲା । ଅନ୍ନା ତାର ପ୍ରତିରୋଧ କଲା ।

'ମା, ସେଆଡେ କେମିତି ଯାଇପାରିବୁ ? କ'ଣ ରାସ୍ତା ଜଣା ଅଛି ?'

'ରାସ୍ତା, - ଯେତେବେଳେ ମୁଁ ସେଠାରେ ପହଞ୍ଚିବି ସେତେବେଳକୁ ସେ ମୋ ପ୍ରତୀକ୍ଷାରେ ଛିଡା ହୋଇ ରହିଥିବେ । ସେ କାଛି ପାଣି ମଧ୍ୟ ନ ପିଇ ମୋ ପାଇଁ ଆପେକ୍ଷା କରି ରହିଥାନ୍ତି ।' - ଏଲୀ ଅନ୍ନାକୁ ଦୂରକୁ ଠେଲି ଦେଇ ଆଗକୁ ବଢିବାକୁ ଆରମ୍ଭ କଲା ।

'ମାଆ, ଆଗକୁ ମୋଟେ ଯାଅ ନାହିଁ'- ଅନ୍ନା ଏ କଥା କହି ଏଲୀକୁ ଗଳାରେ ଲଗାଇ ନେଲା । - ମା, ସେଠାକୁ ଯାଇ ପାରିବୁ ନାହିଁ । - - - - ଯୀଶୁଙ୍କ ବିନା ଅନୁମତିରେ ସେଠାକୁ ଯିବାକୁ ଦିଆଯିବ ନାହିଁ ।'

'ମୋତେ ଯିବାକୁ ଅନୁମତି ଦେବେ । ଯେତେବେଳେ ଯୀଶୁଙ୍କୁ କୁହାଯିବ, ଯେ ଗର୍ଭୀର ସ୍ତ୍ରୀ ଦ୍ୱାର ଦେଶରେ ଛିଡା ହୋଇଛି, ସେତେବେଳେ ତ ନିଶ୍ଚୟ ମୋତେ ଯିବାକୁ ଅନୁମତି ଦେବେ ।'

'ନା, ମା ତୋତେ ଯିବାକୁ ଆଦୌ ଦେବେ ନାହିଁ ।'

'ହଟି ଯା ସେଆଡେ !' - ଏଲୀ ଜୋରରେ ଗର୍ଜନ କରି ଉଠିଲା ।

ଅନ୍ନା ତଥାପି କୁଣ୍ଢାଇ ଧରିଥିବା ନିଜ ମା'କୁ ଛାଡିଲା ନାହିଁ । ଏଲୀ 'ମୋତେ ଛାଡି ଦେ, ମୋତେ ଛାଡି ଦେ, ବୋଲି ଚିତ୍କାର କରି ତାର ପିଠିରେ ଜୋରରେ ବାଡଉ ଥିଲା ।

ଅନ୍ନା କାନ୍ଦି ପାରୁ ନ ଥିଲା କି ପ୍ରତିରୋଧ କରିପାରୁ ନଥିଲା । ଚୁପଚାପ ଭାବରେ ସେ ମାଡକୁ ସହି ଯାଉଥିଲା । ଯେତେବେଳେ ମାଡ ଏବଂ ଘୁଷା ଦେଇ ମା ଥକି ଯାଉଥିଲା ସେତେବେଳେ ସେ କହୁଥିଲା -

'ମା, ମୁଁ ତମର ଏକମାତ୍ର ଝିଅ ।'

ସେତେବେଳେ ଏଲୀର ଚେତା ଫେରିଆସୁଥିଲା । ଝିଅକୁ ନିଜ ଛାତିରେ ଲଗାଇ ସେ କାନ୍ଦୁଥିଲା - 'ମୋ

ଗେଲ୍ହା ଝିଅ, ମୁଁ କ'ଣ ତୋତେ ଘୁଷା ମାରିଥିଲି ?' ସେ ନିଜେ ନିଜଛାତିକୁ ଜୋରରେ ପିଟି ପିଟି କାନ୍ଦୁଥିଲା ।

'ମୁଁ ନିଜ ଝିଅକୁ ବାଡେଇ ପକାଇଲି !'- - - - ସେଠାରେ ପହଞ୍ଚୁ ପହଞ୍ଚୁ ସେ ପଚାରିବେ, 'କ'ଣ ତୁମେ ମୋ ଝିଅକୁ ମାଡ ଦେଇଥିଲ ?'

ସେତେବେଳେ ପଡୋଶୀମାନେ ଦୌଡି ଆସୁଥିଲେ । ସେମାନେ ତାର ହାତକୁ ଜବରଦସ୍ତ ଅଟକାଇ ନେଉଥିଲେ । କେବେ କେବେ ଅନ୍ନାକୁ ମାଡ ଖାଇବାର ଦେଖି ପଡୋଶୀମାନେ ଦୌଡି ଆସୁଥିଲେ ଏବଂ ଏଲୀକୁ ବାନ୍ଧି ଦୂରକୁ ଘୁଞ୍ଚାଇ ଦେବାକୁ ଚାହୁଁଥିଲେ । ସେତେବେଳେ ଅନ୍ନାର ମୁଖଭଙ୍ଗୀ ଗଭୀର ହୋଇ ଯାଇଥିଲା । ସେ ପାଟିକରି କହୁଥିଲା - 'ତାକୁ ଛୁଅଁ ନାହିଁ । ମୋ ମାଆ ଦେହରେ କେହି ହାତ ଦିଅ ନାହିଁ । ମୋ ମାଆ ଯଦି ଚାହୁଁଛି ତ ମୋତେ ପିଟି ପାରେ ଓ ମାରି ଦେଇପାରେ ।'

ସେ ପତଳାଲୋକ ପ୍ରତ୍ୟେକ ଦିନ ସେଠାକୁ ଆସୁଥିଲା । ସେ ପ୍ରତ୍ୟେକଦିନ ଗୁଜୁରାଣ ମେଣ୍ଟାଇବାର ଖର୍ଚ୍ଚ ଦେଇ ଚାଲିଯାଉଥିଲା । ପ୍ରଥମ ଦିନ ଯେତେବେଳେ ସେ କିଛି ପଇସା ଏଲୀର ହାତରେ ଦେଇଥିଲା ସେତେବେଳେ ସେ ପଚାରିଲା - 'କ'ଣ ଏଣ୍ଟୋନିର ବାପା ଏ ପଇସା ପଠାଇ ଦେଇଛନ୍ତି ?'

'ହଁ ।'
'ତାହେଲେ ଏହାକୁ ନେଇ ସେ ନିଜେ କାହିଁକି ଏଠାକୁ ଆସୁ ନାହାଁନ୍ତି ?'
'ଆଗକୁ ଯାଇ ସେ ଆଉ ଆସିବେ ନାହିଁ ।'
'କାହିଁକି ? କାହିଁକି ଆସିବେ ନାହିଁ ?'
'ସେମାନେ ତାଙ୍କୁ ଆସିବାକୁ ଦେବେ ନାହିଁ ।'
'ତା ହେଲେ ସେଠାରେ ତାଙ୍କୁ କିଏ କାଞ୍ଜି ତିଆରି କରି ଦେଉଛି ?'
'କାଞ୍ଜି ତିଆରିକରି ଦେବାପାଇଁ ସେଠାରେ ଲୋକ ଅଛନ୍ତି ।'

'କିନ୍ତୁ ସେ ପିଇବେ ନାହିଁ । ଅନ୍ୟ କେହି ତିଆରି କରିଥିବା ଜିନିଷ ସେ ପିଇବେ ନାହିଁ । - - - - ମୁଁ ତାଙ୍କୁ କାଞ୍ଜି ତିଆରି କରିଦେବା ସକାଶେ ସେଠାକୁ ଯିବି ।'

ସେ ପତଳା ଲୋକ ସେଠାରୁ ତାର ଅଶ୍ରୁ ପୋଛି ପୋଛି ଚାଲିଗଲା । ଦ୍ୱିତୀୟ ଦିନ ସେ ଯେତେବେଳେ ଆସି ପହଞ୍ଚିଲା ସେତେବେଳେ ଅନ୍ନା ବାରଣ୍ଡାରେ ଛିଡା ହୋଇଥିଲା । ସେ 'ଗରମ-ପବନ'କୁ ନିକଟରେ ପହଞ୍ଚିବାର ଦେଖୁଥିଲା । ଅଗଣାରେ ଛିଡା ହୋଇ ସେ 'ଗରମ-ପବନ' କାଗଜର ଗୋଟିଏ ପୁଡିଆ ବାହାର କରି ତାର ହାତକୁ ବଢାଇ ଦେଲା । ସେ କାଗଜ ହାତରୁ ନେଇ ଅନ୍ନା ଶୂନ୍ୟକୁ ଅନାଇ କହିଲା-

'ଏଭଳି ଭାବରେ କେତେଦିନ ପର୍ଯ୍ୟନ୍ତ - - - - - ?' ସେ ପୁରାବାକ୍ୟ କହିପାରିଲା ନାହିଁ । ସେ ଚୁପ ହୋଇ ଛିଡା ହେଲା । ଅନ୍ନା ତାହାକୁ ପଚାରିଲା -

'ପ୍ରତ୍ୟେକ ଦିନ ଏଭଳି ଭାବରେ ଆଣୁଛ - - - - - - କିନ୍ତୁ ଆଣୁଛ କେଉଁଠୁ ?'

'ଶ୍ରମିକମାନେ ଚାନ୍ଦା ଦେଇ ଏହାର ବନ୍ଦୋବସ୍ତ କରୁଛନ୍ତି ।'

'ତା ହେଲେ - - - - ।' ସେ କିଛି କହିବାକୁ ଚାହୁଁଥିଲା - କିନ୍ତୁ କହିଲା ନାହିଁ ।

'ମୁଁ ଯିବି ?' - ସେ ଲୋକ ଯିବା ସକାଶେ ବିଦାୟ ମାଗିଲା ।

'ଯାଇ ପୁଣି - - - - ' - ବର୍ତ୍ତମାନ ସେ ମଧ୍ୟ ପୁରା ବାକ୍ୟ କହି ପାରିଲା ନାହିଁ ।

'ମୁଁ କାଲି ଏତିକିବେଳକୁ ପୁଣି ଆସିବି ।'

'ମୋର ବଡ ଭାଇ ଓ ସାନଭାଇ କେବେ ଆସିବେ ।'

'ଆସିବେ । ଖୁବ୍ ଶୀଘ୍ର ଆସିବେ ?' - ସେ ସେଠାରେ ଆଉ ଅଟକିଲା ନାହିଁ । ସେ ଖୁବ୍ ଶୀଘ୍ର ଗଳିକୁ ଆସି ଚାଲିବାକୁ ଆରମ୍ଭ କଲା । ଅନ୍ନାର ପ୍ରଶ୍ନକୁ ଯେ ସେ ଭୟ କରୁଥିଲା, ଏ କଥା ମଧ୍ୟ କୁହାଯାଇପାରେ ।

ଏଭଳି ଭାବରେ କିଛିଦିନ ବିତିଗଲା । ଦିନେ ଯେତେବେଳେ ସେ କିଛି ଟଙ୍କା ନେଇ ଆସିଲା, ସେତେବେଳେ ଏଲୀ ବାରଣ୍ଡାରେ ଛିଡା ହୋଇଥିଲା । ତାକୁ ଦେଖିବା ମାତ୍ରେ ଏଲୀ ପ୍ରଶ୍ନ କରି ଉଠିଲା-

'ତୁମେ କାହିଁକି ପ୍ରତ୍ୟେକ ଦିନ ଏଭଳି ଭାବରେ ଏଠିକୁ ଆସ ? ମୁଁ ପଚାରୁଛି, କାହିଁକି ?'

ସେ ଚୁପ ରହିଲା । ଏଲୀର ସ୍ୱର କ୍ରମେ ଅଧିକ ଉଚ୍ଚ ହୋଇ ଉଠିଲା ।

'ବର୍ତ୍ତମାନ ମୋ ପାଇଁ ସେ ହେଉଛି ଏକମାତ୍ର ସାହାରା । ଏହାକୁ ମଧ୍ୟ ଧରିନେଇ ଯିବାପାଇଁ ତମେ ଏଠାକୁ ପ୍ରତ୍ୟେକଦିନ ଆସୁଛ , ନାଁ ?'

ତାର ମୁଣ୍ଡ ନଇଁଗଲା । ଏକଥା ଶୁଣି ରୋଷେଇ ଘରୁ ଅନ୍ନା ଦୌଡି ଆସିଲା । ସେ ଅତି କାକୁସ୍ଥ ହୋଇ ପ୍ରାର୍ଥନା କଲା -

'ମା, କାହା ସହିତ ଏମିତି କଥାବାର୍ତ୍ତା କରୁଛ, ସେ କଥା ଜାଣିଛ ?'

'କାହା ସହିତ ? ଏ ତ ମରିଥିବା ଲୋକକୁ ଚଳାଇବା ଲୋକ । - - - - ଆରେ, ତମର ଆଉ ଏଠାକୁ ଆସିବା ଉଚିତ ନୁହେଁ । ଯଦି ଆସ ତା ହେଲେ - - - - - - ' - ବାରଣ୍ଡାରେ ପଡିଥିବା ଝାଡୁ ଧରି ଏଲୀ ଅଗଣାକୁ ଡେଇଁ ପଡିଲା ।

ଅନ୍ନା ଏଲୀକୁ ଧରି ଅଟକାଇନେଲା । ସେ କାନ୍ଦି କାନ୍ଦି କହିବାକୁ ଲାଗିଲା, 'ମୋ ମାଆ, ଏମିତି କୁହ ନାହିଁ । - - - - - - ସେଠାରେ ଯେ ଛିଡା ହୋଇଛନ୍ତି - - - - ଯେ ଛିଡା ହୋଇଛନ୍ତି - - - - - - ସେ ଆମର - - '

'ଫୁ ! ହଟିଯା ଏଇଠୁ !' - ଗୋଟିଏ ଧକ୍କା ! ଅନ୍ନା ଚିତ୍ ହୋଇ ତଳେ ପଡିଗଲା ।

ଖୁବ୍ ଶୀଘ୍ର ସେ ଲୋକ ଅନ୍ନାକୁ ସାହାଯ୍ୟ ଓ ଭରା ଦେଇ ଉଠାଇଲା । ଅନ୍ନା ତାକୁ କହିଲା - 'କ୍ଷମା କରି ଦିଅନ୍ତୁ । ମା ଯାହା କହୁଛି, ସେ କଥା ଶୁଣନ୍ତୁ ନାହିଁ । ମା ତ ବର୍ତ୍ତମାନ ଅସୁସ୍ଥ ହୋଇ ଗଲାଣି ।'

ସେ ହସିଲା - ଏକ କରୁଣା ମିଶ୍ରିତ ହସ !

'ତୁ- ତୁ- ମୋ ଝିଅକୁ ମାରିବାକୁ ଏଠିକୁ ଆସୁଛୁ ତ ; ଠିକ୍ କି ନୁହେଁ ?'

ଏଲୀ ତା ଆଡ଼କୁ ଝାଡୁ ଧରି ଉଦ୍ଧୁକି ଆସିଲା । 'ଆଃ ! ମା !' - ଅନ୍ନା କାନ୍ଦି ପାଟି କରି ଉଠି ତା ହାତରୁ ଝାଡୁ ଜବରଦସ୍ତି ଛଡାଇ ନେଲା । ଏଲୀ ଝାଡୁ ଛାଡିଦେଲା । ବର୍ତ୍ତମାନ ସେ ଅନ୍ନାର ଛାତି ଓ ପେଟରେ ଘୁଷା ମାରିବାକୁ ଆରମ୍ଭ କଲା ।

ବର୍ତ୍ତମାନ ସେ ପତଳା ଲୋକର ଆଖିରେ ପତଙ୍ଗ ନୃତ୍ୟ କରିବାକୁ ଲାଗିଲେ । ସେ ଜବରଦସ୍ତି ଏଲୀର ଦୁଇଟି ହାତ ଧରିନେଲା । ଏଲୀ ତାକୁ ହଟାଇ ଦେଲା । ପତଳା ଲୋକଟି ପୁଣି ଜବରଦସ୍ତ ହାତ ଧରି ନେଲା । ଏଲୀର ହାତ ତା ହାତରେ ପଡି ପେଷି ହୋଇଗଲା ।

ଏଲୀ ପୁଣି ଜୋରରେ ପାଟିକଲା -

'ହାୟ୍, ମୋତେ ମାରି ପକେଇଲା !

ହାୟ୍, ମୋତେ ମାରି ପକେଇଲା !'

'ଗୋଟେ ଦଉଡି ଆଣ' - ସେ ପତଳା ଲୋକ ଅନ୍ନାକୁ ଆଦେଶ ଦେଲା ।

ଅନ୍ନାର ମୁହଁ କୁଞ୍ଚିତ ହୋଇ ଉଠିଲା । ଆଖିରେ କ୍ରୋଧ ପ୍ରକାଶ ପାଇଲା । ସେ ପଚାରିଲା -

'ଦଉଡି କାହିଁକି ?' -

'ହାତ ବାନ୍ଧିବା ପାଇଁ ।'

'ଛାଡି ଦିଅ - - - - ମୋ ମାଆର ହାତ ଛାଡି ଦିଅ ! ମୋ ମାଆ ଚାହିଁଲେ ମୋତେ ଘୁଷା ମାରୁ, କି ଜୀବନରେ ମାରିଦଉ, କିଛି ଯାଏ ଆସେ ନାହିଁ । - - - - - ଛାଡିଦିଅ, ମୋ ମାଆର ହାତ ଛାଡିଦିଅ !' - ଅନ୍ନା ଗର୍ଜ୍ଜନ କରି ଉଠିଲା ।

ପତଳା ଲୋକଟି ଧରିଥିବା ହାତକୁ ଛାଡିଦେଲା । ପଡୋଶୀମାନେ ଦୌଡି ଆସିଲେ । ପଡୋଶୀମାନଙ୍କୁ ଏଲୀ ପାଟି କରି କହିଲା –

'ଏ - - - - - ଏ ମୋତେ ମାରିବାକୁ ଆସିଛି । ଏ ମୋ ଝିଅକୁ ନେଇ ମାରିବାକୁ ଚାହୁଁଛି ।'

ସେ ଲୋକ କାଗଜର ଗୋଟିଏ ଛୋଟ ପୁଡିଆ ଅନ୍ନାର ସାମନାରେ ରଖି ଫେରି ଚାଲିଗଲା । ଗଳିରେ ପହଞ୍ଚି ସେ ନିଜ ଆଖିରୁ ଲୁହ ପୋଛିଲା ।

ଅନ୍ନା ସେ କାଗଜର ପୁଡିଆକୁ ଉଠାଇ ନିଜ ଆଖିରେ ଛୁଆଁଇଲା । ସେ ନିଜେ ଗୋଟିଏ କାଗଜ ପୁଡିଆ ପରି ହୋଇଗଲା ।

## 13

ସେ ଉତ୍ତପ୍ତ ବାୟୁ ଚାରିଆଡେ ଖେଳିଗଲା । ତା'ର ଗରମ ଏବଂ ଶକ୍ତି ବଢି ଚାଲିଲା । ଧୀରେ ଧୀରେ ତାର ଗୋଟିଏ ଲକ୍ଷ୍ୟ ମଧ୍ୟ ହେଲା ।

'ସବୁ ଦେଶର ଶ୍ରମିକ, ସଂଗଠିତ ହୋଇଯାଅ !'

ଏଭଳି ଗୋଟିଏ ସ୍ଲୋଗାନ୍ ମଧ୍ୟ ବାହାରିଲା । ସେଇ ଶବ୍ଦ ଶ୍ରମିକମାନଙ୍କର ଘର , କାରଖାନା, ଚା ଦୋକାନ, ଏବଂ ଛକ ମାନଙ୍କରେ ଗୁଞ୍ଜରି ଉଠିଲା । ସେଇ ଶବ୍ଦ, ସେଇ ସ୍ଲୋଗାନ ଗୋଟିଏ ଦିବ୍ୟ ମନ୍ତ୍ରରେ ପରିଣତ ହୋଇଗଲା । ଆଲପୁଝାର ଶ୍ରମିକମାନେ କେବଳ ଆଲପୁଝାର ବା ତ୍ରିଭାଙ୍କୁର ଶ୍ରମିକମାନେ କେବଳ ତ୍ରିଭାଙ୍କୁର ଶ୍ରମିକ ବା ଭାରତର ଶ୍ରମିକ ନ ହୋଇ ସାରା ସଂସାରର ଶ୍ରମିକ ହୋଇଗଲେ ।

'ତମର ଦାସତ୍ୱର ଶୃଙ୍ଖଳ ଛଡା, ଆଉ ତମର ହରାଇବାର କିଛି ନାହିଁ । କିନ୍ତୁ ତମେ ପାଇବ, ଏକ ନୂତନ ଏବଂ ପୁରା ସଂସାର ।'

'ଦାସତ୍ୱର ଶୃଙ୍ଖଳ ନଷ୍ଟ ହେବ - ଆଉ ନଷ୍ଟ ହେବ ଗରିବୀ, ଉପବାସ, ରୋଗ, ଏବଂ ଦମନ ! ପାଇବ ଗୋଟିଏ ପୁରା ସଂସାର ।'

ଆଲପୁଝାର ପ୍ରତ୍ୟେକ ଶ୍ରମିକ ନିଜ ନିଜର ଗୋଟିଏ ଦୁନିଆଁର କଳ୍ପନା କଲେ । ସେମାନେ କେବଳ ଗୋଟିଏ ଦୁଇଟି ନୁହେଁ, ସାରା ସଂସାରର ନକ୍ସା ଦେଖିଲେ ଏବଂ ସେଇ ନକ୍ସାର ମାଧ୍ୟମରେ ଭାରତ, ତ୍ରିଭାଙ୍କୁର, ଏବଂ ଆଲପୁଝା ଦେଖିବାକୁ ପାଇଲେ । ସେଇ ଛୋଟ କାଗଜଟିର ନକ୍ସା ଭିତରେ ସେମାନେ ବଡ ବିଶ୍ୱର କଳ୍ପନା କଲେ ।

ଆଲପୁଝା, ତ୍ରିଭାଙ୍କୁରର ବାହାରେ ତଥା ଭାରତର ବାହାରେ ସଂସାର ଅଛି ଏବଂ ସେଠାରେ ମଧ୍ୟ ବହୁ ସଂଖ୍ୟକ ଶ୍ରମିକ ଅଛନ୍ତି, ସେମାନେ ସମସ୍ତେ ଗୋଟିଏ ଶ୍ରେଣୀର ଲୋକ ଏବଂ ସେମାନଙ୍କର ସଂଗଠିତ ହେବା ଦରକାର ଏ କଥା କିନ୍ତୁ ବର୍ତ୍ତମାନ ସମସ୍ତଙ୍କୁ ଜଣା ହୋଇଗଲା । ସେମାନଙ୍କର ଦାରିଦ୍ର୍ୟ ସ୍ଥାୟୀ ରହିବ ନାହିଁ ଏବଂ ରହିବା ଉଚିତ ନୁହେଁ, ତୁରନ୍ତ ଏହାର ସମାଧନ କରିବା ଦରକାର ବୋଲି ସେମାନେ ବିଚାର କଲେ । ଏହା ବ୍ୟତୀତ ସେମାନେ ଯଦି ସଂଗଠିତ ହୋଇ ଯାଆନ୍ତି, ତାହେଲେ ସାରା ବିଶ୍ୱ ସେମାନଙ୍କର ହୋଇଯିବ ବୋଲି ଧାରଣା ଶ୍ରମିକମାନଙ୍କର ସୃଷ୍ଟି ହେଲା ।

ସେ ପତଳା ଲୋକ ପ୍ରାୟ ପ୍ରତ୍ୟେକ ଯାଗାରେ ଦେଖାଯାଉଥିଲା ।

ପ୍ରତ୍ୟେକ ଦିନ ପରି ସେ ଦିନ ସକାଳେ ଗାଁ ମାନଙ୍କରୁ ଶ୍ରମିକମାନେ ଛୋଟ ଛୋଟ ଝରଣା ଭଳି କାରଖାନା ଆଡକୁ ବୋହି ଯାଉଥିଲେ । ଆଉ ସନ୍ଧ୍ୟାବେଳେ କାରଖାନାର ନଳାରୁ ଦୂଷିତ ଜଳ ନିଷ୍କାସନ ହେବାପରି ଶ୍ରମିକମାନେ ପୁଣି ଗାଆଁକୁ ଫେରି ଆସୁଥିଲେ ।

ଏଭଳି କ୍ଷେତ୍ରରେ ମନୁଷ୍ୟତ୍ୱର ଗନ୍ଧ ନଥିଲା କି ସେମାନେ ମନୁଷ୍ୟତ୍ୱ ଦେଖି ନ ଥିଲେ କିମ୍ବା ଉପଭୋଗ କରି ନଥିଲେ ।

କିନ୍ତୁ ସେହି ପ୍ରବାହରେ ସୂର୍ଯ୍ୟଙ୍କର କିରଣ ପଡିବାକୁ ଲାଗିଲା । ସୂର୍ଯ୍ୟଙ୍କର ସ୍ୱତନ୍ତ୍ର କିରଣ ସେହି ପ୍ରବାହର ଗଭୀରତାରେ ମନୁଷ୍ୟତ୍ୱର ପକ୍ଷୀଟି ସ୍ୱର ଉଚ୍ଚାରଣ କଲା । ଯେଉଁ ଲୋକମାନେ ଏ ପର୍ଯ୍ୟନ୍ତ ଚୁପଚାପ୍ ଭାବରେ ମୁଣ୍ଡ ତଳକୁ କରି ଚାଲୁଥିଲେ ସେମାନେ ବର୍ତ୍ତମାନ ମୁଣ୍ଡ ଉଠାଇ କ୍ରୋଧରେ ପାଟି କରିବାକୁ ଲାଗିଲେ । କେବେକେବେ ସେମାନଙ୍କ ମଧ୍ୟରେ ଗର୍ଜ୍ଜନ ତର୍ଜ୍ଜନ, ଜୋର ବାଦ, ବିବାଦ, ପ୍ରତିଜ୍ଞା ଓ ବଚନ ମଧ୍ୟ ଶୁଣିବାକୁ ମିଳିଥିଲା ।

'ପୁଞ୍ଜିବାଦ ମୁର୍ଦ୍ଦାବାଦ !' - ଏ ଭଳି ସ୍ଲୋଗାନ୍ ଦେଉଥିବା ସମୟରେ ସେମାନଙ୍କର ହୃଦୟ ବାହାରକୁ ବାହାରି ଆସୁଥିବା ପରି ମନେ ହେଉଥିଲା ।

ପଦ୍ମନାଭନ୍, ଅଚ୍ୟୁତନ୍, ଯୋଶେଫ୍, ଶଙ୍କୁ - ସମସ୍ତେ ଏ ଜାଗୃତି ଓ ଚେତନାର ପ୍ରତିନିଧି ଥିଲେ । କାରଖାନାର କାମ ପରେ ସମସ୍ତେ ପ୍ରଚାରକର କାମ ମଧ୍ୟ କରୁଥିଲେ । ଚା ଦୋକାନ୍ ଏବଂ ଚଉତରା ଉପରେ ଲମ୍ବା ଭାଷଣ ମଧ୍ୟ କେବେ କେବେ ଦେଉଥିଲେ, ଏଥିା ଉପରେ ବେଳେ ବେଳେ ଯୁକ୍ତି ତର୍କ ମଧ୍ୟ ହେଉଥିଲା, ସେମାନେ ଆପେ ଆପେ ଉଲ୍ଲସିତ ହେଉଥିଲେ । ଅନ୍ୟକୁ ମଧ୍ୟ ଉଲ୍ଲସିତ ଆନନ୍ଦିତ କରୁଥିଲେ ।

ପ୍ରଥମେ ଯେତେବେଳେ ଶ୍ରମିକ ସଂଘ ତିଆରି କରାଗଲା ସେତେବେଳେ ସେ ଅଫିସରେ ବସି ପଦ୍ମନାଭନ୍ କହିଲା –

'ଯଦି ଆମ୍ଭେମାନେ ସମସ୍ତେ ଏକାଠି ମିଳି ଗମ୍ଭୀରତାର ସହିତ ଗର୍ଜ୍ଜନ କରୁ ତା ହେଲେ - - - '

'ଗର୍ଜ୍ଜନ କଲେ କ'ଣ ହେବ ?' - ଶଙ୍କୁ ପଚାରିଲା ।

'ଗର୍ଜ୍ଜନ କଲେ - - - - - ଥର ଥର କମ୍ପି ଉଠିବ । ସାରା ସଂସାର କମ୍ପି ଉଠିବ । ହଁ, ବର୍ତ୍ତମାନ ସାରା ସଂସାର କମ୍ପିବାର ବେଳ ଆସିଛି ।'

ଯୋଶେଫ୍ ତାକୁ ସମର୍ଥନ କରି କହିଲା -

'ପୁଞ୍ଜିବାଦ କମ୍ପି ଉଠିବ, ପୋଲିସବାଲା କମ୍ପି ଉଠିବେ, ଲୋକମାନେ କମ୍ପି ଉଠିବେ । ଏ କଥା ଜାଣିଛ !'

'ତାହେଲେ ଆମେ ସମସ୍ତେ ଗର୍ଜ୍ଜନ ନ କରିବା, ରଣ ହୁଙ୍କାର ନ ଦେବା କାହିଁକି ?' - ପପନ ପଚାରିଲା ।

'ଦେଖିନିଅ, ଆମ୍ଭମାନଙ୍କର ଗର୍ଜ୍ଜନ ! ଆମ୍ଭେମାନେ ସମସ୍ତେ ମିଳିମିଶି ଯେତେବେଳେ ହୁଙ୍କାର କରିବୁ ସେତେବେଳେ ଦେଖାଇଦେବୁ ।'

ଅଚ୍ଚୁତନ ନିରାଶାର ଭଙ୍ଗୀରେ କହିଲା –

'ଯେଉଁମାନେ ଗର୍ଜ୍ଜନ କରିଥିଲେ, ସେମାନେ ସମସ୍ତେ ବର୍ତ୍ତମାନ ଜେଲରେ ସଢୁଛନ୍ତି ।'

'ଯେହେତୁ ଆମ୍ଭେମାନେ ସମସ୍ତେ ଏଠାରେ ଏକ ହୋଇଯିବା ପାଇଁ ଚାହୁଁଛୁ ?'

'ଆମ୍ଭେମାନେ କ'ଣ ଏକ ହୋଇଗଲୁ ?'

'କୋଉଠି ? - - - - ଏ ସଂଘ ଏବଂ ଏ ଅଫିସ ତା ହେଲେ କ'ଣ ?'

ବର୍ତ୍ତମାନ ସୁଦ୍ଧା ଧୀର ସ୍ଥିର ଭାବରେ ବେଞ୍ଚ ଉପରେ ବସି ରହିଥିବା ପତଳା ଲୋକଟି ଦୃଢସ୍ୱରରେ କହିଲା- 'ଶ୍ରମିକମାନେ ଏକ ହୋଇଯିବେ ।

ଏକ ସ୍ୱରରେ ଗର୍ଜ୍ଜନ କରିବେ । ରଣ ହୁଙ୍କାର ଦେବେ । ଦୁନିଆ କମ୍ପି ଉଠିବ । ଦୁନିଆର ଶାସକ ହେବେ ଶ୍ରମିକମାନେ !' ସେ ଉଠି ଛିଡା ହୋଇ ପୁଣି କହିଲା –

'ଗୋଟିଏ ଦେଶରେ ଶ୍ରମିକମାନେ ଏକଜୁଟ ହୋଇଗଲେ । ସେମାନେ ସମସ୍ତେ ମିଳିତ ଭାବରେ ରଣ ହୁଙ୍କାର ଦେଲେ । ସେଠାକାର ପୁଞ୍ଜିପତି ଏବଂ ଶାସକ ଗୋଷ୍ଠୀ କମ୍ପି ଉଠିଲେ । ସେମାନେ କମ୍ପି କମ୍ପି ତଳେ ପଡି ଧୂଳିସାତ୍ ହୋଇଗଲେ ଓ ମିଳେଇ ଗଲେ ।'

'କେଉଁ ଦେଶରେ ସେକଥା ହୋଇଥିଲା ?' ବୋଲି ପଦ୍ମନାଭନ୍ ପଚାରିଲା ।

'ରୁଷରେ ।'

'ରୁଷ ? ସେ କେଉଁଠି ?' - ଯୋଶେଫ୍ ପଚାରିଲା ।

ପତଳା ଲୋକଟି ରୁଷ ଏବଂ ରୁଷ ବିପ୍ଳବ କାହାଣୀର ବିବରଣୀ ଦେଲା । ସମସ୍ତେ ବଡ ଆନନ୍ଦ ଓ ଆଗ୍ରହର ସହିତ ଏକଥା ଶୁଣୁଥିଲେ । ଶେଷରେ ପଦ୍ମନାଭନ୍ ପଚାରିଲା –

'ତାହେଲେ - - - - - '

'ତା ହେଲେ କ'ଣ ?' - ଯୋଶେଫ ପଚାରିଲା ।'

'ଆମେ ଏଠାରେ ମଧ୍ୟ - - - - '

ପତଳା ଲୋକଟି ଏ ସମୟରେ କହିଲା –

'ଆମ୍ଭେମାନେ ଏଠାରେ ମଧ୍ୟ ବିପ୍ଳବ କରିପାରୁ । ବିପ୍ଳବ କରିବା ମଧ୍ୟ ଦରକାର । ପୁଞ୍ଜିବାଦ ଏବଂ ପୁଞ୍ଜିବାଦୀ ଶାସନ ସଂସ୍ଥାର ଦମନ ଓ ଶୋଷଣକୁ ବିପ୍ଳବ ମାଧ୍ୟମରେ ହିଁ ବିଲୋପ କରାଯାଇ ପାରେ । '

ବିପ୍ଳବ ! ଏହାର ଅର୍ଥ କ'ଣ ?

ରୁଷରେ ଶ୍ରମିକମାନେ ସଂଗଠିତ ହୋଇ ତଥା ଅସ୍ତ୍ରଶସ୍ତ୍ର ନେଇ ବହୁତ ଲୋକଙ୍କୁ ମାରିପକାଇଲେ । ବହୁତ ଶ୍ରମିକମାନେ ମଧ୍ୟ ମୃତ୍ୟୁ ମୁଖରେ ପଡିଲେ । ଗଳିରେ ରକ୍ତର ନଦୀ ବୋହିଲା । ଏହାହିଁ ହେଉଛି 'ବିପ୍ଳବ' ।

ତାହେଲେ ?

ଶ୍ରମିକମାନେ ଶାସନ କ୍ଷମତାକୁ ଆସିଲେ ।

ତାହେଲେ, ସେଥିପାଇଁ ବିପ୍ଳବ ଦରକାର ।

କିନ୍ତୁ, ଏଇଠି !

ଏଠାରେ ମଧ୍ୟ ଗୋଟିଏ ବିପ୍ଳବ ହେବା ଦରକାର । ଏଠାରେ ମଧ୍ୟ ଗଳିରେ ରକ୍ତର ନଦୀ ବୋହିବା ଦରକାର । ଏଠାରେ ମଧ୍ୟ ଶ୍ରମିକମାନେ ଶାସନ କ୍ଷମତାକୁ ହାତକୁ ନେବା ଦରକାର ।

'ତା ହେଲେ ଆମେ ନିଜେ ପୋଲିସ ହୋଇଯିବା, ନା ନାହିଁ ?' - ଯୋଶେଫ୍ ପଚାରିଲା ।

'ଆମ୍ଭେମାନେ କେବଳ ପୋଲିସ ନୁହେଁ, ସବୁକିଛି, - ସବୁକିଛି ବନିଯିବା ।' ସେଇ ପତଳା ଲୋକଟି ଦୃଢ଼ତାର ସହିତ ଏ କଥା କହିଲା ।

ସବୁ ଶ୍ରମିକମାନେ ହିଁ ସବୁକିଛି ହେବେ । ଏ ପୃଥିବୀରେ ସମସ୍ତ ଜିନିଷର ମାଲିକ ହେବେ ଶ୍ରମିକମାନେ !

ସମସ୍ତେ ମୁଣ୍ଡ ଉଠାଇଲେ ଏବଂ ଦୃଢ଼ ହେଲେ ।

କୁକୁପନର ଦୋକାନରେ ଅଧରାତି ପର୍ଯ୍ୟନ୍ତ ବାଦ ବିବାଦ ଚାଲିଲା । ଗରମ ପବନ ଦ୍ରୁତ ବେଗରେ ବଢ଼ି ଚାଲିଥିଲା ।

ରାତି ଅଧରେ ସମସ୍ତେ ଚା ଦୋକାନରୁ ଉଠି ଚାଲିଲେ । କୁକୁବନ୍ ଏବଂ ସେଇ ପତଳା ଲୋକଟି ସେଇଠି ଗଡ଼ି ପଡ଼ିଲେ । ସେମାନେ ଶୋଇଗଲେ ।

ଇତିମଧ୍ୟରେ ବାହାର ଦୁଆରର କବାଟରେ କିଏ ଖଟ୍ ଖଟ୍ ଶବ୍ଦ କଲା । ଦୁହେଁଯାକ ଉଠି ପଡ଼ିଲେ । ତଥାପି ଜଣେ ସ୍ତ୍ରୀଲୋକ ଖଟ୍‌ଖଟ୍ କରି ବାହାରେ ଡାକୁଥିଲା-

'ଏଇ ! ଏଇ !'

'କିଏ ?' - କୁକୁପନ ଉଠି ପଚାରିଲା । ପତଳା ଲୋକଟି ମଧ୍ୟ ଉଠିଲା ।

ଦ୍ୱାରର ପାଖେ କବାଟ ଉଠାଇ, କୁକୁପନ ଉତ୍କଣ୍ଠାର ସହ ପଚାରିଲା -

'କିଏ ?'

ଗଳିର ଆଲୁଅ ଲିଭି ଯାଇଥିଲା । ଅନ୍ଧାରରେ କାହାର ଛାଇ ଦେଖାଯାଉଥିଲା । ମଝିରେ କାହାର କାନ୍ଦ ମଧ୍ୟ ଶୁଣାଯାଉଥିଲା । କୁକୁପନ ପୁଣି ପ୍ରଶ୍ନ ପଚାରିଲା-

'କିଏ ? କହୁନା କାହିଁକି, କିଏ ?'

'ଏଇଠି କ'ଣ ଗରମ ପବନ ଅଛି ? ପବନ ?'

କାନ୍ଦୁ କାନ୍ଦୁ ସେ ଗୋଟିଏ ପ୍ରଶ୍ନ ପଚାରିଲା ।

'ହଁ, ସେ ଅଛି ! କ'ଣ ଦରକାର ?' - ପତଳା ଲୋକଟି ଆଗରେ ଆସି ଛିଡ଼ାହେଲା ।

'ମା ! - - - - ' - ସେ ଜୋରରେ କାନ୍ଦି ଉଠିଲା ।

'କିଏ ? - - - - - ଅମ୍ମା ! ମାକୁ କ'ଣ ହୋଇଗଲା ?'

'ମା କୁଆଡେ ନିଖୋଜ ହୋଇ ଯାଇଛି । - - - - - - କ'ଣ ମୋ ମା ଏଆଡେ ଆସିଥିଲା ? କ'ଣ ମୋ ମାକୁ ଦେଖିଥିଲେ ?' - ସେ ଚାପା କଣ୍ଠରେ କାନ୍ଦୁଥିଲା ।

'କେତେବେଳ ଠାରୁ ମା ନାହିଁ ?'

'ବାପାଙ୍କୁ କାଞ୍ଜି ତିଆରି କରିଦେବା ଦରକାର କହି ସେ ସଞ୍ଜ ପରେପରେ କୁଆଡେ ବାହାରି ପଡ଼ିଥିଲା । ମୁଁ ଯାଇ ତାକୁ ଅଟକାଇଲି । ମୋତେ ବହୁତ ମାରପିଟ୍ ମଧ୍ୟ କଲା । ପରେ ତାକୁ କାକୁତି ମିନତି କରି ଫେରାଇ

ଆଣିଲି । କାଞ୍ଜି ପିଆଇଲି । ପରେ ଆମେ ଦୁହେଁ ମଧ୍ୟ ଶୋଇଲୁଁ । ଅଧାରାତିରେ ଯେତେବେଳେ ମୁଁ ଉଠେ ଦେଖେ ତ - - - - ' – ପରେ ସେ ଆଉ କିଛି କହିପାରି ନଥିଲା ।

'ମୋ ସାଙ୍ଗରେ ଆସି ଯା !' – ପତଳା ଲୋକଟି ଚାଲିବାକୁ ଆରମ୍ଭ କଲା । ଅନ୍ନା ତା ପଛରେ ଚାଲିଲା ।

ନିର୍ଜନ ନିବିଡ ଅନ୍ଧକାରରେ ସେ ଦୁହେଁ ଚାଲୁଥିଲେ । ଚାଲୁଥିବା ସମୟରେ ରାସ୍ତାର ଦୁଇ ପାର୍ଶ୍ୱକୁ ସେମାନେ ବଡ ଧ୍ୟାନର ସହିତ ଦେଖୁଥିଲେ । ଅନ୍ନା ପଚାରିଲା - 'ଆପଣଙ୍କୁ ରାସ୍ତା ଜଣା ଅଛି ତ ?'

'କୋଉଠିକାର ରାସ୍ତା ?'

'ସ୍ୱର୍ଗ କୁ ଯିବାର ରାସ୍ତା !'

ସେ ପତଳା ଲୋକ କିଛି ଉତ୍ତର ଦେଲା ନାହିଁ । ଅନ୍ଧକାରରୁ ସେ ସାମାନ୍ୟ ଆଲୁଅକୁ ଆସିବାପରେ ସେ ହସିଲା ।

ଅନ୍ନା ଦ୍ୱିତୀୟ ବାର ପୁଣି ସେଇ ପ୍ରଶ୍ନ କଲା –

'କେମିତି ଯିବା ?'

ଉତ୍ତର ନଥିଲା ।

'କ'ଣ ଆଗେ କେବେ ସେଠାକୁ ଯାଇଛନ୍ତି ?'

'ନାଁ ।'

'ସେଠାକୁ ଗଲେ ଆଉ ଫେରି ହେବ ନାହିଁ ?'

'ନାଁ ।'

'ତା ହେଲେ ମୋ ମାଆ - - - - - - ' - ସେ ପୁଣି କାନ୍ଦିବାକୁ ଆରମ୍ଭ କଲା ।

ପତଳା ଲୋକଟି ସେଇଠି ବୁଲି ଛିଡା ହୋଇ ପଡିଲା । ସେ ଅନ୍ନାର କାନ୍ଧ ଉପରେ ହାତ ରଖିଲା । ସେ ପୁଣି ତାକୁ ସିଧାକରି ଛିଡା କରାଇଲା ।

'କାନ୍ଦ ନାହିଁ । ମା ବର୍ତ୍ତମାନ ସୁଦ୍ଧା ସେଠାକୁ ପହଞ୍ଚି ନଥିବ । ' - ସେ ଅନ୍ନାର ଲୁହ ପୋଛିଦେଲା ।

ସେ ପୁଣି କିଛି କହିଲା ନାହିଁ । କିନ୍ତୁ କହନ୍ତା ବା କ'ଣ ? ଅନ୍ନା ବିଶ୍ୱାସ କରୁଥିଲା ଯେ - ମା ବାପାଙ୍କୁ କାଞ୍ଜି ତିଆରି କରିଦେବା ସକାଶେ କିଛି ଦୂରକୁ ଅର୍ଥାତ୍ ସ୍ୱର୍ଗକୁ ଯାଇଛି ଏବଂ ସେଠାରେ ପହଞ୍ଚିବା ପରେ ଫେରି ଆସିବା ଅସମ୍ଭବ । ତାହେଲେ ତାକୁ କ'ଣ କୁହାଯିବ ?

କିନ୍ତୁ ତା ମନରେ ମଧ୍ୟ ଗୋଟିଏ ସନ୍ଦେହ ଉଠୁଥିଲା । କ'ଣ ପାଗଳୀ ସ୍ତ୍ରୀ ଲୋକ ରାସ୍ତାରେ କୌଣସି ସ୍ଥାନରେ ପଡି ମରିଯାଇ ନଥିବ କି ? କିଏ ଜାଣେ ?

ସେମାନେ ଚାଲିଲେ । କିନ୍ତୁ କୁଆଡେ ଯାଉଛନ୍ତି ସେମାନେ ନିଜେ ମଧ୍ୟ ଜାଣି ନଥିଲେ ।

ସକାଳ ହେଲା । ସହରର ପୂର୍ବ ଦିଗରେ ଯେଉଁ ସ୍ଥାନରେ ନାଳଗୁଡିକ ଆସି ମିଳିତ ହୋଇଛନ୍ତି, ସେହି

ସ୍ଥାନରେ ରାସ୍ତା ବନ୍ଦ ହୋଇଯିବା ଯୋଗୁଁ ସେମାନେ ଅଟକି ଗଲେ । ହ୍ରଦ ଏବଂ ନଡିଆ ବଗିଚା ସେପାରି, ଉଦିତ ହୋଇଥିବା ସୂର୍ଯ୍ୟକୁ ଦେଖୁଥିଲା ସେ ପତଳା ଲୋକଟି । ଅନ୍ନା ପଡି ଯାଉ ଯାଉ ନିକଟରେ ଥିବା ନଡିଆ ଗଛ ଉପରେ ଭରା ଦେଇ ନିଜକୁ ସମ୍ଭାଳି ନେଲା ।

'ହାୟ, ମୋ ମା !' - କହି ସେ ବେହୋସ ହୋଇଗଲା ।

ସେ ପତଳା ଲୋକଟି ତାକୁ ସାମ୍ଭାମ କରି ଭୂଇଁ ଉପରେ ଶୁଆଇଲା । ଆଖପାଖରେ ଲୋକ ଦୌଡି ଆସିଲେ । ଅନ୍ନାକୁ ଗୋଟିଏ ଖଟ ଉପରେ ଶୁଆଇ ଘରକୁ ନେଇଗଲେ ।

ଦ୍ୱିତୀୟ ଦିନ ବର୍ବିନାଟୁ ହ୍ରଦରେ ଗୋଟିଏ ସ୍ତ୍ରୀ ଲୋକର ଶବ ଭାସୁଛି ବୋଲି ଖବର ସହରରେ ଚାରିଆଡେ ବ୍ୟାପିଗଲା ।

## 14

ଅନ୍ନା ଏକୁଟିଆ ହୋଇଗଲା । ଆଗରୁ ଅନ୍ନାର ବାପାଙ୍କର ତ ମୃତ୍ୟୁ ହୋଇଥିଲା । ଏବେ ତାର ବାପାଙ୍କୁ କାଣ୍ଡି ତିଆରି କରିଦେବା ସକାଶେ ତାର ମା ମଧ୍ୟ ସ୍ୱର୍ଗକୁ ଗଲେ । ତାର ବଡଭାଇ ଓ ସାନଭାଇ ମଧ୍ୟ ଜେଲ ଚାଲି ଯାଇଥିଲେ । ବର୍ତ୍ତମାନ ଜୀବନର ବସନ୍ତ ଖୁବ୍ ଶୀଘ୍ର ମରୁଭୂମିରେ ପରିଣତ ହେଲା ।

ସେ ପତଳା ଲୋକଟି ପ୍ରତ୍ୟେକ ଦିନ ସେଠାକୁ ଯାଉଥିଲା । କାଗଜର ଗୋଟିଏ ଛୋଟ ପୁଡିଆ ଅନ୍ନାର ହାତରେ ଦେଇ ଦେଉଥିଲା । ସେଥିରେ ଥିବା ପଇସା ଅନ୍ନାର ଚଳିଯିବା ସକାଶେ ଯଥେଷ୍ଟ ହେଉଥିଲା ।

ସେ ପତଳା ଲୋକଟି ଅନ୍ନାକୁ କିଛି ପଚାରୁ ନଥିଲା । ଏ ଦୁହେଁ ପ୍ରଶ୍ନ ଓ ଉତ୍ତର ସ୍ୱୟଂ ଜାଣିଥିଲେ । ତେଣୁ ପଚାରିବାର ଦରକାର ବା ଥିଲା କ'ଣ ?

ପୁଡିଆ ଦେବାପରେ, ଦୁହେଁ ଦୁହିଁଙ୍କୁ କିଛି ସମୟ ଚାହୁଁଥିଲେ । ଦୁହେଁ ହସୁଥିଲେ । ପୁଣି ସେ ପତଳା ଲୋକ ପଛକୁ ବୁଲି ଚାଲିବାକୁ ଆରମ୍ଭ କରୁଥିଲା । ସେ ତାର ଚାଲିକୁ ଦେଖି ରହୁଥିଲା । ଗଳିର ଶେଷ ମୁଣ୍ଡରେ ପହଞ୍ଚିବା ପରେ ସେ ଥରେ ପଛକୁ ଅନାଇ ଦେଖୁଥିଲା । ସେ ସମୟରେ ଅନ୍ନା ମଧ୍ୟ ଏମିତି ଛିଡା ହୋଇ ରହୁଥିଲା ଯେମିତି ସେ ପତଳା ଲୋକ ତାକୁ ଦେଖି ପାରିବ ।

ଦିନେ ସେ ପତଳାଲୋକ ପୁଡିଆ ଦେବାପରେ କିଛି କହିବାକୁ ଚାହୁଁଥିଲା । କିନ୍ତୁ ସେ କିଛି କହି ପାରିଲା ନାହିଁ । କିନ୍ତୁ କିଛିଦିନ ପରେ ଅନ୍ନା ପୁଡିଆ ନେବା ପରେ ସେ କିଛି ପ୍ରଶ୍ନ ପଚାରିବା ସକାଶେ ଚାହିଁଲା । ହେଲେ ପଚାରି ପାରିଲା ନାହିଁ ।

ଅନ୍ୟ ଏକ ଦିନର ଘଟଣା । ପୁଡିଆ ଦେବା ପରେ ମଧ୍ୟ ଅନ୍ନା ବ୍ୟାକୁଳ ହୋଇ ଛିଡା ହେଲା । ସେ ପତଳା ଲୋକ ପଚାରିଲା -

'କଥା କ'ଣ ?'

ସେ ଆକାଶ ଆଡକୁ ଅନାଇ ଉତ୍ତର ଦେଲା –

'କେତେ ଦିନ ଆଉ ଏମିତି - - - - - - '

'କ'ଣ ମୋ ଠାରୁ ପଇସା ନେଲେ ଅସୁବିଧା ହେଉଛି ?'

'ନେବାରେ ତ ଅସୁବିଧା ନାହିଁ ।'

'ତାହେଲେ ଅସୁବିଧା କୋଉଠି ?'

'ପ୍ରତ୍ୟେକ ଦିନ ଏମିତି ପଇସା ଆଣିଲେ - - - - - - '

ସେ କେବଳ ସାମାନ୍ୟ ହସିଲା । ଅନ୍ନା ପଚାରିଲା –

'କ'ଣ ପ୍ରତ୍ୟେକଦିନ ଏପରି ଆଣିବା ସମ୍ଭବ ?'

'ସେ ଦୁଇଜଣ ଜେଲରୁ ଆସିବା ପର୍ଯ୍ୟନ୍ତ ଏଇଟା ଦରକାର ।'

'କ'ଣ ସେମାନେ ଆସିବେ ?'

'ଆସିବେ ।'

'କହିଥିଲେ ଯେ ଲୋକମାନେ ଥରେ ସ୍ୱର୍ଗ ଗଲେ ଫେରି ଆସିବା ଅସମ୍ଭବ ।'

'ମୁଁ ଏଣ୍ଟୋନି ଏବଂ ରବିଙ୍କ କଥା କହୁଛି ।'

'ସେମାନେ କେବେ ଆସିବେ ?'

'କିଛି ଦିନ ପରେ ।'

'ସେମାନଙ୍କ ଆସିବାପରେ ବି ଏମିତି ଯିବା ଆସିବା କରିବେ ତ ?'

ସେ ଦୁହେଁ ମୁଣ୍ଡପୋତି ଛିଡା ହୋଇଥିଲେ । ଅନ୍ନା କିଛି ପଚାରିବାକୁ ଚାହୁଁଥିଲା । କିନ୍ତୁ ପଚାରି ପାରିଲା ନାହିଁ ।

ସେ ଧୀରେ ଧୀରେ ପଛକୁ ବୁଲି ଚାଲିବାକୁ ଆରମ୍ଭ କଲା । ଗଳିର ଶେଷ ମୁଣ୍ଡରେ ପହଞ୍ଚି ମଧ୍ୟ ସେ ଶେଷଥର ସକାଶେ ପଛକୁ ବୁଲି ଚାହିଁଲା । ଅନ୍ନା ସେତେବେଳକୁ ସେଠିକି ଅନାଇ ରହିଥିଲା ।

ମଉସା ଏବଂ ସାଇମନର ବାପା ଯୋଶେଫ୍ ଅନ୍ନାକୁ ରାତିରେ ଆସି ତାଙ୍କ ଘରେ ଶୋଇଯିବାକୁ କହିଲେ । କିନ୍ତୁ ଅନ୍ନା ନାହିଁ କଲା । ଯେଉଁ ଘରେ ଅନ୍ନାର ମା ରହୁଥିଲା, ଯେଉଁ ଘରେ ଅନ୍ନାର ବାପାଙ୍କ ମୃତ୍ୟୁ ହୋଇଥିଲା, ସେ ଘର ଛାଡି ଆସି ଅନ୍ୟ କୌଣସି ଘରେ ରାତି ବିତାଇବା ଅନ୍ନାର ପସନ୍ଦ ନଥିଲା । ସେ କହିଲା-

'ଦାଦା, ମୁଁ ଆସିବି ନାହିଁ ! ଯେପର୍ଯ୍ୟନ୍ତ ବାପା ଓ ମାଙ୍କ ପାଖକୁ ଯିବାର ସମୟ ନ ଆସିଛି ସେ ପର୍ଯ୍ୟନ୍ତ ମୁଁ ଏଠାରେ ଖଣ୍ଡେ ଚଟେଇ ପକେଇ ଶୋଇଯିବି ।'

ବାପାଙ୍କ ଖଟ ପାଖରେ, ମା ଶୋଇଥିବା ଚଟେଇ ଉପରେ ସେ ଶୋଇ ଯାଉଥିଲା । ସେ ସ୍ୱପ୍ନରେ ବାପା ଓ

ମାଙ୍କୁ ଦେଖୁଥିଲା ଓ ସେମାନଙ୍କ ସହିତ କଥାବାର୍ତ୍ତା ମଧ୍ୟ କରୁଥିଲା ।

ଦିନେ ସନ୍ଧ୍ୟାରେ ବରାଦୁ ସାହେବଙ୍କର କାରଖାନାର ମିସ୍ତ୍ରୀ ଅନ୍ନାର ଘରକୁ ଆସିଥିଲା । ସେ ଅନ୍ନାକୁ ପଚାରିଲା –

'ଆଜିକାଲି କେମିତି ଚଳୁଛୁ ?'

ସେ କିଛି କହିଲା ନାହିଁ ।

'ତୁ କାରଖାନା ଆଡେ ଯାଉନାହୁଁ କାହିଁକି ?'

ସେ ପୁଣି ଚୁପ୍ ରହିଲା ।

'ତୁ କିଛି କହୁନୁ କାହିଁକି ?'

'ମୋର କହିବାର କ'ଣ ଅଛି ?'

'ମୁଁ ପଚାରୁଛି, ତୁ କ'ଣ କାରଖାନାକୁ ଆସିବାକୁ ଚାହୁଁ ?'

'କାହିଁକି ?'

'କାହିଁକି ? - - - - - - ଆସିଲେ କାମ ଦେଇଦେବି ।'

'ବଡଭାଇ ଓ ସାନଭାଇଙ୍କ ବିନା ଅନୁମତିରେ ମୁଁ ଯିବିନାହିଁ ।'

'ସେମାନେ କେବେ ସୁଦ୍ଧା ଆସିବେ ?'

'ହଁ ।'

'ସେତେଦିନ ପର୍ଯ୍ୟନ୍ତ ଖର୍ଚ୍ଚ ସମ୍ପର୍କରେ କ'ଣ କରାଯିବ ?'

'ଯେମିତି ହେଲେ ଚଳିଯିବି ।'

'ତା ହେଲେ ଗୋଟିଏ କଥା ଶୁଣିନେ !'

'କ'ଣ ?'

'ତୋତେ କାମକୁ ଆସିବା ମଧ୍ୟ ଦରକାର ନାହିଁ, ମଜୁରୀ ଆଣି ମୁଁ ଦେଇଯିବି ।'

'ଏ କେମିତି କଥା, ମିସ୍ତ୍ରୀ ? ବିନାକାମରେ ମଜୁରୀ କେମିତି ମିଳିବ ?'

'ସେ ? - - - - - ସେ ତ - - - - !'- ସେ ଏମିତି ଏକ ପ୍ରକାର ହସ ହସିଲା - ଜାଣ ଯେମିତି ଅନ୍ନା ସେ କଥା ଜାଣିଛି ।

ଅନ୍ନା ଶୀଘ୍ର ସେ ସ୍ଥାନରୁ ଚାଲିଗଲା ।

ଅନ୍ନା ଏକଥା ଯୋଶେଫ୍‌କୁ କହି ନଥିଲା ।

କିନ୍ତୁ ପରଦିନ ସେ ପତଳା ଲୋକ ଯେତେବେଳେ ସେଠାକୁ ଆସିଲା, ଅନ୍ନା କହିଲା –

'କାରଖାନାର ମିସ୍ତ୍ରୀ ଏଠିକୁ ଆସିଥିଲା ।'

'କାହିଁକି ?' -ସେ ମୁହଁ ବଙ୍କା କରି, ଭ୍ରୂକୁଞ୍ଚନ କରି ଏ ପ୍ରଶ୍ନ ପଚାରିଲା ।

'ମୋତେ କାରଖାନାକୁ ଯିବାକୁ କହିଲା । ମୁଁ ଯିବିନାହିଁ ବୋଲି କହିଲି । ତା ପରେ ସେ କହିଲା, ସେଠାକୁ ଯିବା ମଧ୍ୟ ଦରକାର ନାହିଁ, ଘରେ ଆଣି ମଜୁରୀ ଦେଇଯିବ । ମୁଁ ଯେତେବେଳେ ପଚାରିଲି - ବିନା କାମରେ ମଜୁରୀ କେମିତି ଦିଆଯିବ, ସେତେବେଳେ ସେ ହସିବାକୁ ଆରମ୍ଭ କଲା ।

'ହଁ ' – ସେ ଏକ ପ୍ରକାର ଉଗ୍ର ହୁଙ୍କାର ଥିଲା ।

ସେ ଦିନ ସନ୍ଧ୍ୟାରେ ମଧ୍ୟ ମିସ୍ତ୍ରୀ ଆସିଥିଲା ।

ସେ ପଚାରିଲା - 'ରାତିରେ ଏଠାରେ କିଏ ରହୁଛନ୍ତି ?'

'ଯୋଶେଫ୍ ଦାଦା ରାତିରେ ଆସି ଏଇଠି ଶୋଉଛନ୍ତି ।'

କିଛି ସମୟ ଚୁପ୍ ରହିବାପରେ ସେ ପୁଣି କହିଲା –

'ଛୋଟ ମାଲିକଙ୍କର କହିବା ଅନୁସାରେ ମୁଁ ଏଇଠିକି ଆସିଛି ।'

ସେ କିଛି କହିଲା ନାହିଁ ।

'ଛୋଟ ମାଲିକ କହିଛନ୍ତି, ଯେ ସେ ରାତିରେ ଏଠିକୁ ଆସିବେ ।'

'କାହିଁକି ?'

'ଏ କଥା ତୋତେ ପଚାରି ଦେବା ସକାଶେ ମୋତେ କୁହାଯାଇଛି ।'

'ଯେତେବେଳେ ସେ ନିଜେ ତାଙ୍କ ଜମି ଉପରକୁ ଆସୁଛନ୍ତି, ସେତେବେଳେ ମୋତେ ଏକଥା ପଚାରିବା କ'ଣ ଦରକାର ?'

'ପଚାରିବାର ଉଦ୍ଦେଶ୍ୟ ? - - - - - ପଚାରିବାରେ ଉଦ୍ଦେଶ୍ୟ ହେଉଛି ଯେ - - - - - ' - ସେ ହସି ପକାଇଲା । ଅନ୍ନା ସେଠାରୁ ଚାଲିଗଲା ।

'ଅନ୍ଧାର ହୋଇଗଲା ।' ବୁଢ଼ା ଯୋଶେଫ୍ କହିଲା ।

ସେ ବାରଣ୍ଡାରେ ଚଟେଇ ଖଣ୍ଡେ ପକାଇ ଶୋଇ ପଡ଼ିଲା । ସେ କାଶୁ କାଶୁ ଶୋଇ ପଡ଼ିଲା । ଅନ୍ନା ଶୋଇ ନଥିଲା ।

ହଠାତ୍ କାହାର ପଦଧ୍ୱନି ଶୁଣାଗଲା ! ଅଗଣାରେ କେହି ଲୋକ ଚଲାବୁଲା କରୁଛି ବୋଲି ଜଣାପଡ଼ିଲା । ଅନ୍ନା ଆସ୍ତେ ଆସ୍ତେ ଡାକିଲା –

'ଦାଦା !'

ଯୋଶେଫ୍ ଉଠିଲା ନାହିଁ । କିନ୍ତୁ ଶବ୍ଦ ବନ୍ଦ ହୋଇଗଲା ।

'ଯଦି କେହି ଆସିଯାଏ, ତା ହେଲେ ?' - ଅନ୍ନା ନିଜକୁ ନିଜେ ପ୍ରଶ୍ନ କଲା । ସେ ଉଠି ପଡ଼ିଲା । ସେ ଅନ୍ଧାରରେ କଟୁରୀ ଖୋଜି ହାତ ପାଖରେ ରଖିଲା । କଟୁରୀକୁ ମୁଣ୍ଡ ପାଖରେ ରଖି ସେ ଶୋଇବାକୁ ଚେଷ୍ଟା କଲା ।

କିଛି ଲୋକ ଦୌଡ଼ିବାର ଶବ୍ଦ ଶୁଣାଗଲା । ତା ସହିତ ଗର୍ଜନ ତର୍ଜନ ମଧ୍ୟ ବାହାରେ ଶୁଣାଗଲା ।

ଅନ୍ନା ହଠାତ୍ ଉଠି ଛିଡ଼ା ହୋଇଗଲା । କଟୁରୀ ହାତରେ ଧରି ସେ ଦ୍ୱାର ଖୋଲିଲା । ବର୍ତ୍ତମାନ ଆଉ ଏକ ଶବ୍ଦ ଶୁଣାଗଲା ।

ଅନ୍ନା ଜୋରରେ ପଚାରିଲା–

'କିଏ ?'

- 'ହାୟରେ !' କ'ଣ ହେଲା ? କ'ଣ ହୋଇଗଲା ? - ଯୋଶେଫ୍ ମଧ୍ୟ ଉଠି ଛିଡା ହୋଇଗଲା । ଅନ୍ନା ଅଗଣା ଉପରକୁ ଚାଲି ଆସିଲା ।

ଯୋଶେଫ୍ ମଧ୍ୟ ଆସିଲା । ଯୋଶେଫ୍ ଡରି କରି ପଚାରିଲା, 'କିଏ, ଝିଅ ? କଥା କ'ଣ ?'

'ଗଳିର ଚାରିଜଣ ଲୋକ ଅଗଣା ଉପରକୁ ଆସିଲେ । ପତଳା ଲୋକଟି ଅନ୍ନା ପାଖକୁ ଆସି କହିଲା–

'କିଛି ନାହିଁ, କିଛି ନାହିଁ ।'

'କିଏ ପାଟି କରୁଥିଲା ?'

'ସେ ଏମିତି ପାଟି କରୁଥିଲା ।'

'ଖାଲି ମିଛଟାରେ କିଏ କ'ଣ ପାଟିକରେ ?'

'ସେ ଖାଲି ଖେଳୁଥାଡ଼, ଖେଳିଲାବାଲା' - ସେ ଅନ୍ନାର ଅଧିକ ପାଖକୁ ଆସିଲା । ପଚାରିଲା -

'ଏ କ'ଣ ? ହାତରେ କଟୁରୀ ?'

'ଏ ? - - - - ଏ' - ସେ ଦାନ୍ତ ଚୋବାଇବାକୁ ଆରମ୍ଭ କଲା ।

'ବର୍ତ୍ତମାନ ଆଉ କୌଣସି ଉପଦ୍ରବ ହେବାର ଆଶଙ୍କା ନାହିଁ । ଯାଇ ଶୋଇପଡ ।' - - - - - ସେ ପଛକୁ ଫେରି ଚାହିଁଲା । ଅନ୍ୟ ଲୋକମାନେ ମଧ୍ୟ ତା ପଛେ ପଛେ ଚାଲିଲେ ।

ଯୋଶେଫ୍ ଅନ୍ନାକୁ ପଚାରିଲା -

'କିଏ ପାଟି କରୁଥିଲା - ଝିଅ ?'

'କେଜାଣି, ଛୋଟ ମାଲିକ ହୋଇ ଥିବେ ବୋଧେ ।' ସେ ପୁଣି କିଛି ସମୟ ଚୁପ୍ ହୋଇ କହିବାକୁ ଆରମ୍ଭ କଲା -

'ଯଦି ଛୋଟ ମାଲିକ ଥିଲେ ତାହେଲେ - - - - - '

'ତାହେଲେ ?'

'ଯଦି ସାପକୁ ଆଘାତ କରି ଛାଡି ଦିଆଯାଏ ତାହେଲେ - - - - - -'

'ଛାଡି ଦେଲେ କ୍ଷତି କ'ଣ ?'

'ତାହେଲେ ସେ ସୁବିଧା ପାଇବା ମାତ୍ରେ ଛୋବଳ ମାରିବ ।'

'ସେ ତ ଏମିତି ଏକ ପ୍ରକାର ଜାତି ତାକୁ ଆଘାତ କଲେ ବା ସାମାନ୍ୟ କଷ୍ଟ ଦେଲେ ସେ ପୁଣି ଆକ୍ରମଣ କରିବ - - - - - କି, ନା ?'

'ହଁ, ଆଘାତରେ ମଧ୍ୟ ବିପଦ, ମାରି ପକାଇଲେ ମଧ୍ୟ ବିପଦ ।'

'ତାହେଲେ କ'ଣ କରାଯିବ ?'

'ହେ ଭଗବାନ !' - ଯୋଶେଫ୍ ଆକାଶକୁ ଅନାଇଲା ।

ଦିନ ଚାଲିଗଲା । ଅନ୍ନା ସକାଳେ ରୋଷେଇ କରିବା ସକାଶେ ଚୁଲୀ ଜଳାଉ ଥିଲା । ବାହାରୁ କିଏ ଡାକ ଦେଲା । ସେ ଶୀଘ୍ର ବାହାରକୁ ଆସିଲା । ଅଗଣାରେ ପାଞ୍ଚ ଛ ଜଣ ଲୋକ ଛିଡା ହୋଇଥିଲେ । ପଦ୍ମନାଭନ୍,

ଅକୁତନ, ଯୋଶେଫ୍ ଏବଂ ଶଙ୍କୁ ଆଦିଙ୍କୁ ସେ ଜାଣିଥିଲା । ସେମାନେ ଦୁଇ ତିନିଥର ଏଣ୍ଟୋନି ଏବଂ ରକ୍ସି ସହିତ ଆସିଥିଲେ । ବାକି ଦୁଇଜଣ ଲୋକଙ୍କୁ ସେ ଆଦୌ ଜାଣି ନଥିଲା ।

ସବା ଆଗରେ ଛିଡା ହୋଇଥିଲା ଜଣେ ବାଙ୍ଗରା ମଣିଷ । ରଙ୍ଗ ସାବନା । ଗୋଲ ଗାଲ । ଆଖି ଛୋଟ ଛୋଟ । କିନ୍ତୁ ଆଖିରେ ଚମକ ଥିଲା । ଅନ୍ୟ ସମସ୍ତେ ତାଙ୍କୁ ଆଦର ଅଭ୍ୟର୍ଥନା କରିବା ଲାଗି ଛିଡ଼ା ହୋଇଥିଲେ । ସେଇ ବାଙ୍ଗରା ମଣିଷଟି ମଇଳା ଲୁଗାପଟା ପିନ୍ଧିଥିଲା । କିନ୍ତୁ ସେଇ ଲୋକର ହାତରେ ଗୋଟିଏ ଦାମିକା ଘଣ୍ଟା ଏବଂ ପକେଟରେ ଗୋଟିଏ ଦାମିକା କଲମ ଥିଲା । ଚମତ୍କାର ଗୋଟିଏ ଥଳି ମଧ୍ୟ ସେ ବେପରୁଆ ଭାବରେ ଧରିଥିଲା ।

ଅନ୍ନାଙ୍କୁ ଦେଖିବା ମାତ୍ରେ ସେ ଗମ୍ଭୀରତା ସହକାରେ ହସିଲା । ପଦ୍ମନାଭନ୍ ନମ୍ରତାର ସହିତ ତାଙ୍କର ପରିଚୟ ଦେଲା –

'ଏ ଏଣ୍ଟୋନିର ଛୋଟ ଭଉଣୀ ।'

'ଗମ୍ଭୀର ଭାବରେ ଛୋଟ ହସଟିଏ ହସି ସେ 'ବାଙ୍ଗରା' ମଣିଷଟି ଅନ୍ନାଙ୍କୁ ପଚାରିଲା –

'ମୋତେ ଜାଣିଛ ?'

ଅନ୍ନା କେବଳ ତବ ତବ ହୋଇ ଅନାଇ ରହିଥିଲା ।

'ଏ ଆମର - - - - ' - ପଦ୍ମନାଭନ୍ ପରିଚୟ କରାଇବା ସକାଶେ ଆରମ୍ଭ କଲା । କିନ୍ତୁ ମଝିରେ ସେଇ ବାଙ୍ଗରା ମଣିଷଟି ଅଟକାଇଲା । ସେ ପୁଣି ଅନ୍ନାଙ୍କୁ କହିଲା –

'ଏଣ୍ଟୋନି, ରକ୍ସି - ସମସ୍ତେ ପଅର ଦିନକୁ ଆସିବେ । ସେମାନଙ୍କ ବିଷୟରେ ଖବର ଦେବାକୁ ମୁଁ ଏଠିକୁ ଆସିଛି ।'

'ଆସିବେ ? - - - - କେବେ ଆସିବେ ?' ଅନ୍ନାର ହୃଦୟ ଆନନ୍ଦରେ ନାଚି ଉଠିଲା ।

'ପଅରଦିନ ଆସିବେ ? ଜେଲରୁ ଫେରୁଥିବା ଲୋକଙ୍କୁ ରାଜୋଚିତ ସ୍ୱାଗତ ସମ୍ବର୍ଦ୍ଧନା ଦିଆଯିବାର ନିଷ୍ପତ୍ତି କରାଯାଇଛି । ଅନ୍ନାର ମଧ୍ୟ ଆସିବା ଦରକାର ।'

'କୋଉଠିକି ଆସିବା ଦରକାର ?'

'ଖବର ଦିଆଯିବ । - - - - ତମେ ଖୁସି ଅଛ ତ ?'

'ହଁ, ଖୁସି ଅଛି ।'

'ତାହେଲେ ମୁଁ ଆସୁଛି ?'

'ହଁ ।'

ସେ ପଛକୁ ବୁଲିକରି ଚାଲିଗଲା । ଅନ୍ୟ ଲୋକମାନେ ମଧ୍ୟ ପଛେ ପଛେ ଚାଲିଗଲେ । କେବଳ ଯୋଶେଫ୍ ସେଠାରେ ରହିଗଲା । ସେ ଅନ୍ନାଙ୍କୁ ପଚାରିଲା -

'ସେମାନେ କିଏ, ଜାଣିଛୁ ?'

'କିଏ ?'

'ଆମ୍ଭମାନଙ୍କର ନେତା । ନେତାମାନେ ଈଶ୍ୱରଙ୍କ ପରି ବଡ ଲୋକ । ଗରିବ ଲୋକମାନଙ୍କୁ ଉଦ୍ଧାର କରିବା ସକାଶେ ସେମାନେ ଏଠିକୁ ଆସିଛନ୍ତି । ଗୋଟିଏ ନିଶ୍ୱାସରେ ଯୋଶେଫ୍ ଏସବୁ କହି ଚାଲିଥିଲା ।

'ତା ପରେ ସେମାନେ ଯେତେବେଳେ ଆଉ ଥରେ ଆସିବେ ସେତେବେଳେ ସେମାନଙ୍କୁ ଈଶ୍ୱର ମନେକରି ସ୍ୱାଗତ କରିବୁ'- ସେ ଏକଥା କହି ଶୀଘ୍ର ସେଠାରୁ ଚାଲିଗଲା ।

'ଆସିବେ ? ମୋ ବଡ ଭାଇ ଓ ସାନ ଭାଇ ଆସିବେ !' - ଅମ୍ମାର ହୃଦୟ ଆନନ୍ଦରେ ବିଭୋର ହୋଇ ପଡିଲା ।

## 15

'ସାଥୀ' (କମ୍ରେଡ୍) ନୀଳକଣ୍ଠନ୍ - ଏ ହେଉଛି ତାଙ୍କର ନାମ - ସେ ଉଚ୍ଚକୁଳ ସମ୍ଭୂତ, ବିଦ୍ୱାନ ଏବଂ ଖୁବ୍ ଉଚ୍ଚ ଶିକ୍ଷିତ ମଧ୍ୟ ।

ସେ ଯେମିତି ରାଜନୈତିକ, ଅର୍ଥ ନୈତିକ, ଏବଂ ସାଂସ୍କୃତିକ ବିଷୟରେ ସମ୍ପୂର୍ଣ୍ଣ ଭାବରେ ସଚେତନ, ଠିକ୍ ସେହିପରି ଭାବରେ ସେ ଇତିହାସ ଏବଂ ତତ୍ତ୍ୱ ଶାସ୍ତ୍ରରେ ମଧ୍ୟ ପଣ୍ଡିତ । ଆଦର୍ଶପ୍ରେମ, ସ୍ୱାଧୀନତା ବୋଧ, ଏବଂ ଉଚ୍ଚାକାଂକ୍ଷା, ତାଙ୍କୁ ଆନ୍ଦୋଳନରେ ଯୋଗ ଦେବା ପାଇଁ ପ୍ରେରଣା ଦେଇଥିଲା । ସୁଖ ସ୍ୱାଚ୍ଛନ୍ଦ୍ୟପୂର୍ଣ୍ଣ ଜୀବନଯାପନ, ସରକାରୀ ଚାକିରୀ ଛାଡି ସେ ସାଧାରଣ ଜନତାଙ୍କ ସେବାଲାଗି ଏବଂ ସେମାନଙ୍କୁ ନେତୃତ୍ୱ ଦେବାଲାଗି ଆଗେଇ ଆସିଲେ । ସେ ପ୍ରତିଜ୍ଞା କଲେ, ଯେ ରାଜନୈତିକ ଦାସତ୍ୱ ର ଅପସାରଣ ସଙ୍ଗେ ସଙ୍ଗେ ଆର୍ଥି କ, ସାମାଜିକ ଏବଂ ସାଂସ୍କୃତିକ ଗୋଲାମୀର ଶେଷ କରିବାକୁ ପଡିବ ।

ମାଲିକଙ୍କ ପରେ ତାଙ୍କର ଜନ୍ମ ହୋଇଥିଲା । ଆର୍ଥିକ, ସାମାଜିକ, ଏବଂ ସାଂସ୍କୃତିକ କ୍ଷେତ୍ରରେ ସେ ଲୋକମାନଙ୍କର ପ୍ରଭୁତ୍ୱ ଥିଲା । ବିଦେଶୀ ଶାସନର ଅତ୍ୟାଚାର ସେମାନଙ୍କୁ ସହିବାକୁ ପଡୁଥିଲା । ତଥାପି ସେଇ ଯୁବକ ଗୋଲାମମାନଙ୍କୁ ଉଦ୍ଧାର କରିବା ସକାଶେ କଷ୍ଟ ସହିବାର ନଜିର ଅଛି । ତେଣୁ ଏ ପରିପ୍ରେକ୍ଷୀରେ ସେ ଆକାଶରୁ ଦେବଦୂତ ପରି ଓହ୍ଲାଇ ଆସି ସାଧାରଣ ଜନତାର ସେବା କରିପାରିଛନ୍ତି । ତେଣୁ ପ୍ରତ୍ୟେକ ଲୋକ ତାଙ୍କର ପୂଜା କଲେ ।

ସେ ଗେରୁ ରଙ୍ଗର, ବାଙ୍ଗରା, ଗୋଲ ଗାଲ ଛୋଟ ଛୋଟ ଆଖିଥିବା ମଣିଷଟି କିପରି ଅଲଗା ପ୍ରକାରର ଲୋକ ଥିଲେ । ତାଙ୍କ କୁର୍ତ୍ତାରେ ବୋତାମ ନଥିଲା ଏବଂ କୁର୍ତ୍ତା ଭାରି ମଇଳା ଥିଲା । କିନ୍ତୁ ତାଙ୍କ ପାଖରେ ଦାମିକା ଘଡି ଓ କଲମ ଥିଲା । ପାଦରେ ଜୋତା, ହାତରେ ଚମଡାର ଥଳି ଧରି କୁଆଡେ ଦୂର ଦୃଷ୍ଟି ନିକ୍ଷେପ କରି ସେ ଆଗେଇ ଚାଲିଥିଲେ ।

ସାଥୀ ନୀଳକଣ୍ଠନ । ସେ କଷ୍ଟ ସହିଛନ୍ତି ଏବଂ ଦୁନିଆର ସମସ୍ତଙ୍କର ଭାର ଉଠାଇଲାବାଲାଙ୍କର ପ୍ରିୟ ନେତା, ରକ୍ଷକ, ଆଚ୍ଛାର୍ଯ୍ୟ (ଗୁରୁ) ବନି ସାରିଥିଲେ । ଦାନ୍ତଘଷା ନାହିଁ, ଗାଧୁଆ ପାଧୁଆ ନାହିଁ, ମୁଣ୍ଡ କୁଣ୍ଡା ନାହିଁ, ସେ ସାଧାରଣ ଜନତାଙ୍କ ମଧ୍ୟରେ ଘୁରି ବୁଲୁଥିଲେ । କିନ୍ତୁ ତାଙ୍କର କେଉଁ କେଉଁ କଥାରେ ସାମାନ୍ୟ ବେଶୀ କମ ଥିଲା, ଯେମିତିକି ପାଣିରେ ତେଲ ମିଶା ହୋଇଛି ।

ଜେଲ ଫେରନ୍ତା ଏଣ୍ଟୋନି, ରକ୍କି, ସାଇମନ୍, ମତ୍ତାୟ୍ରୀ, କୋଚୟ୍ୟପନ୍, ଏବଂ ଶୋରୀ ଇତ୍ୟାଦିଙ୍କୁ ରାଜୋଚିତ ସ୍ୱାଗତ ସମ୍ବର୍ଦ୍ଧନା ଦିଆଯିବ ବୋଲି ସାଥୀ ନୀଳକଣ୍ଠନ୍ ହିଁ ନିଷ୍ପତ୍ତି ନେଇଥିଲେ । ଗୋଟିଏ ଗୁପ୍ତ ସଭାରେ, ଯେଉଁଥିରେ ପଦ୍ମନାଭନ୍, ଅଚ୍ଯୁତନ, ଏବଂ ଯୋଶେଫ୍ ଯୋଗ ଦେଇ ଥିଲେ, ସେ କହିଲେ, ଯେ ବିପ୍ଳବ ସକାଶେ ଶହୀଦ୍‌ଙ୍କର ଆବଶ୍ୟକତା ରହିଛି । ସେ ଉପଦେଶ ଦେଇ କହିଲେ ଯେ, ଶହୀଦ୍ ମାନଙ୍କୁ ଆଦର ଅଭ୍ୟର୍ଥନା କଲେ, ଅଧିକ ଶହୀଦ୍ ମିଳିବାର ସମ୍ଭାବନା ରହିଛି । ସେ ଆହୁରି ମଧ୍ୟ କହିଥିଲେ, ଯେ ଏଣ୍ଟୋନି ପରି ଯେଉଁ ଲୋକମାନେ ଶ୍ରମିକମାନଙ୍କର ମାମୁଲି ବା ସାଧାରଣ ଦାବୀଗୁଡିକ ସକାଶେ ଆନ୍ଦୋଳନ କରିଥିଲେ ସେମାନଙ୍କୁ ଆଦର ସ୍ୱାଗତ କରିବା ଅର୍ଥ ଶ୍ରମିକ ଶ୍ରେଣୀର ନ୍ୟାଯ୍ୟ ଦାବୀକୁ ମାନିନେବା । ସେ ପୁଣି କହିଲେ, ଯେ ଶ୍ରମିକମାନେ ସଂଗଠିତ ହୋଇ ସେମାନଙ୍କର ଶକ୍ତି ପ୍ରଦର୍ଶିତ କରିବାର ସମୟ ଆସିଛି । ଜେଲ ଫେରନ୍ତା ମାନଙ୍କୁ ରାଜୋଚିତ ସମ୍ବର୍ଦ୍ଧନା ଦିଆଯିବ ବୋଲି ଏହିଭଳି ଭାବରେ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା ।

କାରଖାନା ତଥା ଶ୍ରମିକ ବସ୍ତି ମାନଙ୍କରେ ଜୋରସୋରରେ ଏକଥା ପ୍ରଚାର କରାଗଲା । ଆବାଳ ବୃଦ୍ଧ ବନିତା ଜେଲରୁ ଫେରୁଥିବା ବିପ୍ଳବୀ ମାନଙ୍କୁ ସ୍ୱାଗତ କରିବା ସକାଶେ ଉତ୍କଣ୍ଠିତ ହୋଇ ରହିଲେ । ଅନ୍ନା ତା ଭାଇମାନଙ୍କର ସ୍ୱାଗତ ସଭାକୁ ଯିବା ସକାଶେ ଲୁଗାପଟା ସଫା କରିନେଲା ।

ସେ ଯୋଶେଫଙ୍କୁ ପଚାରିଲା -

'ସେମାନେ ଏଠିକୁ ଆସିବାପରେ ସଭାକୁ ଯିବେ, କି ନା ?'

'ନା । ମୋତେ ଏମିତି ଲାଗୁ ନାହିଁ । ସଭା ଓ ଶୋଭାଯାତ୍ରା ପରେ ସେମାନେ ଏଠିକୁ ଆସିବେ ।'

'ତାହେଲେ ପ୍ରଥମେ ଆମକୁ ସେଇଠି ଛିଡା ହୋଇ ରହିବାକୁ ପଡିବ । ତାହେଲେ ଆସିବା ସମୟରେ ଦେଖା ମିଳିବ ।'

'ହଁ । ଏକାଠି ଆମେ ଯିବା ତା ହେଲେ ।'

ଦ୍ୱିପ୍ରହର ସମୟରେ ସେଇ ପତଳା ଲୋକ ଆସି ପହଞ୍ଚିଲା । ସେ ଅନ୍ନା ହାତରେ ଗୋଟିଏ ଟଙ୍କା ଦେଲା । ଅନ୍ନା ପଚାରିଲା -

'ଆଜି କାହିଁକି ଏକଥା ?'

'ଏଣ୍ଟୋନି ଏବଂ ରକ୍କି ଯେତେବେଳେ ଆସିବେ, ସେମାନଙ୍କୁ ତ ପୁଣି ଖାଇବାକୁ ଦେବାକୁ ପଡିବ ?'

'ତାହେଲେ ଦାଦାଙ୍କର ପୁଅମାନେ ମଧ୍ୟ ଆସିବେ ।'

'ସେମାନଙ୍କ ପାଇଁ ମଧ୍ୟ ସେଠାରେ ଦେଇ ଆସିଛି ।'

'ସନ୍ଧ୍ୟାରେ ।'

'ମୋର ସେଠିକୁ ଯିବା ଦରକାର କି ?'

'ଯିବା ତ ଉଚିତ ।'

ସେ କିଛି ସମୟ ମୁହଁ ତଳକୁ କରି ଛିଡା ହେଲା । ତାପରେ ହଠାତ୍ ମୁହଁ ଉଠାଇ କହିବାକୁ ଲାଗିଲା –

'କେତେ ପ୍ରକାର ବିଚାର ଆଲୋଚନା କରାଯାଉଛି ?'

'କି ପ୍ରକାର ବିଚାର ଆଲୋଚନା ? କିଏ ଚିନ୍ତା କରୁଛି ? କ'ଣ ମୋ ଭାଇମାନଙ୍କୁ ପୁଣି ବାନ୍ଧି କରି ନେଇଯିବେ ?'- ତାର ଗଳା ରୁଦ୍ଧ ହୋଇ ଆସିଲା ।

'ନାଁ, ନାଁ । ମୁଁ ସେକଥା କହୁନାହିଁ ।'

'ତା ହେଲେ କ'ଣ ?'

'କ'ଣ ହେଉଛି ବା ହେବ, ସେ କଥା - ବର୍ତ୍ତମାନ ସୁଦ୍ଧା ସ୍ପଷ୍ଟ କରି କୁହାଯାଇନାହିଁ । କେତେ ପ୍ରକାର ବିଚାର ବିମର୍ଷ ଚାଲିଛି - ଏସବୁ କାରଖାନାରେ ଏବଂ ସାହେବଙ୍କର ବଙ୍ଗଳାରେ ଚାଲିଛି ।'

'ମୋର ପ୍ରାର୍ଥନା ହେଉଛି ଯେ, ମୋ ଭାଇମାନଙ୍କୁ ଯେମିତି ଆଉ ଧରି ନ ନିଅନ୍ତି । ତାପରେ ଆଉ ଯାହା କିଛି ହୋଇଯାଉ, କିଛି ଯାଏ ଆସେ ନାହିଁ ।'

ସେ ଅନ୍ନାକୁ ଏକ ପ୍ରକାର ଗଭୀର ଭାବରେ ଦେଖୁଥିଲା । ଅଚାନକ ଭାବରେ ଅନ୍ନା ମୁହଁ ତଳକୁ କରି ଧୀର ସ୍ୱରରେ ସେ ପତଳା ଲୋକକୁ ପଚାରିଲା -

'ଭାଇମାନଙ୍କର ଆସିବା ସମୟରେ ସେ କ'ଣ ସେଠାରେ ରହିବେ ?'

'ହଁ', - ସେ ମୁହଁ ତଳକୁ କରି ସେଠାରେ ଛିଡା ହୋଇ ରହିଲା । ପୁଣି ହଠାତ୍ ବୁଲିପଡି ଚାଲିଗଲା ।

ଗଳିର ଶେଷ ମୁଣ୍ଡରେ ପହଞ୍ଚି ସେଠାରେ ସେ ପୁଣିଥରେ ବୁଲି ଅନେଇଲା । ଅନ୍ନା ମଧ୍ୟ ତାକୁ ଦେଖୁଥିଲା ।

ଅନ୍ନା ଚାଉଳ, ଟୋପିଓକା[1], ମାଛ ଇତ୍ୟାଦି ଜିନିଷପତ୍ର କିଣିନେଲା । ପୁଣି ଭାତ ତିଆରି କରିନେଲା । ଟୋପିଓକା ତିଆରି, ଏବଂ ମାଛ ତରକାରୀ ରାନ୍ଧିନେଲା । କିନ୍ତୁ ସେ ନିଜେ କିଛି ଖାଇଲା ନାହିଁ । ଆଜି ଭାଇମାନେ ଖାଇସାରିବା ପରେ ବଳକା ଖାଦ୍ୟତକ ହିଁ ଖାଇବ ।

ସେ ସଫା ଲୁଗା ଏବଂ ବ୍ଲାଉଜ୍ ପିନ୍ଧି ନେଲା । ଭାଇମାନଙ୍କୁ ଦେଖିବା ସକାଶେ, ସଭାରେ ଯୋଗ ଦେବା ପାଇଁ, ସେ ପ୍ରସ୍ତୁତ ହୋଇଗଲା । ଗଳିରେ ବୁଢା ଯୋଶେଫ୍ ଡାକିଲା –

'ଝିଅ, ତୁ କ'ଣ ଯିବୁ ନାହିଁ ?'

'ହଁ, ମୁଁ ଯିବି ଦାଦା ! ଟିକିଏ ଛିଡା ହୁଅ ।'

ସେ ଗଳିରେ ପହଞ୍ଚି ଯୋଶେଫ୍ ସହିତ ଚାଲିବାକୁ ଆରମ୍ଭ କଲା । ଯୋଶେଫ୍ ନିଜ ପୁଅମାନଙ୍କୁ ଦେଖିବା ସକାଶେ, ଏବଂ ଅନ୍ନା ନିଜ ଭାଇମାନଙ୍କୁ ଦେଖିବା ସକାଶେ - ସେମାନେ ଖୁସିର ସହିତ ଶୀଘ୍ର ଶୀଘ୍ର ଚାଲୁଥିଲେ ।

1. ଏକ ପ୍ରକାର ଗଛର କନ୍ଦା । କେରଳରେ ଟୋପିଓକା ଖିଆଯାଏ । ଗରିବଙ୍କର ଲୋକ ପ୍ରିୟ ଖାଦ୍ୟ ।

ସେମାନେ ଯେତେବେଳେ ଗଳିର ମୁଣ୍ଡରେ ପହଞ୍ଚିଲେ ସେତେବେଳେ ବରାଦୁ ସାହେବଙ୍କର କାରଖାନାର ମିସ୍ତ୍ରୀ, ଚା ଦୋକାନୀ ସୋନି, ଏବଂ ପାଖରେ ଆଉ ତିନି ଚାରିଜଣ ଲୋକ ଛିଡା ହୋଇଥିଲେ । ମିସ୍ତ୍ରୀ ହସିକରି ପଚାରିଲା -

'ଦାଦା - ଝିଅାରୀ ମିଶିକରି କୁଆଡେ ଯାଉଛ ?'

ଯୋଶେଫ୍ ଉତ୍ତର ଦେଲା -

'ଆଜି ସେମାନେ ଆସିବେ । ଆମେ ଯେ ସେଆଡେ ଯାଉଛୁ । ସଭା ଏବଂ ଶୋଭାଯାତ୍ରା ଅଛି ।'

'ଏ ଜାହିଁକି ଚୁପଚୁପ ଚାଲୁଛି ।'

'ମୋର କହିବାର କ'ଣ ଅଛି, ମିସ୍ତ୍ରୀ ?'- ଅନ୍ନା ଧିର ଗଳାରେ କହିଲା ।

'ହୁଁ ! ଚାଲି ଯା, ଚାଲି ଯା ।' ମିସ୍ତ୍ରୀର ମୁହଁରେ ପୁଞ୍ଜିଭୂତ ରାଗର ସ୍ଫୁରଣ ହୋଇ ଆସୁଥିଲା ।

ଯୋଶେଫ୍ ଏବଂ ଅନ୍ନା ଦୁହେଁ ଚାଲିଲେ । ପଛରୁ ଗୋଟିଏ ଅଟ୍ଟହାସ୍ୟ ଶୁଣି ସେମାନେ ଫେରି ଅନେଇଲେ । ମିସ୍ତ୍ରୀ ଏବଂ ତାର ସାଥୀମାନେ ଠରା ଠରିରେ କିଛି କଥାବାର୍ତ୍ତା କରି ହସୁଥିଲେ ।

ଶୋଭାଯାତ୍ରା ଆରମ୍ଭ ହୋଇ ଯାଇଥିଲା । ଶୋଭାଯାତ୍ରାରେ ସ୍ଲୋଗାନ୍ ଧ୍ୱନି ଦିଆଯାଇ ଥିଲା । ଯୋଶେଫ୍ ଏବଂ ଅନ୍ନା ଉଭୟେ ଜୋରରେ ଦୌଡିବାକୁ ଆରମ୍ଭ କଲେ ।

ନିଅ, ଏଥର ଆସିଗଲେ । ହଜାର ହଜାର ଲୋକଙ୍କ ସାମନାରେ ସେମାନେ ଛିଡା ହୋଇଛନ୍ତି ଏବଂ ସେମାନଙ୍କର ସ୍ୱାଗତ କରାଯାଉଛି । ଯୋଶେଫ୍ ନିଜର ପୁଅମାନଙ୍କୁ ଛାତିରେ ନେଇ କାନ୍ଦି ପାରୁ ନଥିବାରୁ ନିରାଶ ହୋଇଥିଲା । ଏବଂ ଅନ୍ନା ମଧ୍ୟ ନିଜ ଭାଇମାନଙ୍କ ନିକଟରେ କାନ୍ଦି ପାରୁ ନଥିବାରୁ ନିରାଶ ହୋଇଥିଲା । ସେମାନେ ଲୋକଙ୍କର ଭିଡ ଅତିକ୍ରମ କରି ଆଗେଇବାକୁ ଆରମ୍ଭ କଲେ - ନିଜ ପୁଅ ଏବଂ ଭାଇମାନଙ୍କ ନିକଟରେ ପହଞ୍ଚିବା ପାଇଁ କିଏ କହିଲା -

'ସେ ଏଣ୍ଟୋନିର ଭଉଣୀ !'

ସମସ୍ତେ ତାକୁ ରାସ୍ତା ଦେଲେ । ତାକୁ ଆଗରେ ପ୍ୟାଣ୍ଡେଲର ଠିକ୍ ଧାରରେ ଜାଗା ମିଳିଲା ! ଯୋଶେଫ୍ ଅନ୍ନାର କାନ ପାଖରେ ଆସ୍ତେ ଆସ୍ତେ କହିଲା, 'ଝିଅ, ବର୍ତ୍ତମାନ ତୁ କିଛି କହିବୁ ନାହିଁ !'

'କ'ଣ ?'

'ମା'ର କଥା ସେମାନଙ୍କୁ ବର୍ତ୍ତମାନ କିଛି କହିବୁ ନାହିଁ ।' ସେ ମୁଣ୍ଡପୋତି ଧିରେ ଧିରେ ଚାଲିଲା ।

ଏଣ୍ଟୋନି, ରକ୍ସି, ମତାୟୀ, କୋଚଯ୍ୟପନ୍ ଏବଂ ଶୋରୀ ଆଗରେ ଚାଲୁଥିଲେ । ସମସ୍ତେ ଲାଲରଙ୍ଗର ଫୁଲମାଳ ପିନ୍ଧିଥିଲେ । ସେ ସମସ୍ତଙ୍କ ପଛରେ ଥିଲେ ନୀଳକଣ୍ଠନ୍ । ତାଙ୍କ ଗଳାରେ ତ ଲାଲରଙ୍ଗର ଅନେକ ଫୁଲମାଳ ଥିଲା । ସେ ତାଙ୍କର ବଜ୍ରମୁଷ୍ଟି ଉଠାଇ କହୁଥିଲେ -

'ଇନ୍‌କିଲାବ – ଜିନ୍ଦାବାଦ !'

ପଦ୍ମନାଭନ୍, ଅଚ୍ଯୁତନ, ଯୋଶେଫ୍, ଏବଂ ଶଙ୍କୁ ସେ ସ୍ଲୋଗାନ୍‌କୁ ଆବୃତ୍ତି କରୁଥିଲେ । ଅନ୍ୟ ଲୋକମାନେ ସ୍ଲୋଗାନ୍ ଦେଇପାରୁନଥିଲେ । ସେମାନଙ୍କୁ ତ ସେ ଶବ୍ଦର ଅର୍ଥ ପର୍ଯ୍ୟନ୍ତ ଜଣା ନଥିଲା ।

'ସେ କ'ଣ ?'- ଜଣେ ଶ୍ରମିକ ତାର ପାଖରେ ଥିବା ଅନ୍ୟଜଣେ ଶ୍ରମିକକୁ ପଚାରିଲା ।

'କେଉଁ କଥା ?'

ଇନ୍‌କି ଲାବର ଅର୍ଥ କ'ଣ ?

'କିଛି ଗୋଟାଏ ବଡ ଜିନିଷ ହୋଇଥିବ !'

'ଜମିଦାର- ପୁଞ୍ଜିପତି- ସାମ୍ରାଜ୍ୟବାଦୀ ମାନଙ୍କର ନାଶ ହେଉ !' ପୁଣି ନୀଳକଣ୍ଠନ୍ ସ୍ଲୋଗାନ୍ ଦେଲେ । ସେଇ ସ୍ଲୋଗାନର ପୁନରାବୃତ୍ତି କଲେ । ସାଥୀ ନୀଳକଣ୍ଠନ୍ ପଛକୁ ଅନାଇ ଦେଖିଲେ ।

ପଦ୍ମନାଭନ୍ ତାଙ୍କ କାନରେ କହିଲା -

'ସେମାନେ ବୁଝି ନ ପାରିବା ହେତୁ ସ୍ଲୋଗାନ ଦେଇପାରୁନାହାନ୍ତି ।'

'ସବୁ ଦେଶର ଶ୍ରମିକମାନେ ସଂଗଠିତ ହୋଇଯାଅ !'- ସାଥୀ ନୀଳକଣ୍ଠନ୍ ବଜ୍ରମୁଷ୍ଟିକରି ଆକାଶକୁ ଅନାଇ ସ୍ଲୋଗାନ୍ ଦେଲେ । ହଜାର ହଜାର ଶ୍ରମିକ ତାର ଆବୃତ୍ତି କଲେ ।

'ପୁଞ୍ଜିବାଦ - ମୁର୍ଦ୍ଦାବାଦ !'

ସମସ୍ତେ ତାକୁ ଦୋହରାଇଲେ ।

'ବିପ୍ଳବର ଜୟ ହେଉ !'

ସାରା ସହର କମ୍ପି ଉଠିଲା । ସଡକର ଦୁଇ ପାଖରେ ଛିଡା ହୋଇଥିବା ଦର୍ଶକମାନଙ୍କ ଚେହେରାରେ ଭୟର ଆଭାସ ଲକ୍ଷ୍ୟ କରାଗଲା । କେହି ଜଣେ ପଚାରିଲା –

'ବିପ୍ଳବର ଅର୍ଥ କ'ଣ ?'

ନିକଟରେ ଛିଡା ହୋଇଥିବା ଜଣେ ପାଠପଢୁଆ ବ୍ୟକ୍ତି ଉତ୍ତର ଦେଲା -

'ମାନେ ହେଉଛି ପୁଞ୍ଜିପତି, ପୁଲିସବାଲା ଏବଂ ଅଫିସରମାନଙ୍କୁ ମାରି ପକାଇବା ଦରକାର ।'

ଦୁହେଁ ପରିହାସର ଭଙ୍ଗୀରେ ହସିଲେ ।

ଲୋକମାନଙ୍କର ପ୍ରବାହ ସମୁଦ୍ର ପରି ପଡିଆରେ ଯାଇ ପହଞ୍ଚି ଚାରିଆଡେ ଖେଳାଇ ହୋଇଗଲା । ପ୍ରଥମେ ଯେଉଁ ସଭାମଞ୍ଚ ତିଆରି କରାଯାଇଥିଲା, ତା ଉପରେ ସାଥୀ ନୀଳକଣ୍ଠନ୍ ଏବଂ ଜେଲରୁ ଆସିଥିବା ବ୍ୟକ୍ତିମାନେ ଆସି ବସିଲେ । ଅନ୍ନା ଏବଂ ବୁଢା ଯୋଶେଫ୍ ରଙ୍ଗମଞ୍ଚର ନିକଟରେ ଛିଡା ହେଲେ । ହଜାର ହଜାର ଲୋକଙ୍କର ଆଖି ଜଣେ ବ୍ୟକ୍ତି ଉପରେ କେନ୍ଦ୍ରୀଭୂତ ଥିଲା - ସେ ହେଉଛି ସାଥୀ ନୀଳକଣ୍ଠନ୍ ଉପରେ !

'ବହୁତ ଲେଖା ପଢା, ବିଦ୍ୱାନ ଲୋକ !'

'ତାଙ୍କ ଘରେ ହାତୀ ମଧ୍ୟ ଅଛି !'

'ସେ ଯେତେ ପଢିଛନ୍ତି, ଇଚ୍ଛାକଲେ ସେଥିରେ ସେ ଦେୱାନ ପର୍ଯ୍ୟନ୍ତ ହୋଇ ପାରନ୍ତେ, କିନ୍ତୁ ସେ ଗରିବମାନଙ୍କୁ ଉଦ୍ଧାର କରିବା ସକାଶେ ବାହାରିଛନ୍ତି ।'

ସାଥୀ ନୀଳକଣ୍ଠନ୍ ଗମ୍ଭୀରତା ସହ ଚାରିଆଡେ ଦୃଷ୍ଟି ନିକ୍ଷେପ କଲେ । କରୁଣାର ହସ ହସିଲେ । ସେ ପଛକୁ ବୁଲି ଧିର ସ୍ୱରରେ କ'ଣ କହିଲେ । ପଦ୍ମନାଭନ୍ ରଙ୍ଗମଞ୍ଚ ଉପରକୁ ଉଠି ଆଗରେ ଛିଡା ହୋଇଗଲା । ଆଉଥରେ ସେ ଜନ ସମୁଦ୍ରକୁ ଗଭୀର ଦୃଷ୍ଟିରେ ଦେଖିନେଲା । ତାର ଶରୀର ଥରଥର ହୋଇ କମ୍ପି ଉଠିଲା । ସେ କିଛି କହିବାକୁ ଚାହିଁଲା - କିନ୍ତୁ କହି ପାରିଲା ନାହିଁ ।

ସାଥୀ ନୀଳକଣ୍ଠନ୍ ନିଜ ଗଳାରୁ ରକ୍ତହାର ଓହ୍ଲାଇ ଖୁବ୍ ଆଗ୍ରହ ସହକାରେ ଉଠିଲେ । ସେ ପଦ୍ମନାଭନକୁ ପଛକୁ ଘୁଞ୍ଚାଇ ଦେଇ ନିଜେ ଆଗରେ ଛିଡା ହେଲେ ।

'ବନ୍ଧୁଗଣ ! - - - - - ' - ସେ ଭାଷଣ ଆରମ୍ଭ କଲେ । ସଭାର ଗୋଟିଏ କୋଣରେ ହଠାତ୍ କିଛି ଗୋଟେ ଗୋଳମାଳ ଶୁଣାଗଲା । ! ଜଣେ ହଠାତ୍ ଖୁବ୍ ଜୋରରେ ଚିତ୍କାର କଲା -

'ଏଣ୍ଟୋନି ଏବଂ ରକ୍କିର - - - - ' ପୁଣି କିଛି କହିପାରିଲା ନାହିଁ ।
ଦ୍ୱିତୀୟ ଜଣକ ବାକ୍ୟକୁ ପୁରାକଲା -
'ଘରେ ନିଆଁ ଲଗାଇ ଦିଆଯାଇଛି । ମିସ୍ତ୍ରୀ ନିଆଁ ଲଗାଇଛି ।'
'ହାୟ !' - ଅନ୍ୟ ଚିତ୍କାର କରି ଉଠିଲା ।
ତାର ଶରୀର କ୍ଲାନ୍ତ ହୋଇ ପଡିଲା ଏବଂ ସେ ବେହୋସ ହୋଇ ଏଣ୍ଟୋନି ଉପରେ ଲୋଟି ପଡିଲା ।
ମତ୍ତାୟୀ ଏବଂ ସାଇମନ୍ ମିଶି ବୁଢା ଯୋଶେଫ୍‌କୁ ସାମ୍ଭାଳ କଲେ ।
ସେ ଜନସମୁଦ୍ର ଏ ପାଖ ସେ ପାଖ ହେବାକୁ ଆରମ୍ଭ କଲା ।

'କେହି ଯେମିତି ନିଜ ନିଜ ସ୍ଥାନରୁ ନ ଉଠନ୍ତି । କେହି ଯେମିତି ନ ହାଲନ୍ତି'- ସାଥୀ ନୀଳକଣ୍ଠନ୍ ମେଘ ପରି ଗର୍ଜନ କରି ଉଠିଲେ । କେହି ନିଜ ସ୍ଥାନ ଛାଡି ହାଲିଲେ ମଧ୍ୟ ନାହିଁ ।

'ରକ୍କି କେଉଁଠି ?' - ଏଣ୍ଟୋନି ପଚାରିଲା ।
'ରକ୍କି ସେଠାରେ କେଉଁଠି ହେଲେ ଦେଖାଗଲା ନାହିଁ ।'

## 16

ମିସ୍ତ୍ରୀ ଏବଂ ତାର ଅନ୍ୟାନ୍ୟ ସାଥୀମାନେ ଏଣ୍ଟୋନି ଏବଂ ମତ୍ତାୟୀର ଘରେ ନିଆଁ ଲଗାଇଥିଲେ । ଛୋଟ ମାଲିକର ନିର୍ଦ୍ଦେଶ ଅନୁସାରେ ଏ ନିଆଁ ଲଗାଯାଇଥିଲା ।

କାରଖାନାରେ ଗଣ୍ଡଗୋଳ ସୃଷ୍ଟି କଲାବାଲା, ପାଟି ତୁଣ୍ଡ କଲାବାଲାଙ୍କୁ ବିଦ୍ରୂପ ସ୍ୱାଗତ ସମ୍ବର୍ଦ୍ଧନା କରିବା ଏ

ସବୁ ଛୋଟ ମାଲିକ ସହ୍ୟ କରନ୍ତେ କିପରି ? ଯେତେବେଳେ ସ୍ୱାଗତ ସଭା ହେବ ସେତେବେଳେ ସେମାନେ ରହୁଥିବା କୁଡିଆ ସବୁ ଜଳାଇ ଦିଆଯିବ ବୋଲି ଛୋଟ ମାଲିକ ନିଷ୍ପତ୍ତି ଗ୍ରହଣ କରି ସାରିଥିଲେ ।

ବଡ ମାଲିକ ଏ ନିଷ୍ପତ୍ତି ଶୁଣିଥିଲେ । ସେ ପୁଅକୁ କହିଲେ - 'ଏପରି କରିବା ଉଚିତ ହେବ ନାହିଁ ।' ସେ ଏବଂ ଯୋଶେଫ୍ ଦୁଇଜଣ ମିଶି କାରଖାନା ଖୋଲିଥିଲେ । ପଇସା ଥିଲା ତାଙ୍କର କିନ୍ତୁ ଚେଷ୍ଟା ଓ ପ୍ରଯତ୍ନ ଥିଲା ଯୋଶେଫ୍‌ର । ଶେଷରେ ସାହେବ ବଙ୍ଗଳାରେ ପହଞ୍ଚିଗଲେ । ଏବଂ ଯୋଶେଫ୍ ତାଙ୍କ ଜମିରେ କୁଡିଆ କରି ତାଙ୍କର ଦୟାର ପାତ୍ର ହୋଇ ରହିଲା । ସାହେବ ଏ ସବୁ କଥାକୁ ସ୍ମରଣ କଲେ । ତାଙ୍କର ଅନ୍ତରାତ୍ମା ଦୁଃଖିତ ହେଲା ; ସେ ପୁଅକୁ କହିଲେ -

'ଏମିତି କଲେ ଯୀଶୁ ଅସନ୍ତୁଷ୍ଟ ହେବେ । ସେ ଆମର ଶ୍ରମିକ ଥିଲା । ତା' ଛଡା ଆମ ଜମିରେ ଘର ମଧ୍ୟ କରି ରହିଥିଲା । ତାକୁ ତାର ଘରେ ମୃତ୍ୟୁ ପର୍ଯ୍ୟନ୍ତ ରହିବାକୁ ଦିଅ ।'

'ତାହେଲେ, ବାପା ଆପଣ ମୋତେ ଯେମିତି ଉପଦେଶ ଦେଉଛନ୍ତି, ସେ କାହିଁକି, ତାର ପୁଅମାନଙ୍କୁ ସେମିତି ଉପଦେଶ ଦେଉନାହିଁ ? ସେ କାହିଁକି କହୁନାହିଁ ଯେ, କାରଖାନାରେ ଗଣ୍ଡଗୋଳ କରିବା ଦରକାର ନାହିଁ ? ସେ କାହିଁକି କହୁନାହିଁ ଯେ, ସାହେବଙ୍କ ଅନ୍ନ ଖାଇବା, ସାହେବଙ୍କ ଜମିର ପାଣି ପିଇବା, ଏବଂ ସାହେବଙ୍କ ତିଆରି କୁଡିଆରେ ରହିବା ଲୋକ ସେମାନେ ?'

'ଯଦି ପିଲାମାନେ ଖରାପ ହୋଇଗଲେ ତା' ହେଲେ ବିଚରା ବାପର ଅପରାଧ କ'ଣ ?'

'ଯଦି ପିଲାମାନେ ଖରାପ ହୋଇଯାଆନ୍ତି ତାହେଲେ ସେମାନଙ୍କୁ ଠିକଣା ବାଟକୁ ଆଣିବା ଉପାୟ ମୋତେ ଜଣା ଅଛି ।'

'କିନ୍ତୁ ଭଗବାନ ଯେମିତି ଅସନ୍ତୁଷ୍ଟ ହୁଅନ୍ତି ସେମିତି କିଛି କାମ କରିବୁ ନାହିଁ ।'

'ଆମକୁ ହଇରାଣ କଲାବାଲା ଆମ ଜମି ଉପରେ ରହୁଛନ୍ତି, ଏ ତ ହେଉଛି ସବୁଠାରୁ ବଡ ଦେବଦୋଷ ।'

ବଡ ସାହେବ ନିଜ ପୁଅ ସହିତ ଯୁକ୍ତିତର୍କ କରିପାରିଲେ ନାହିଁ । କିନ୍ତୁ ତାଙ୍କର ଅନ୍ତରାତ୍ମାରେ କଷ୍ଟ ପହଞ୍ଚି ସାରିଥିଲା ।

ଏମିତି କିଛି ଗୋଟାଏ ହେବ ବୋଲି ସେଇ ପତଳା ଲୋକଟି ପ୍ରଥମେ ଆଶଙ୍କା ପ୍ରକାଶ କରିଥିଲା । ସେ କୁଞ୍ଜୁପନର ଚା ଦୋକାନରେ ବସି ବୁଝିନେଇଥିଲା, ଯେ ଚା ଦୋକାନରେ କିଛି ଗୋଟାଏ ମନ୍ତ୍ରଣା ଚାଲିଛି । ଏଇଥିପାଇଁ ଯେତେବେଳେ ସମସ୍ତ ଶ୍ରମିକମାନେ ଶୋଭାଯାତ୍ରା ଏବଂ ସଭାରେ ଭାଗ ନେବାପାଇଁ ଗଲେ, ସେତେବେଳେ ସେ ଏକୁଟିଆ ଲୁଚିଛପି ଅନ୍ଧାର ଘର ଆଖପାଖରେ ବୁଲିବାକୁ ଲାଗିଲା ।

ଯେତେବେଳେ ସନ୍ଧ୍ୟା ହୋଇଗଲା ସେତେବେଳେ ମିସ୍ତ୍ରୀ ଏବଂ ତା'ର ସାଥୀମାନେ ଦୁଇଦଳ ହୋଇ ଏଣ୍ଟୋନି ଏବଂ ମଡାୟାର ଘରକୁ ଆସିଲେ । ଏଣ୍ଟୋନିର ଘରେ ଯେତେବେଳେ ମିସ୍ତ୍ରୀ ପଶିଗଲା, ସେତେବେଳେ ତାର ପଛେ ପଛେ ପତଳା ଲୋକଟି ମଧ୍ୟ ପଶିଗଲା । ମିସ୍ତ୍ରୀ ଦିଆସିଲି ଜଳାଇ ଚାଳରେ ନିଆଁ

ଲଗାଇଲା । ପତଳା ଲୋକଟି ନିଆଁ ଲିଭାଇଲା ।

ହଠାତ୍ ତାର ଗାଲ ଉପରେ ଗୋଟିଏ ଶକ୍ତ ଚାପୁଡା ପଡିଲା । ସେ ଭୂଇଁ ଉପରେ ପଡିଗଲା । ଯେତେବେଳେ ସେ ପଡିଗଲା ତାକୁ ସେତେବେଳେ ମାଡ଼ ଓ ଗୋଇଠା ଖାଇବାକୁ ପଡିଲା ।

'ଏହାକୁ ନେଇଯାଇ ନଡିଆ ଗଛରେ ବାନ୍ଧି ପକାଅ'- ମିସ୍ତ୍ରୀ ଆଦେଶ ଦେଲା ।

ପତଳା ଲୋକଟି, ଯେ ଏପର୍ଯ୍ୟନ୍ତ ବେହୋସ ହୋଇ ରହିଛି ତାହାକୁ ନେଇ ନଡିଆ ଗଛରେ ବାନ୍ଧି ଦିଆଗଲା ।

ପଡୋଶୀ ଘରମାନଙ୍କରେ ସେତେବେଳେ କେବଳ ସ୍ତ୍ରୀ ଲୋକମାନେ ଥିଲେ । ସେମାନଙ୍କ ମଧ୍ୟରୁ କେହି ଜଣେହେଲେ ବାହାରକୁ ଆସିବାକୁ ସାହସ କରିପାରିଲେ ନାହିଁ । ସେମାନେ ପାଟି ତୁଣ୍ଡ ମଧ୍ୟ କରି ପାରିଲେ ନାହିଁ । ମାତ୍ର ବେଲାୟୁଧନ୍‌ର ମା ଛପି ଛପି ଗଳିରେ ଦୌଡି ବାହାରକୁ ଚାଲିଗଲା । ଏଇଭଳି ଭାବରେ ନିଆଁ ଲାଗିବା ଖବର ସଭାସ୍ଥଳରେ ପହଞ୍ଚିଗଲା ।

ସଭା ଚାଲିଥିବା ସମୟରେ କୁଡିଆଜଲୁ କିମ୍ବା ଭୂକମ୍ପ ହେଉ ଶ୍ରମିକମାନେ ବିନା ପାଟି ତୁଣ୍ଡରେ ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟ କରିବା ଉଚିତ ବୋଲି ସାଥୀ ନୀଳକଣ୍ଠନ୍‌ଙ୍କ ଉପଦେଶ ଚାଲିଥିଲା । ଏହିଭଳି ଭାବରେ ସେ ଶ୍ରମିକମାନଙ୍କର ଶୃଙ୍ଖଳାର ପରୀକ୍ଷା କଲେ । ଶ୍ରମିକମାନେ ମଧ୍ୟ ନିଜ ନେତାଙ୍କର ଆଦେଶ ପାଳନ କଲେ ।

ରକ୍କି ସଭାମଞ୍ଚରୁ ବିଜୁଳି ବେଗରେ କୁଆଡେ ଉଭେଇ ଗଲା । ଅମ୍ମାର ହାତ ଧରି ଏଣ୍ଟୋନି ତଥା ଯୋଶେଫକୁ ସାଷ୍ଟାମ କରାଇ ମଭାୟୀ ଏବଂ ସାଇମନ୍ ସେଠାରୁ ଚାଲିଗଲେ । ସାଥୀ ନୀଳକଣ୍ଠନ୍‌ଙ୍କ ଶବ୍ଦ ମେଘପରି ଗର୍ଜନ କରି ଉଠିଲା -

'ଦୁନିଆରେ ଶାସନର ଚକ୍ର ବୁଲାଇବାର ଅଧିକାର କେବଳ ଶ୍ରମିକର ରହିଛି । କାରଣ ଦୁନିଆର ଧନ, ଦୌଲତ, ଏବଂ ସମ୍ପତ୍ତିର ସୃଷ୍ଟିକର୍ତ୍ତା ହେଉଛି ଶ୍ରମିକ ।'

ଅମ୍ମା ଏଣ୍ଟୋନି ପାଖରୁ ହାତ ଅଲଗା କରି ନେଇ ଚାଲିବାକୁ ଆରମ୍ଭ କଲା । ସେ କହିଲା –

'ବଡ ଭାଇ, ମୁଁ ମଧ୍ୟ ଯିବି ।'

'କୁଆଡେ ?'

'ଯୁଆଡେ ଆମର ବାପା ମା ଯାଇଛନ୍ତି ।'

'ମା କୁଆଡେ ଯାଇଛି ?'

ସେତେବେଳେ ଶୀଘ୍ର ଅମ୍ମାର ମନେ ପଡିଲା । ସେ ରହି ରହି କହିଲା-

'ମା - ? ମା - ମା ସେଇଠି ଅଛି ।'

'କ'ଣ ମା କୋଉଠି ଅଛି ? - - - ହଁ ? - - - - ହଁ ?'

ଏଣ୍ଟୋନି ଦୌଡିବାକୁ ଆରମ୍ଭ କଲା । ପଛରେ ଅମ୍ମା ମଧ୍ୟ ଦୌଡିଲା ।

'ସିଂହ ଆହାର ଖାଇ ସାରିବା ପରେ ଯେମିତି ଚୁପଚାପ ଶୋଇଯାଏ, ନିଆଁ ମଧ୍ୟ ଠିକ୍ ସେହିଭଳି ଭାବରେ ରହିଥାଏ । ଗଳିରେ ପଡୋଶୀ ସ୍ତ୍ରୀ ଲୋକମାନେ ଗୋଟିଏ ଜାଗାରେ ଛିଡା ହୋଇଥିଲେ ।

ଅଗ୍ନିର ଲେଲିହାନ ଶିଖାରେ ନଡିଆ ଗଛରେ ବନ୍ଧା ହୋଇଥିବା ପତଳା ଲୋକଟି କେତେବେଳେ କେତେବେଳେ ପାଟିକରି ଉଠୁଥିଲା ।

'ମା ! ହାୟ୍, ମୋ ମାଆ !' - ଚିତ୍କାର କରି ଏଣ୍ଟୋନି ସେ ଘରେ ପଶିଗଲା ।

'ବଡ ଭାଇ, ବଡ ଭାଇ !' ପଛରେ ଆସି ଅନ୍ନା ନିଜ ଭାଇକୁ କୁଣାଇ ପକାଇଲା ।

ଗଳିରେ ଛିଡା ହୋଇଥିବା ସ୍ତ୍ରୀ ଲୋକମାନେ କାନ୍ଦି ପକାଇଲେ ।

'କୋଉଠି ? ମୋ ମାଆ କୋଉଠି ?' - ଏଣ୍ଟୋନି ପଚାରିଲା ।

'ମା' ? ମା' ଚାଲି ଯାଇଛି, ବଡଭାଇ ? ବାପାଙ୍କୁ ଜାଣି ତିଆରି କରିଦେବା ସକାଶେ ସେ ଚାଲି ଯାଇଛି !'

ଏଣ୍ଟୋନି ବେହୋସ ହୋଇଗଲା । ଅନ୍ନା ନିଜ ବଡ ଭାଇକୁ ସାଷ୍ଟାମ କରି ଶୁଆଇଲା ।

'ଅନ୍ନା !' - ବୋଲି ସେ ଶବ୍ଦ କଲା ।

ଅନ୍ନା ଆଶ୍ଚର୍ଯ୍ୟ ହୋଇ ଚାରି ଆଡକୁ ଅନେଇଲା ।

'ସେଠାରେ କିଏ ? କିଏ ?'

'ଅନ୍ନା !' ପୁଣି ସେଇ ଶବ୍ଦ ।

ଅନ୍ନା ଉଠିଲା । ଯେଉଁଆଡୁ ଶବ୍ଦ ଆସୁଥିଲା ଅନ୍ନା ସେ ଆଡକୁ ଗଲା ।

'ହାୟ୍, ଏ କ'ଣ ? ହେ, ଯୀଶୁ !' - ସେ ମଧ୍ୟ ବେହୋସ ହୋଇଗଲା ।

'ରାସ୍ତା ଦିଅ ! ରାସ୍ତା ଦିଅ !' - ଗଳିରେ ଗୋଟିଏ ଶବ୍ଦ ଶୁଣାଗଲା ।

'ବଡ ମାଲିକ ଆସୁଛନ୍ତି ! ବଡ ମାଲିକ !'

'ବଡ ମାଲିକ ବୁଢା ବରୀଦୁ ସାହେବ ତାଙ୍କ ବାଡି ଟେକି ଧିରେ ଧିରେ ଆସୁଛନ୍ତି । ସମସ୍ତେ ରାସ୍ତା ଦେଲେ । କେହି କିଛି କହିଲେ ନାହିଁ । ଏଣ୍ଟୋନି ପାଖରେ ଆସି ସେ ଗୋଟିଏ ସିଂହାବଲୋକନ କଲେ ।

'ହେ ଯୀଶୁ !' - ବୋଲି ସେ ଉପରକୁ ଅନେଇ କହିଲେ ! ପୁଣି ଆଖି ପୋଛିଲେ ।

ବେଲାୟୁଧନର ମା ଏଣ୍ଟୋନିର ମୁହଁରେ ପାଣି ଛିଞ୍ଚିଲେ । ଏଣ୍ଟୋନି ଆଖି ଖୋଲି ଚାହିଁଲା ।

'ଏ କିଏ ? କ'ଣ ବଡ ମାଲିକ ?' ସେ ଧିର ସ୍ୱରରେ ପଚାରିଲା ।

ସେ ଉଠି ବସିଲା । ବେଲାୟୁଧନର ମାଆକୁ ପଚାରିଲା -

'ମୋ ମା କୋଉଠି ଅଛି ?'

ବେଲାୟୁଧନର ମା ମୁହଁ ଲୁଚାଇ କାନ୍ଦି ପକାଇଲା ।

ଏଣ୍ଟୋନି ଉଠିକରି ଅନ୍ନା ପାଖକୁ ଗଲା । ବେଲାୟୁଧନର ମା ଅନ୍ନାର ମୁହଁ ଉପରେ ମଧ୍ୟ ପାଣି ଛିଞ୍ଚିଲା । ସେ ମଧ୍ୟ ଆଖି ଖୋଲିଲା ।

ସେ ପତଳାଲୋକ ସେତେବେଳେ ମଧ୍ୟ ଚିତ୍କାର କରୁଥିଲା । ଏଣ୍ଟୋନି ସେ ବନ୍ଧନ ଖୋଲିଦେଲା । ପୁଣି ସେ

ଲୋକକୁ ସାଷ୍ଟାମ କରି ଶୁଆଇଲା । ଅନ୍ନା ତା ପାଖରେ ବସିଲା । ସେ ପତଳା ଲୋକର ମୁର୍ଦ୍ଧରେ ପାଣି ଦେଲା । ଧିରେ ଧିରେ ସେ ପତଳା ଲୋକ ପାଣି ପିଇ ନେଲା । ଅନ୍ନା ସେ ଲୋକର ଗାଲ ଉପରେ, ଯେଉଁଠି ଶକ୍ତ ଚାପୁଡା ଲଗାଯାଇଥିଲା, ଆସ୍ତେ ଆସ୍ତେ ହାତ ବୁଲାଇ ଆଣିଲା । ଏଣ୍ଟୋନି ଅନ୍ନାର ମୁଣ୍ଡରେ ହାତ ବୁଲାଇ ଆଣିଲା ।

ହଠାତ୍ ଏକ ଭୟଙ୍କର ଶବ୍ଦ ଶୁଣାଗଲା । ଏକ ଆକ୍ରମଣ ହେବାର ପୂର୍ବ ସୂଚନା ।

ଏଣ୍ଟୋନି ତରିଯାଇ ବଡ ମାଲିକଙ୍କ ପାଖରେ ପହଞ୍ଚିଲା ଏବଂ କହିଲା -

'ମାଲିକ, ବର୍ତ୍ତମାନ ଆପଣ ଏଠାରେ ରହନ୍ତୁ ନାହିଁ ।'

'ସଭା ଶେଷରେ ସେ ଲୋକମାନେ ଏଆଡେ ଆସୁଛନ୍ତି । ମାଲିକ, ଆପଣ ଏଠାରୁ ଚାଲିଯାଆନ୍ତୁ । ଯାଆନ୍ତୁ - - - ଯାଆନ୍ତୁ ନା ମାଲିକ !'

ମାଲିକ ଗଳିରେ ପହଞ୍ଚି ଚାଲିବାକୁ ଆରମ୍ଭ କଲେ ।

ସେତେବେଳେ ଶଙ୍କୁ ଆସି ଏଣ୍ଟୋନିକୁ କହିଲା -

'ମିସ୍ତ୍ରୀ ମୃତ୍ୟୁର ଦ୍ୱାର ଦେଶରେ ! ସେମାନେ ତାକୁ ଡାକ୍ତରଖାନା ନେଇଯାଇଛନ୍ତି ।'

'ରକ୍ସି କୋଉଠି ?'

'ଓଃ !'

## 17

କୁଡିଆ ଜଳୁଥିବାର କଥା ଶୁଣି ରକ୍ସି ସଭାସ୍ଥଳରୁ ଦୌଡି ଆସିଲା । କିନ୍ତୁ ସେ ଗଳିରୁ ଆସି ନିଜ ଘରକୁ ଦେଖିଲା । ସେତେବେଳକୁ ତାଙ୍କ ଘର ଜଳି ଶେଷ ହୋଇ ଯାଇଛି । ପଡୋଶୀ ସ୍ତ୍ରୀ ଲୋକମାନେ ଗଳିରେ ଚୁପଚାପ୍ ଛିଡା ହୋଇ ଥିଲେ । ରକ୍ସି ପଚାରିଲା -

'ମୋ ମା କେଉଁଠି ଅଛି ?'

କେହି ଉତ୍ତର ଦେଲେ ନାହିଁ । ଏଣ୍ଟୋନି ଏବଂ ରକ୍ସି ବର୍ତ୍ତମାନ ସୁଦ୍ଧା ଏଲୀର ମୃତ୍ୟୁ ଖବର ଜାଣିନଥିଲେ । ଜେଲରେ ଜାଣିଶୁଣି ସେମାନଙ୍କୁ ଏ ଖବର ଦିଆଯାଇନଥିଲା ।

'ମା !' - ବୋଲି ରକ୍ସି ଜୋରରେ ଡାକିଲା । ସେ ଗଳିରୁ ଘର ଆଡକୁ ଦୌଡିଲା ।

ବେଲାୟୁଧନ୍‌ର ମା ତାକୁ ଅଟକାଇଲା -

'ପୁଅ, ତୋ ମା ଚାଲିଯାଇଛି ।'

'କୁଆଡେ ? କୁଆଡେ ଚାଲିଗଲା ?'

'ଚାଲିଗଲା ।'

'ମୁଁ ପଚାରୁଛି, କୁଆଡେ ଗଲା ?'

'ଚାଲିଗଲା, ପୁଅ ! ଚାଲିଗଲା !'

'ମା !!! - - - - - ମା !!!' ରକ୍କି ଉଚ୍ଚ ସ୍ୱରରେ ମା ମା ବୋଲି ଡାକି ଜଳି ଯାଇଥିବା ଘର ଚାରିପାଖରେ ଦୌଡିବାକୁ ଆରମ୍ଭ କଲା ।

ନଡିଆ ଗଛରେ ବନ୍ଧା ହୋଇଥିବା ପତଳା ଲୋକଟି ପୁଣିଥରେ ଚିତ୍କାର କରି ଉଠିଲା । କିନ୍ତୁ ରକ୍କି ତାକୁ ଦେଖି ପାରିଲା ନାହିଁ ।

'ମା !!!' ବୋଲି ଡାକି ରକ୍କି ପାଗଳପରି ଗଳିରେ ଦୌଡିବାକୁ ଆରମ୍ଭ କଲା ।

ବେଲାୟୁଧନର ମା ତାକୁ ଅଟକାଇଲା -

'ପୁଅ, ତୋ ମା ତ ସ୍ୱର୍ଗ କୁ ଚାଲିଯାଇଛି !'

'କ'ଣ ମାରିପକାଇଲା ? ମୋ ମା'କୁ ମାରିପକାଇଲା ?'- ସେ ପୁଣି ଦୌଡିବାକୁ ଆରମ୍ଭ କଲା ।

ପ୍ରକୃତରେ ସେ ତାର ସ୍ୱର୍ଗତଃ ମାକୁ ହିଁ ଖୋଜୁଥିଲା । ଗଳିରୁ ରାସ୍ତାକୁ ପହଞ୍ଚି ବହୁତବାଟ ଦୌଡିବାପରେ ହିଁ ସେ ଆଉ ଗୋଟେ ଗଳିରେ ପହଞ୍ଚିଲା । ସେ କୁଆଡେ ଯାଉଛି ବୋଲି ନିଜେ ମଧ୍ୟ ଜାଣିନଥିଲା । ସେ ଖୁବ୍ ଜୋରରେ ଚାଲୁଥିଲା । ଅନ୍ଧକାରରେ ସେଇ ଗଳିରେ କେହି ଲୋକ ଦେଖାଯାଉ ନଥିଲେ । ଗୋଟିଏ ଘରୁ କାହାର ଶବ୍ଦ ଶୁଣାଯାଉଥିବାରୁ ସେ ଦିଗକୁ ଦୃଷ୍ଟି ଦେଲା । ସେ ଶବ୍ଦ ମିସ୍ତ୍ରୀର କାଶିବାର ଶବ୍ଦ ଥିଲା । ମିସ୍ତ୍ରୀ ଗୋଟିଏ ଆରାମ ଚୌକୀରେ ବସି ନିଜର ସ୍ତ୍ରୀ ଓ ପୁଅମାନଙ୍କୁ ଭାଷଣ ଶୁଣାଉଥିଲା -

'ଯେଉଁ ଲୋକମାନେ ମୁଣ୍ଡ ଗୁଞ୍ଜିବାକୁ ସ୍ଥାନ ନ ପାଇ ଏଣେ ତେଣେ ବୁଲୁଥିଲେ, ସେମାନଙ୍କୁ ବଡ ମାଲିକ ଏଇଠି କୁଡିଆ ତିଆରି କରି ରହିବା ସକାଶେ ଅନୁମତି ଦେଇଥିଲେ । ପୁଣି ସେମାନଙ୍କୁ କାରଖାନାରେ କାମ ମଧ୍ୟ ଦିଆଗଲା । ବର୍ତ୍ତମାନ ସେଇ ଲୋକମାନେ ମାଲିକଙ୍କୁ ହଇରାଣ କରିବାକୁ ଲାଗିଲେ । ମାଲିକଙ୍କର ଜମିରେ କୁଡିଆକରି ରହି, ମାଲିକ ଦେଉଥିବା କାଞ୍ଜି ପିଇ, ମାଲିକଙ୍କୁ ହଇରାଣ କରୁଛନ୍ତି - ମୁଁ ଏକଥା ଆଉ ହେବାକୁ ଦେବିନାହିଁ । ହୁଁ । ମାଲିକଙ୍କୁ ଗାଳିଦେବା ପାଇଁ ଓ ବେଳିକ୍ କରିବାପାଇଁ ସେମାନେ ସଭା ସମିତିମାନ କରୁଛନ୍ତି ! ପୁଣି ସେମାନେ ଭାବୁଛନ୍ତି, ଯେ ସଭା ସରିଯିବା ପରେ ସେମାନେ ମାଲିକ ତିଆରି କରିଥିବା କୁଡିଆରେ ଯାଇ ଆରାମରେ ଶୋଇଯିବେ, ଏ ତ ହେବାକୁ ଦେବି ନାହିଁ !'

ମିସ୍ତ୍ରୀର ସ୍ତ୍ରୀ ପଚାରିଲା -

'କ'ଣ ନିଆଁ ଲଗାଇବା ସମୟରେ ଘରେ ସେ ଝିଅ ମଧ୍ୟ ଥିଲା ?'

'ନା । ସେ ମଧ୍ୟ ସଭା ପାଇଁ ଚାଲିଯାଇଥିଲା ।'

ରକ୍କି ହଠାତ୍ ସେ ଘରେ ପଶିଗଲା । ଉଜ୍ଜ୍ୱଳ ଆଲୋକରେ ଆରାମ ଚୌକୀ ଉପରେ ବସିଥିବା ମିସ୍ତ୍ରୀର ଛାତି ଉପରେ ସେ ଜୋରରେ ଗୋଟିଏ ଘୁଷି ମାଇଲା । ପୁଣି ମିସ୍ତ୍ରୀ ଉଠିବା କିମ୍ବା ପ୍ରତିରୋଧ କରିବା ପୂର୍ବରୁ ପୁଣି ତାକୁ ଆଉ ଚାରି ପାଞ୍ଚ ଘୁଷି ମାରି ସାରିଥିଲା । ମିସ୍ତ୍ରୀର ସ୍ତ୍ରୀ ଏବଂ ପୁଅମାନେ ଚିତ୍କାର କରି ଉଠିଲେ । ସ୍ତ୍ରୀ ମଝିରେ ତାକୁ ରକ୍ଷା କରିବାକୁ ଗଲାବେଳେ ତା ଉପରେ ମଧ୍ୟ ତିନି ଚାରି ଚାପଡ ବସିଗଲା । ପଡୋଶୀମାନେ

ଆସି ପହଞ୍ଚିବା ପୂର୍ବରୁ ରକ୍କି ମିସ୍ତ୍ରୀକୁ ଚୌକୀରୁ ଧକକା ଦେଇ ତଳକୁ ଓଲ୍ଟାଇ ପକାଇଥିଲା ଏବଂ ଚାରି ପାଞ୍ଚ ଗୋଇଠା ମଧ୍ୟ ମାରି ସାରିଥିଲା ।

'ଭବିଷ୍ୟତରେ ଆଉ କେବେ କାହାରି ଘରେ ନିଆଁ ଯେମିତି ନ ଲଗାଉ ।' - ଏହି ସତର୍କବାଣୀ ଦେଇ ରକ୍କି ପ୍ରଥମରୁ ସେଠାରୁ ଖସିଗଲା ।

ସମୁଦାୟ ଘଟଣାଟା ହଠାତ୍ କରି ହୋଇଗଲା । ରକ୍କି ମଧ୍ୟ ନିଜେ ଜାଣିନଥିଲା ଯେ, ତାକୁ ମିସ୍ତ୍ରୀର ଘରକୁ ଆସି ତା ସ୍ତ୍ରୀକୁ ବାଡେଇବାକୁ ପଡିବ । ସେ ଗଳିରେ ପହଞ୍ଚି ଦୌଡିବାକୁ ଆରମ୍ଭ କଲା । ଚିତ୍କାର ଶୁଣି ଦୌଡି ଆସୁଥିବା ଜଣେ ପଡୋଶୀଙ୍କ ସହ ତାର ଧକକା ମଧ୍ୟ ହୋଇଗଲା । ସେ ପଡୋଶୀ ଜଣକ ଚିତ୍କାର କରି କହିଲେ -

'ହେଇ, ସେ ଯାଉଛି, ଚୋର !'

ରକ୍କି ଆହୁରି ଜୋରରେ ଦୌଡିଲା ଏବଂ ପାଖରେ ଥିବା ଗୋଟିଏ ଛୋଟ ପାହାଡ ଦେହରେ ଆତ୍ମ ଗୋପନ କରି ରହିଲା । ସେ ସେଠାରେ ବସି ପଡିଲା । ତାକୁ ଭୀଷଣ ଶୋଷ ହେଉଥିଲା । ଜେଲ ଯିବା ପରେ ସେ ଭଲକରି କପେ ଚା ମଧ୍ୟ ପିଇ ନଥିଲା । ବର୍ତ୍ତମାନ ସେ ଗ୍ଲାସେ ଚା ଏବଂ ଗୋଟିଏ ବିଡିର ଆବଶ୍ୟକତା ବହୁତ ଅନୁଭବ କରୁଥିଲା !

ରକ୍କି ଉଠି ଚାଲିବାକୁ ଆରମ୍ଭ କଲା ।

ସେ ବୁଦୁବୁଦିଆ ଜଙ୍ଗଲ ମଧ୍ୟଦେଇ ରାସ୍ତାରେ ପହଞ୍ଚିଲା । କିଛିଦୂର ଗଲାପରେ ଗୋଟିଏ ଚା ଦୋକାନ ଦେଖାଗଲା । ସେ ଚା ଦୋକାନ ବନ୍ଦ ଥିଲା । ସେ ଦୋକାନର ବାରଣ୍ଡାରେ ବସିଗଲା । ଆହା, ଭୀଷଣ ଶୋଷ. ସେ ଚାରି ଆଡକୁ ଚାହିଁଲା । ଚା ତିଆରି ହେଉଥିବା ଟେବୁଲ ତଳେ ସେ ଗୋଟିଏ ପାଣି ମାଠିଆ ଦେଖିବାକୁ ପଇଲା । ସେ ମାଠିଆରୁ ଘୋଡଣୀ ଉଠାଇ ଦେଖିଲା । ସେଥିରେ ପାଣି ଅଛି । ଟିକିଏ ମୁହଁରେ ଦେଇ ପିଇଲା । ପାଣି ତ ଆଉ ମଦ ନୁହେଁ । ତଥାପି ପାଣି ପିଇଲା । ବାରଣ୍ଡାରେ ସେ ଚିତ୍ ହୋଇ ଗଡି ପଡିଲା, ଶୋଇଗଲା ମଧ୍ୟ ।

ସକାଳ ହେବାରୁ ଦୋକାନୀ ତାକୁ ହଲେଇ ଡାକ ଦେଇ ଉଠାଇଲା । ସେ ଉଠିଲା । ଦୋକାନୀ ଦୋକାନ ଖୋଲିଲା । ଚୁଲୀ ଲଗାଇଲା ଏବଂ ଚା ପାଣି ମଧ୍ୟ କେଟ୍‌ଲୀରେ ରଖିଲା । ଗିଲାସ ମାଜିଲା ! କିଛି ସମୟ ପରେ ଚା ତିଆରି ହୋଇଗଲା । ଗୋଟିଏ ଗ୍ଲାସ୍ ଚା ! କିନ୍ତୁ ରକ୍କି ହାତରେ ପଇସା ନଥିଲା । ଦୋକାନୀ ସହିତ ତାର ପରିଚୟ ମଧ୍ୟ ନଥିଲା ।

ସେ ରାସ୍ତା ଉପରକୁ ଆସିଲା । ସେ ସହର ଆଡକୁ ଚାଲିବାକୁ ଆରମ୍ଭ କଲା । ଗତକାଲିର ଘଟଣା ସବୁକୁ ସେ ମନେ ପକାଉଥିଲା । ଗତକାଲି ଶୋଭାଯାତ୍ରାର ଆଗରେ ବଡ ଦମ୍ଭ ସହକାରେ ମୁଣ୍ଡ ଉଠାଇ ତାର ଚାଲିବା ! ଶ୍ରମିକମାନେ ତାକୁ ଜନସମୁଦ୍ରର ସାମନାରେ ଦେଖିବା ! ଭାଷଣରେ କ'ଣ କହିବାକୁ ହେବ, ସେ ସମ୍ପର୍କରେ ଚିନ୍ତା କରିବା ।

ସେ କ'ଣ ଭାଷଣ ଦେବ ସେଥିପାଇଁ ସେ ମନେ ମନେ ପ୍ରସ୍ତୁତି କରି ନେଇଥିଲା । ଯେତେବେଳେ ସଭାର ସଭାପତି ତାର ନାମ ଡାକିବେ, ସେତେବେଳେ ସେ ଉଠିବ, ଏବଂ ବିଶାଳ ଜନସାଧାରଣଙ୍କୁ କହିବ -

'ତିଳ ତିଳ କରି ମରିବା ଅପେକ୍ଷା, ଆମେ ଯଦି ଏକା ସାଙ୍ଗରେ ମରିଯାଉଁ, ତାହେଲେ ଭଲ ହେବ । କାରଣ - - - - -'

ହଠାତ୍ ତାଳି ବାଜିବାର ଶବ୍ଦଶୁଣି ରକ୍କି ପଛକୁ ବୁଲି ଦେଖିଲା । ରାସ୍ତାର ଡାହାଣ ପାଖରେ, ଗୋଟିଏ କାଜୁବାଦାମ ଗଛ ତଳେ, ଶଙ୍କୁ ତାଳିମାରି ରକ୍କିକୁ ଡାକୁଛି -

'ଏଆଡେ ଆସ !'
ରକ୍କି ଡରିଯାଇ ଉଠି ସିଧା ଛିଡା ହେଲା ।
'ଟିକିଏ ଏ ଆଡେ ଆସନା ।'
ରକ୍କି ଶଙ୍କୁ ପାଖକୁ ଗଲା । ଶଙ୍କୁ ଧିର ଗଳାରେ କହିଲା -
'ବର୍ତ୍ତମାନ ତୁମେ ସେ ଆଡେ ଯିବା ଆଦୌ ଉଚିତ ନୁହେଁ ।'
'ଗଲେ କ'ଣ ହେବ ?'
'ଗଲେ ? - - - - - ମୁଁ କହୁଛି, ବର୍ତ୍ତମାନ ତୁମେ ସେ ଆଡେ ଯିବା ଉଚିତ ନୁହେଁ ।'
'ଗଲେ କ'ଣ ହେବ ?'

'ପୋଲିସବାଲା ସେ ଆଡେ ପର୍ଯ୍ୟନ୍ତଗଣ ମାରୁଛନ୍ତି । ଏଣ୍ଟୋନି, ମତାସ୍ୱୀ, ସାଇମନ୍, ଅଜୁତନ, ପଦ୍ମନାଭନ୍, ଯୋଶେଫ୍, ଏବଂ ପପନଙ୍କୁ ପୋଲିସବାଲା ଧରି ନେଇଯାଇଛନ୍ତି ।'

'କାହିଁକି ?'
'ମିସ୍ତ୍ରୀକୁ ଯେଉଁଥିପାଇଁ ମାଡ ହେଲା ।'
'ମିସ୍ତ୍ରୀକୁ ତ ମୁଁ ଘୁଷା ମାରିଥିଲି ।'
'ତମେ ? - - - - - ସେମାନେ ମିସ୍ତ୍ରୀକୁ ଘୁଷା ମାରିଥିଲେ କହି ସେମାନଙ୍କୁ ବାନ୍ଧି ନିଆଯାଇଛି ।'
'ତାହେଲେ ମୁଁ ସେ ପର୍ଯ୍ୟନ୍ତ ଯିବି । ମୁଁ ଯାଇ କହିବି ଯେ, ମୁଁ ମିସ୍ତ୍ରୀକୁ ଘୁଷା ଲଗାଇଥିଲି । ମୁଁ ଆହୁରି ମଧ୍ୟ କହିବି ଯେ, ମିସ୍ତ୍ରୀ ମୋ ଘରେ ନିଆଁ ଲଗାଇ ଥିବାରୁ ମୁଁ ତାକୁ ଘୁଷା ଲଗାଇଥିଲି ।'

'ନା, ନା ! ତମେ ସେଠାକୁ ଯିବା ଉଚିତ ହେବନାହିଁ । ସେମାନେ ତମକୁ ମାରିପକାଇବେ ।'
'ମୋତେ ଯଦି ମାରି ପକାଇବା ଦରକାର ତାହେଲେ ମାରନ୍ତୁ, ମୁଁ ତ ସେଠିକି ଯିବି ।'
'ଯାଅନି, ରକ୍କି ! ମୁଁ କହିଦେଉଛି, ସେଠାକୁ ଯାଅନି । ପୋଲିସ ସେମାନଙ୍କୁ ମାଡ ଦେଇ ଦେଇ ସେମାନଙ୍କର ଚଟଣୀ ବନେଇ ଦେଲେଣି । ତମେ ସେମାନଙ୍କ ହାତରେ ପଡ଼ିବା ମାତ୍ରେ ସେମାନେ ତମକୁ ମାରି ପକାଇବେ ।'

ସେ ରକ୍କି ହାତ ଜବରଦସ୍ତି ଧରିନେଲା । ଶଙ୍କୁ ରକ୍କିର ହାତ ଧରିନେବାରେ ଦବିଗଲା । ସେ ପଚାରିଲା -
'ତାହେଲେ କ'ଣ କରାଯିବା ଦରକାର ?'

'ତମେ ଏଠାରେ ରହ । ଆମର ଗୋଟିଏ ସଂଘ ଅଛି । ନେତା ମାନେ ମଧ୍ୟ ଅଛନ୍ତି । ଆସ, ପ୍ରଥମେ ଚା ପିଇ ନିଅ ।'

ଶଙ୍କୁ ରକ୍କିର ହାତ ଧରି ଚାଲିଲା । ରକ୍କି ପଚାରିଲା –

'ତମେ କ'ଣ ମୋ ମାକୁ ଦେଖିଛ ?'

'ତମ ମା ? - - - - - ସେ ତ କେବେଠୁ ସ୍ୱର୍ଗବାସିନୀ ହୋଇଗଲେଣି । ତମ ବାପାଙ୍କୁ କାଣ୍ଡି ତିଆରି କରିଦେବା ସକାଶେ ସେ କେବେଠୁ ଗଲେଣି ।'

ରକ୍କି ନୀରବ ରହିଲା । ସେମାନେ ଚା ଦୋକାନରେ ପହଞ୍ଚି ଗଲେଣି । ସେ ଦୁଇଜଣ ଚାଉଳର ଚୂନାରେ ତିଆରି " ପିଟ୍‌ଟୁ "[1] ଏବଂ ଚଣା ଖାଇଲେ । ଚା ମଧ୍ୟ ପିଇଲେ । ରକ୍କି ଗୋଟିଏ ବିଡି ମଧ୍ୟ ଲଗାଇଲା ।

ସେମାନେ ରାସ୍ତାକୁ ଆସି ପୁଣି ଚାଲିବାକୁ ଆରମ୍ଭ କଲେ । ରକ୍କି ପଚାରିଲା -

'ମୋ ସାନ ଭଉଣୀ କୋଉଠି ଅଛି ?'

'ଅନ୍ନା ? ସେ ସେଇଠି ଅଛି ?'

'କେଉଁଠି ?'

'ନୂଆ କୁଡିଆରେ ।'

'ନୂଆ କୁଡିଆ କୁଆଡୁ ଆସିଲା ?'

'ଯେତେବେଳେ ଦୁଇଟି କୁଡିଆ ଜଳାଇ ଦିଆଗଲା, ସେତେବେଳେ ସେହି ସ୍ଥାନରେ ସକାଳ ହେବା ପୂର୍ବରୁ, ଦୁଇଟି ନୂଆ କୁଡିଆ ତିଆରି କରାଗଲା ।'

ଏ କଥା ସତ, ଯେ ଜଳିଯାଇଥିବା ଦୁଇଟି କୁଡିଆର ସ୍ଥାନରେ ପ୍ରଭାତ ହେବା ପୂର୍ବରୁ ଦୁଇଟି ନୂଆ କୁଡିଆ ତିଆରି ହୋଇ ଯାଇଥିଲା । ମାରପିଟ୍ ଏବଂ ଗୋଇଠା ମାଡ ଖାଇ ଥକିଗଲା ପରେ ମଧ୍ୟ ସେଇ ପତଳା ଲୋକଟି ଟଳିଟଳି ଯାଇ ଶ୍ରମିକମାନଙ୍କ କାନରେ କିଛି କହିଲା । ପଦ୍ମନାଭନ୍ ଡାକି କହିଲା –

'ସକାଳ ହେବା ପୂର୍ବରୁ ନୂଆ କୁଡିଆ ତିଆରି ହେବା ଦରକାର ।'

ଯୋଶେଫ୍ କହିଲା –

'ଯେତେବେଳେ ପୁରାତନ ନଷ୍ଟ ହୁଏ, ସେତେବେଳେ ନୂତନର ସୃଷ୍ଟି ହେବା ଦରକାର ।' ସମସ୍ତେ ତାର ସ୍ୱରରେ ସ୍ୱର ମିଳାଇଲେ । କୁଆଡୁ ନଡ଼ିଆ ବାହୁଙ୍ଗା, ବାଉଁଶ, ଦଉଡ଼ି ସବୁ ଆସି ପହଞ୍ଚିଗଲା, ସେକଥା କହିହେବ ନାହିଁ । ସୂର୍ଯ୍ୟୋଦୟ ପୂର୍ବରୁ ଦୁଇଟି କୁଡ଼ିଆ ତିଆରି ହୋଇଗଲା ।'

ଏଣ୍ଟୋନି ଅନ୍ନାର ହାତଧରି ତାକୁ ନେଲା ନୂଆ ଘରକୁ । ସେ ଗଦ୍‌ଗଦ୍ ହୋଇ କହିଲା 'ପୁରୁଣା ସବୁ ଚାଲିଗଲା- ବାପା, ମା, ଘର- ସବୁ ଚାଲିଗଲା । ଆଗରେ ପୁଣି ନୂଆ ଖେଳ ଅଛି- ନୂଆ ଖେଳ ।'

ସକାଳ ହେଲା । ପୋଲିସବାଲା ଆସିଲେ । ସେମାନେ ଏଣ୍ଟୋନିର ହାତରେ ହାତକଡି ପିନ୍ଧାଇଲେ ।

1. ଏକ ପ୍ରକାର ଖାଦ୍ୟ ପ୍ରଦାର୍ଥ , ମଣ୍ଡା ପିଠା ପରି

'ଏ କାହିଁକି ?' - ଏଣ୍ଟୋନି ପଚାରିଲା ।
ସେମାନେ ତାକୁ ଗୋଟିଏ ଘୁଷା ମାରିଲେ । ଏ ଥିଲା ତାର ଉତ୍ତର ।
'ହେ 'ଯୀଶୁ' ! ' - ଅନ୍ନା ଏକଥା ଦେଖି ଭୁଇଁ ଉପରେ ପଡିଗଲା ।

## 18

ମତ୍ତାୟୀ ଏବଂ ସାଇମନ୍ ଯୋଶେଫ୍‌ର ମୃତ ଶରୀର ନେଇ ନୂଆ ଘରେ ପହଞ୍ଚିଲେ । ଶବ ସତ୍କାର କରିବା ପୂର୍ବରୁ ପୋଲିସବାଲା ସେ ଦୁଇ ଜଣଙ୍କୁ ହାତକଡି ପିନ୍ଧାଇ ନେଇ ଚାଲିଗଲେ । ବେଲାୟୁଧନ୍‌ର ମା ଗୋଟିଏ ଦୀର୍ଘଶ୍ୱାସ ଛାଡିଲା । ଗଳାରେ ରୁନ୍ଧି ହୋଇଯାଉଥିବା ଅଗ୍ନି କଣାକୁ ଦୀର୍ଘଶ୍ୱାସ ଆକାରରେ ଛାଡି ସେ ଆକାଶକୁ ଅନେଇଲା -

'ହେ ମା କାଣିଛ କୋଲଙ୍ଗରର[1] ଦୁର୍ଗା !'

ପଦ୍ମନାଭନ୍, ଅଚ୍ଚୁତନ, ଯୋଶେଫ୍, ଏଣ୍ଟୋନି, ମତ୍ତାୟୀ ଏବଂ ସାଇମନ୍ ଆଦିଙ୍କୁ ପୋଲିସବାଲା ହାତକଡି ପିନ୍ଧାଇ ରାସ୍ତାରେ ଚଲାଇ ଚଲାଇ ନେଇଯାଉଥିଲା । ବହୁତ ଲୋକ ସେମାନଙ୍କ ପଛରେ ଭିଡ କରି ମଧ୍ୟ ଯାଉଥିଲେ । ସେଇ ପତଳା ଲୋକଟି ମଧ୍ୟ, ଭିଡରେ ବିଜୁଳି ଭଳି କେବେ କେବେ ଦେଖା ଯାଉଥିଲା !

ପୋଲ ପାଖରେ 'ପୁଟ୍ଟୁ' ବିକିଲା ବାଲୀ ଜଣେ ବୁଢୀ ସ୍ତ୍ରୀ ଲୋକ ଗୋଟିଏ ରିକ୍ସାବାଲାକୁ ପଚାରିଲା-
'ଏମାନେ ଗତକାଲି ଜେଲରୁ ଆସିଥିଲେ ନା !'
'ହଁ ।'
'ପୁଣି ଆଜି କାହିଁକି ପୋଲିସ ସେମାନଙ୍କୁ ବାନ୍ଧି ନେଇ ଯାଉଛି ।'
'ଏମାନେ ମିସ୍ତ୍ରୀକୁ ଘୁଷି ଲଗାଇଥିଲେ ଓ ମାଡ ମାରିଥିଲେ । ମିସ୍ତ୍ରୀ ବର୍ତ୍ତମାନ ଡାକ୍ତରଖାନାରେ ଅଛି ।'
'କେଉ ମିସ୍ତ୍ରୀ ।'
'ବରୀଦୁ ସାହେବଙ୍କ କାରଖାନାର ମିସ୍ତ୍ରୀ ।'
'ସେମାନେ କାହିଁକି ବରୀଦୁ ସାହେବଙ୍କର ମିସ୍ତ୍ରୀକୁ ମାଡ ମାରିଥିଲେ ।'
'ମିସ୍ତ୍ରୀ ସେମାନଙ୍କ ଘରେ ନିଆଁ ଲଗାଇଥିଲା ବୋଲି କୁହାଯାଉଛି ।'
'ତାହେଲେ, ମିସ୍ତ୍ରୀ ଉପରେ ମାଡ ଦେଲେ ଘର କ'ଣ ଆପେ ଆପେ ତିଆର ହୋଇଯିବ ?'
'ମିସ୍ତ୍ରୀକୁ ମାଡ ଦିଆଗଲା ଏବଂ ଘର ମଧ୍ୟ ତିଆରି ହେଲା ।'
'ଯଦି ମାଲିକ ଓ ମିସ୍ତ୍ରୀ ଉପରେ ମାଡ ଦିଅନ୍ତି ତା ହେଲେ - - - - - '
'ମାଡ ଦେଲେ କ'ଣ ହେବ ?'
'ତାହେଲେ ଭଗବାନ କେବେହେଲେ ସହିବେ ନାହିଁ ।'

1. ଦୁର୍ଗା ମନ୍ଦିର ଥିବା ଗୋଟିଏ ସ୍ଥାନ ।

'ସେମାନେ କହୁଛନ୍ତି ଯେ, ଭଗବାନ ବୋଲି କେହି ନାହାନ୍ତି ।'

'ତେଣୁ ପୋଲିସବାଲା ସେମାନଙ୍କୁ ଏଭଳି ଭାବରେ ନେଇ ଯାଇଛନ୍ତି ।'

'ମହାତ୍ମା ଯୀଶୁଙ୍କୁ ମଧ୍ୟ ସେମାନେ ଏଭଳି କଏଦୀଖାନାକୁ ନେଇ ଯାଇଥିଲେ ।'

'ମହାତ୍ମା ଯୀଶୁ ଏବଂ ଗର୍କୀର ପୁଅ ଏଣ୍ଟୋନି କ'ଣ ଏକ ପ୍ରକାର ଲୋକ ?'

'ତାହେଲେ ସେମାନଙ୍କ ମଧ୍ୟରେ ତଫାତ୍‌ଟା କୋଉଠି ?'

'ତୁମେ ଦୟାକରି ଚୁପରହ, ଭାଇ ! ତୁମେ ଯୀଶୁଙ୍କୁ ଏବଂ ଏଣ୍ଟୋନିକୁ ଏକବାରେ ସମାନ କରି ଦେଉଛ, ତମେ ବୋଧହୁଏ ପାଗଳ ହୋଉ ଯାଇଛ ! ଯେତେବେଳେ ଶ୍ରମିକମାନେ ମାଲିକ ଓ ମିସ୍ତ୍ରୀଙ୍କ ସାମନାକୁ ଆସିବେ - - - - - - ସେତେବେଳେ - - - - - - ।'

'ତାହେଲେ କ'ଣ ସେମାନଙ୍କୁ ନମସ୍କାର କରିବା ଦରକାର ପଡିବ ?'

'ହଁ ! ଯଦି ସେମାନେ ତା ନ କରନ୍ତି ତାହେଲେ ଗୁରୁଜନଙ୍କର ନିନ୍ଦା କରୁଛନ୍ତି ବୋଲି ଜଣାପଡିବ । ଏଠାରେ ମାଲିକ ଓ ମିସ୍ତ୍ରୀ ଅଛନ୍ତି । ସେଇଥିପାଇଁ ତ ଶ୍ରମିକମାନେ ନିଜ ନିଜର ଗୁଜୁରାଣ ମେଣ୍ଟାଇ ପାରୁଛନ୍ତି ।'

ଚା ଦୋକାନ, ପାନ ଦୋକାନ, ବୋଟ୍, ଜେଟୀ, ବସଷ୍ଟାଣ୍ଡ, ଦୋକାନ ବଜାର, ହାଟ ବାଟ, ସବୁ ସ୍ଥାନରେ ଗରମ ଖବର ପହଞ୍ଚିବାରେ ଲାଗିଲା । ସେଇ ପତଳା ଲୋକଟି ଘୂର୍ଣ୍ଣିବାତ୍ୟା । ଝଡ ଭଳି ସବୁ ସ୍ଥାନରେ ଦେଖାଗଲା,ସେଇ ତୋଫାନ୍ ଶ୍ରମିକମାନଙ୍କ କାନରେ ମନ୍ତ୍ର ଶୁଣାଇଲା । ଗୋଟିଏ କାରଖାନାର ଫାଟକରୁ ଆଉ ଗୋଟିଏ କାରଖାନା ଫାଟକ ପର୍ଯ୍ୟନ୍ତ ସେଇ ପତଳା ଲୋକଟି ଝଡ ବେଗରେ ବୁଲି ଆସୁଥିଲା । ନଡିଆକତା ତିଆରି କାରଖାନାରେ ମୃଦୁ ଗୁଞ୍ଜରଣ ଏବଂ ଅସ୍ଥିରତାର ସୃଷ୍ଟି ଆରମ୍ଭ ହେଲା ।

କୁଲୁପନର ଚା ଦୋକାନରେ ମଧ୍ୟ ପୁଞ୍ଜିଭୂତ ହେଉଥିବା ଦ୍ରବୀଭୂତ ରାଗ, କ୍ରୋଧ ମଧ୍ୟ ପ୍ରସ୍ଫୁଟିତ ହୋଇ ପଡୁଥିଲା । କୁଲୁପନ ରାଗରେ ଦାନ୍ତ ଚୋବାଇ ଚା ଗିଲାସରେ ଚା ଢାଳୁଥିଲା । ସେ ଯେତେବେଳେ ଟେବୁଲ ଉପରେ ଚା ରଖୁଥିଲା ସେତେବେଳେ ଏଭଳି ଭାବରେ ଗ୍ଲାସକୁ କଚାଡି ରଖୁଥିଲା ଯେ ସେଥିରେ କିଭଳି ଗୋଟିଏ ଶବ୍ଦ ବାହାରୁଥିଲା, ଯାହାକି ଏହା ପୂର୍ବରୁ କେବେ ଶୁଣାଯାଇ ନଥିଲା । ତାର ପ୍ରତ୍ୟେକ କଥାରେ ଏବଂ 'ହଁ' କହିବାରେ ମଧ୍ୟ ରାଗ, କ୍ରୋଧ, ବେଶ୍ ପ୍ରତିଫଳିତ ହେଉଥିଲା ।

ସୋନିର ଚା ଦୋକାନରେ ମଧ୍ୟ ରାଗ ତ ଉବୁକି ଉଠୁଥିଲା । ସୋନି ଜୋରରେ ଗର୍ଜନ ତର୍ଜନ ମଧ୍ୟ କରୁଥିଲା ।

'ଇଷବମାନେ - ଇଷବମାନେ ହିଁ ପ୍ରଥମେ ମାଡ ଦେଇଥିଲେ । ଖ୍ରୀଷ୍ଟିଆନ୍‌ମାନେ କେବେହେଲେ ମାଡ ଦେବେ ନାହିଁ । ଖ୍ରୀଷ୍ଟିଆନ୍ ମାନଙ୍କୁ ଧନୀ ହେବାର ଦେଖି ଇଷବ ଜାତି ଲୋକଙ୍କର ଆଖିରେ ଶୁଖୁଆକଣ୍ଟା ଗଳି ଯାଉଛି ।'

ସେତେବେଳେ ବିଡି ଦୋକାନୀ ବାସୁ ନିଜର ଚାବି ପେଟ୍ଟା ଘୁରଉ ଘୁରଉ ପଚାରିଲା -

'ତାହେଲେ ପୋଲିସବାଲା କାହିଁକି ଖ୍ରୀଷ୍ଟିଆନମାନଙ୍କୁ ମଧ୍ୟ ଧରି ନେଇଗଲା ?'

'ସେମାନେ ଖ୍ରୀଷ୍ଟିଆନ୍ ବୋଲି କିଏ କହିଲା ? ସେମାନେ ଯେତେହେଲେ ଇଷବ ଜାତିର ଲୋକ । ଖ୍ରୀଷ୍ଟିଆନ୍‌ମାନେ କେବେହେଲେ ମାଡ ଦିଅନ୍ତି ନାହିଁ ।'

ବାସୁ ବ୍ୟଙ୍ଗ ଓ ରହସ୍ୟ କରି ପଚାରିଲା -

'ତାହେଲେ ଖ୍ରୀଷ୍ଟିଆନ୍‌ମାନେ କ'ଣ ଘରେ ନିଆଁ ଲଗାଇବେ ?'

'ଘରେ ତ ଇଷବ ଲୋକମାନେ ନିଆଁ ଲଗାଇଥିଲେ ।'

'ତାହେଲେ ତମେ ମଧ୍ୟ ଶେଷରେ ହେଉଛ ଇଷବ ଲୋକ !'

ସୋନି ତାର ଛୁରୀ ବାହାରକରି ଦୋକାନରୁ ଡେଇଁ ପଡିଲା । ବାସୁ ବି କଇଁଚିରେ ଶାଣ ଦେଇ ଉଠି ଛିଡା ହୋଇଗଲା ।

ସେଇ ପତଳା ଲୋକଟି, ଯେ ଏପର୍ଯ୍ୟନ୍ତ କୁଳୁପନର ଦୋକାନରେ ବସି ନୀରବରେ ଚା ପାନ କରୁଥିଲା, ସେ ଜଣେ ଶ୍ରମିକର କାନରେ କିଛି କହି ଦେଇ ତୁରନ୍ତ ସେ ସ୍ଥାନରୁ ଉଭାନ୍ ହୋଇଗଲା । ସୋନି ଏବଂ ବାସୁକୁ ଯେଉଁ ଲୋକମାନେ ଅଲଗା କରିବାକୁ ଆସିଥିଲେ, ସେମାନଙ୍କୁ ସେଇ ଶ୍ରମିକ ଜଣକ କହିଲା

'ତମେମାନେ ସମସ୍ତେ ସେଠାରୁ ହଟିଯାଅ । ଏ ଦୁଇଜଣ ହେଉଛନ୍ତି ମାଲିକଙ୍କର ଭଡାଟିଆ ଗୁଣ୍ଡା । ଏମାନେ ପରସ୍ପର ମଧ୍ୟରେ ମରାମରି ହେବେ ।'

ସୋନି ଏବଂ ବାସୁ ଛୁରୀ ଏବଂ କଇଁଚିରେ ନିଜ ନିଜର କରାମତି ଦେଖାଇବା ପରେ ଯାଇ ପୁନର୍ବାର ନିଜ ନିଜର ସ୍ଥାନରେ ବସିଲେ ।

* * *

ବୋଟ, ଜେଟ୍ଟୀ ପାଇଁ ଅପେକ୍ଷା କରି ଛିଡା ହୋଇଥିବା ଯାତ୍ରୀମାନଙ୍କ ମଧ୍ୟରେ ଗୋଟିଏ ସନ୍ଦେହ ଦେଖାଗଲା ! 'ବିପ୍ଳବର ଉଦ୍ଦେଶ୍ୟ କ'ଣ ?'

ଗୋଟିଏ ଯାତ୍ରୀ କହିଲା-

'ବିପ୍ଳବର ଅର୍ଥ ହେଉଛି ସମସ୍ତ ପୁଞ୍ଜିପତି ମାନଙ୍କୁ ମାରି ପକାଇବା !'

'ମାରି ସାରିବା ପରେ ଯିବେ କୁଆଡେ ?'

ଯେ ମାରିବା ସପକ୍ଷରେ ମତ ଦେଇଥିଲା, ତାକୁ ଏ ପ୍ରଶ୍ନ ଯାତ୍ରୀ ଜଣକ ପଚାରିଲା ।

ଦ୍ୱିତୀୟ ଯାତ୍ରୀ ଜଣକ ପଚାରିଲା –

'ଆଚ୍ଛା ମାରିବା କ'ଣ ନିହାତି ଦରକାର ?'

'ପୁଞ୍ଜିପତି ମାନଙ୍କର ପୁଞ୍ଜି ଛଡାଇ ଦେବା ସକାଶେ !'

'ଛଡାଇ ନେଇଥିବା ପୁଞ୍ଜି, ଟଙ୍କା ପଇସା ନେଇ ସେମାନେ ଯିବେ କୁଆଡେ ?'

'ଏଁ !'

ସେଇ ପତଳା ଲୋକଟି ଭାର ବୋହୁଥିବା ଜଣେ ଶ୍ରମିକର କାନରେ କିଛି କହି ସେଠାରୁ ଉଭେଇଗଲା ।

ଭାର ବୋହୁଥିବା ଶ୍ରମିକଟି ଯାତ୍ରୀମାନଙ୍କ ପାଖକୁ ଯାଇ ପଚାରିଲା -

'ତମ ମାନଙ୍କର କ'ଣ ଖବର ଜାଣିବା ଦରକାର ?'

'ଆମ୍ଭେମାନେ ଯେଉଁ ଯେଉଁ ବିଷୟରେ ଜାଣିବାକୁ ଚାହିଁବୁ, ତମେ ସେଇ ସେଇ ବିଷୟରେ ଆମକୁ ଖବର କହି ପାରିବ କି ?' – ଜଣେ ଯାତ୍ରୀ ରାଗରେ ଆସି ଏ କଥା ପଚାରିଲା !

'ସବୁ କଥା ତ କହି ପାରିବି ନାହିଁ, ଆଜ୍ଞା ! ତଥାପି - - - - - - ।'

'ଯାଅ, ନିଜ କାମ କର !'

ଭାର ବୋହି ଆସିଥିବା ଶ୍ରମିକଟି ବୁଲିପଡି ଚାଲିଗଲା । ଯାତ୍ରୀ ଜଣକ ବଡ ଘୃଣାର ସହିତ କହିଲେ-

'ଆସିଗଲା ଜଣେ ବଡ ଲୋକ, ଆମକୁ ଶିକ୍ଷା ଦେବା ସକାଶେ !'

ସନ୍ଧ୍ୟା ହୋଇ ଯାଇଥିଲା । ଅନ୍ଧକାର ଗଭୀର ହୋଇଥିଲା । ଲୋକଙ୍କୁ ଭୟଭୀତ କରୁଥିବା ଖବରଟି ସାରା ସହର ଖେଳେଇ ହୋଇଯାଇଥିଲା । ସେଇ ଖବରଟି ବେଲାୟୁଧନର ମା ଅନ୍ନାକୁ କହିଥିଲା -

'ଛୋଟ ମାଲିକଙ୍କୁ ଢେଲାମାଡ ହୋଇଛି ବୋଲି ଶୁଣିବାକୁ ପାଇଲି ।'

'କିଏ ?' - ଅନ୍ନା ଉତ୍କଣ୍ଠାର ସହ ପଚାରିଲା ।

'ଏ ! ପଥର ମାରିବା ପରେ ମୁଣ୍ଡରେ ଆଘାତ ଲାଗିଛି । କଳା ପଥରରେ ମାଡ ମରାଯାଇଛି । ମାଡ ହେବାପରେ ସେ ତୁରନ୍ତ ଗାଡିରୁ ଛିଟିକି ତଳେ ପଡିଗଲେ । ହାତ ଭାଙ୍ଗିଯାଇଛି ।'

କିଛି ସମୟ ଚୁପ ରହିବାପରେ ଅନ୍ନା ପୁଣି ପଚାରିଲା -

'କ'ଣ ସାନଭାଇ ସେ ଆଖ ପାଖ କୋଉଠି ଥିଲା କି ?'

'ଏ ?'

ଅନ୍ନା ଆକାଶକୁ ଅନେଇଲା ।-

'ହେ ପ୍ରଭୁ ଯୀଶୁ !'

ବେଲାୟୁଧନର ମା କହିଲା -

'ଅନ୍ଧାର ହୋଇ ଯାଇଛି ! ଝିଅ, ଏଇଠି ରହିବା ଠିକ୍ ନୁହେଁ ।'

'ମୁଁ ପୁଣି ଯିବି କୁଆଡେ ?'

'ଝିଅ, ତୁ ମୋ ସାଙ୍ଗରେ ଚାଲି ଆସ !'

'ନା, ନା, ମୁଁ ଏଇଠି ରହିବି ।'

'ଏକୁଟିଆ ?'

'ହଁ, ଏକୁଟିଆ । ସାନଭାଇ ଆସିଗଲେ ତ - - - - '

'ତାହେଲେ ଝିଅ, ଘରକୁ ଯାଇ ଭିତର ପଟୁ ଶିକୁଳି ଲଗେଇ ଦେବୁ ।'

ଘରର ବାରଣ୍ଡାରେ କିରାସିନୀ ତେଲରେ ଜଳୁଥିବା ଡିବି ରଖିଦେଇ ଅନ୍ନା ଘର ଭିତରକୁ ଚାଲିଯାଇ ଭିତରପଟୁ ଶିକୁଳି ବନ୍ଦ କରି ନେଲା । ବେଲାୟୁଧନର ମା ସେପଟୁ ଚାଲିଗଲା ।

ଅନ୍ନା ଆଲୁଅ ଲିଭାଇଲା । କବାଟ ଖୋଲି ବାହାରକୁ ଆସିଲା । ଆଖ ପାଖ, ପଡୋଶୀ ଘରର ଡିବି ଆଲୁଅ

ସେଠାରୁ ଦେଖାଯାଉ ଥିଲା । କେବଳ ଏଣ୍ଟୋନିର ଘର ଅନ୍ଧାରରେ ବୁଡି ରହିଥିଲା । କୌଣସି ଆଉ କୌଣସି ଶବ୍ଦ ଆଦୌ ଶୁଣା ଯାଉ ନଥିଲା । ଭୟ ସୃଷ୍ଟି କରିବା ପରି ଏକ ଭୟାନକ ନୀରବତା ରହିଥିଲା ।

ଅନ୍ନା ଆକାଶକୁ ଅନେଇଲା । ଆକାଶର ସେ ପାଖରେ ରହିଛନ୍ତି ବାପା ଓ ମା । ସେମାନଙ୍କ ସ୍ୱର୍ଗ ! ହୁଏତ ତାରାର ଫାଙ୍କରେ ସେମାନେ ତାଙ୍କର ଝିଅକୁ ଦେଖୁଥିବେ । ତାକୁ ସେମାନେ ଏକୁଟିଆ ଦେଖି ହୁଏତ ସେମାନଙ୍କ ପାଖକୁ ଇଶାରା ଦେଇ ଡାକୁଥିବେ ।

ଗଳିର ଧୂଳିରେ ଗୋଟିଏ ଶବ୍ଦ ଶୁଣାଗଲା । ଅନ୍ନା ସେ ଆଡକୁ ଆଉଟିକେ ମନଯୋଗ ସହକାରେ ଶୁଣିଲା । ଅନ୍ନା ଗମ୍ଭୀର ହୋଇ ପଚାରିଲା -

'କିଏ ସେ ?'
'ମୁଁ !' - ସେ ପତଳା ଲୋକଟି ଅନ୍ନାର ପାଖକୁ ଆସିଲା । ସେ ଅନ୍ନାକୁ ପଚାରିଲା -
'କ'ଣ କିଛି ଖାଇଲ ?'
ଅନ୍ନା କିଛି ଉତ୍ତର ଦେଲା ନାହିଁ । ସେ ପତଳା ଲୋକଟି ଗୋଟିଏ ପ୍ୟାକେଟ ବଢାଇ ଦେଲା ।
'ଏଥିରେ ସବୁ କିଛି ଅଛି । କିଛି ଖାଇଦିଅ ।'
ସେ ପ୍ୟାକେଟ୍ ନେଇ ଅନ୍ନା କହିଲା –
'ବର୍ତ୍ତମାନ ମୋର କିଛି ଦରକାର ନାହିଁ ।'
'ତାହେଲେ ମୋତେ - - - - - - - ।'
'କ'ଣ କିଛି ଖାଇନାହଁ ?' - ଅନ୍ନାର ପ୍ରଶ୍ନରେ ଉତ୍କଣ୍ଠା ଭରି ରହିଥିଲା ।
'ଟିକିଏ କାଞ୍ଜି ପାଣି ମିଳିଲେ ତ - - - - -'
'ଆଚ୍ଛା, ବର୍ତ୍ତମାନ କାଞ୍ଜି ତିଆରି କରିଦେଉଛି । ଏଇଠି ବସିଯାଆନ୍ତୁ ।'
'କାଞ୍ଜି କେବଳ ମୋ ପାଇଁ ନୁହେଁ ।' - - - - -
'ତାହେଲେ କାହାପାଇଁ ?'
'ଆମ ଦୁଇଜଣଙ୍କ ପାଇଁ ।'
'ହଁ ।'

ଏକ ନୀରବତା । ଦୁହେଁ ମୁଣ୍ଡତଳକୁ କରି ଛିଡା ହୋଇଥିଲେ । ସେ ପତଳା ଲୋକଟି କହିଲା - 'ମୁଁ ଯାଇ ବର୍ତ୍ତମାନ ଫେରି ଆସିବି ।'

'ଆସିବେ ?'
'ହଁ । ଆସିବି ।'
ସେ ଯିବାର ଥିଲା । କିନ୍ତୁ ଗଲା ନାହିଁ । ଅନ୍ନାର ପାଖରେ ଛିଡା ହୋଇ ରହିଲା ।
'ଅନ୍ନା !' - ସେ ଡାକିଲା ।
'ହୁଁ ?' - ଅନ୍ନା ମିଠା ସ୍ୱରରେ ହଁ କହିଲା ।

ଦୂରକୁ ଗୋଟିଏ ଶବ୍ଦ ଶୁଣାଗଲା । ଏକା ସାଙ୍ଗରେ କିଛି ଲୋକ କାନ୍ଦିବାର ଓ ଚିତ୍କାର କରିବାର ଶୁଣାଗଲା । 'ସେ କ'ଣ ?' - ଅନ୍ନା ଡରିଯାଇ ଭୟ ମିଶ୍ରିତ ସ୍ୱରରେ ପଚାରିଲା ।

'ପୁଲିସବାଲା ! - - - - - ଭିତରକୁ ଯାଇ କବାଟ ବନ୍ଦ କରିଦିଅ ।'
ସେ ବିଜୁଳି ପରି ଉଭେଇ ଗଲା ।

## 19

ସେ ଦିନ ଅଧରାତିରେ କୁକୁର ମଧ୍ୟ ଭୋବାଇଲା ନାହିଁ। ସେ ଭୟାନକ ନୀରବତାକୁ ଭାଙ୍ଗିବାର ସାହସ କୁକୁରର ମଧ୍ୟ ନ ଥିଲା ।

ଏଭଳି ପରିସ୍ଥିତି ! ମିସ୍ତ୍ରୀର ଘରେ ପଶି ବାଡେଇଲେ ଏବଂ ତାକୁ ଅବଶ କରି ଦେଲେ ! ରାସ୍ତାରେ ଛୋଟ ମାଲିକ ମଟର ସାଇକେଲରେ ଯାଉଥିବା ସମୟରେ ତାଙ୍କୁ ପଥରମାରି ଖସାଇ ପକାଇଲେ ଏବଂ ତାଙ୍କର ହାତ ଭାଙ୍ଗି ଦେଲେ । ସମସ୍ତ ପୁଞ୍ଜିପତି ସାବଧାନ ହୋଇଗଲେ । ବର୍ତ୍ତମାନ ଅବସ୍ଥାରେ ଶାସନ ସତ୍ତା ତାଣ୍ଡବ ନୃତ୍ୟ କରୁଥିଲା ।

ଅନ୍ନା କୁଡିଆ ଭିତରକୁ ଯାଇ କବାଟକୁ ଶକ୍ତ ଭାବରେ ବନ୍ଦ କଲା ଏବଂ ଭୂଇଁରେ ଚଟାଇ ବିଛାଇ ଅନ୍ଧକାରରେ ଶୋଇଗଲା । ଅବଶ୍ୟ ତାକୁ ନେଇ ସହରରେ ଅନ୍ଧକାରର ନୀରବତା ମଧ୍ୟରେ କିଛି ହେଉଥିଲା । ଯେ କୌଣସି ମୁହୂର୍ତ୍ତରେ ତାର କୁଡିଆରେ ଆକ୍ରମଣ ହୋଇପାରେ ବୋଲି ସେ ଆଶଙ୍କା କରୁଥିଲା ।

ସେ ଏକୁଟିଆ, ଦାରିଦ୍ର୍ୟ ଓ ଅସୁବିଧା ମଧ୍ୟରେ ତାର ଜନ୍ମ । କିନ୍ତୁ ମାତା-ପିତା ଏବଂ ଭାଇମାନଙ୍କ ଲାଳନ ପାଳନ ସ୍ନେହ ମଧ୍ୟରେ ଦାରିଦ୍ର୍ୟ ଏବଂ ଅସୁବିଧାର ବିନା ଅନୁଭବରେ ସେ ବଡ ହୋଇଥିଲା । ତାର ଶୈଶବ ତଥା କୈଶୋରର ଦିନ ଗୁଡିକ ବେଶ ଭଲ ଭାବରେ କଟିଥିଲା । କିନ୍ତୁ ଯେତେବେଳେ ତାର ଦେହରେ ଯୌବନର ରଙ୍ଗ ଲାଗିଲା ସେତେବେଳେ ଅସୁବିଧା ଏବଂ ବିପଦ ତାର ଚାରିପଟେ ଦେଖାଗଲା । ଗୋଟି ଗୋଟି କରି ଅସୁବିଧା ଏବଂ ବିପଦ ତାକୁ ଘେରି ରହିଥିଲେ ।

ମାଆ ଯେତେବେଳେ ବାପାଙ୍କ ପାଖକୁ ସ୍ୱର୍ଗକୁ ଯାଇ କାଣ୍ଡି ତିଆରି କରିଦେବା କଥା କହୁଥିଲା ସେତେବେଳେ ସେ ମାଆର ପାଗଳାମି ପଣ ବେଶ ବୁଝିପାରିଥିଲା । କିନ୍ତୁ ଯେତେବେଳେ ତାର ଭାଇମାନେ କାରଖାନାରେ ଆନ୍ଦୋଳନ କଲେ ତଥା ମିସ୍ତ୍ରୀ ଏବଂ ମାଲିକଙ୍କ ପ୍ରତି ଅସଦ୍‌ବ୍ୟବହାର କଲେ ସେତେବେଳେ ସେ ମାଆର ପାଗଳାମି କଥା ବୁଝିବାକୁ ସମୟ ପାଇ ନଥିଲା । ସେ କଥା ବୁଝିବାର ପ୍ରବଳ ଇଚ୍ଛା ମଧ୍ୟ ତାର ନଥିଲା ।

ସେମାନେ ଯାହା ଇଚ୍ଛା ତାହା କରନ୍ତୁ, କିନ୍ତୁ ବିନା ବିପତ୍ତିରେ ତାର ଭାଇମାନେ ପ୍ରତ୍ୟେକ ଦିନ ଘରକୁ ଫେରନ୍ତୁ, ଏଇ ଏକମାତ୍ର ତାର ପ୍ରାର୍ଥନା ଥିଲା ।

ସେଇ ପତଳା ଲୋକ- ତାକୁ ଏ ଆଦୌ ଭଲଭାବେ ବୁଝି ପାରିନାହିଁ । ସେ କୁଆଡୁ ଆସିଲା ? କାହିଁକି ଆସିଲା ? ତାର ମାତା - ପିତା କ'ଣ ନାହାନ୍ତି ? କ'ଣ ତାର ଭଉଣୀ ନାହିଁ ? ଦିନେ ତା ମା ସେ ପତଳା ଲୋକ ବିଷୟରେ କହିଥିଲା ଯେ, 'ସେ ଲୋକଙ୍କୁ ମୃତ୍ୟୁ ଆଡକୁ ଆଗେଇ ନେବାର ଲୋକ !' ଏକଥା ତାର ମନେ ପଡିଲା ।

ଏ କ'ଣ ଠିକ୍ ? ସେ କ'ଣ ସତରେ ଏ ଲୋକଙ୍କୁ ମୃତ୍ୟୁ ଆଡକୁ ଟାଣି ନେଉଛି । ଏ କ'ଣ ତାର ଭାଇମାନଙ୍କୁ ଅନ୍ୟଦ୍ୱାରା ହତ୍ୟା କରାଇବ ? ଯଦି ବି ସେ ଏ କାର୍ଯ୍ୟ କରେ ତାହେଲେ ତାକୁ ମିଳିବ କ'ଣ ? - - - - - କିଏ ଜାଣେ ? ସେ ତ କିଛି ଜାଣେ ନାହିଁ !

ସେଇ ପତଳା ଶରୀର, ବଡ ମୁଣ୍ଡ ଏବଂ ଝଟକୁ ଥିବା ଆଖି ! ଅନ୍ନା ସେଇ ଉଜ୍ଜ୍ୱଳ ଆଖିରେ ଲୋତକଭରା ମିଶ୍ରିତ ସ୍ନେହ ଦେଖିବାକୁ ପାଉଥିଲା । ସେଇ ପତଳା ଲୋକ ଯେ କୌଣସି ଛୋଟିଆ ଚଢେଇକୁ ଅନାଦର କରିବାରେ ଅସମର୍ଥ ଏଭଳି ଏକ ଧାରଣା ତା'ର ମନକୁ ଅନେକବାର ଆସିଥିଲା ।

ଘରର ଅଗଣାରେ କିଏ ଧିର ସ୍ୱରରେ କାଶିବାର ଶୁଣାଗଲା । ଅନ୍ନା କାନ ପାତି ଶୁନିଲା । ବାରଣ୍ଡାରେ ପାଦ ଶବ୍ଦ ମଧ୍ୟ ଶୁଣାଗଲା । ସେ ଉଠି ଛିଡା ହେଲା । ସେ ପଚାରିଲା -

'କିଏ ସେ ?'

'ମୁଁ, କବାଟ ଖୋଲ ।'

'କ'ଣ ସାନଭାଇ ?'

'ହଁ ।'

ସେ କବାଟ ଖୋଲିଲା । ବାରଣ୍ଡାରେ ଅସ୍ତ ହୋଇ ଯାଉଥିବା ଅଳ୍ପ ଜହ୍ନର ଆଲୁଅରେ ରିକ୍କି ମୁଣ୍ଡ ନୁଆଁଇ ଛିଡା ହୋଇଥିଲା । ଅନ୍ନା ପଚାରିଲା -

'ଭାଇ, ବର୍ତ୍ତମାନ କାହିଁକି ଏଠାକୁ ଆସିଛ ? ପୋଲିସ ପାଗଳ କୁକୁର ପରି ଚାରିଆଡେ ପର୍ଗତରା ମାରୁଛନ୍ତି ।' ତାର ଗଳା ରୁଦ୍ଧି ହୋଇଗଲା । ସେ ରହି ରହି କହିଲା- 'ଭାଇ, ବର୍ତ୍ତମାନ ଏଇଠି ରୁହ ନାହିଁ । ବର୍ତ୍ତମାନ ଚାଲିଯାଅ ।'

'ତୁ ଏଠାରେ - - - - - - ତୁ ଏଠାରେ ଏକୁଟିଆ - - - - - ' ରିକ୍କି ଅଣନିଶ୍ୱାସୀ ହୋଇଯାଉଥିଲା ।

'ଭଗବାନ ଅଛନ୍ତି । ଭାଇ, ଚାଲିଯାଅ ।'

'ତମେ କ'ଣ ଆଜି କିଛି ଖାଇଛ ?'

'କ'ଣ ସାନଭାଇକୁ କିଛି ଦରକାର ?'

'ଚାଉଳ ଅଛି କି ?'

'ହଁ । ଭାତ ରାନ୍ଧିବା ଦରକାର କି ?'

'ଚାଉଳ କୁଆଡୁ ଆସିଲା ?'

'ଆଣିଥିଲେ ।'

'କିଏ ?'

'ସେ - - - - - ସେ - - - '

'ସେଇ ପବନ - ପତଳା ଲୋକ ?'

'ହଁ ।'

ରଙ୍କି ଚୁପ ରହିଲା । ଅନ୍ନା ଦୃଢ ସ୍ୱରରେ କହିଲା -

'ଭାଇ, ଯାଅ, ଆଉ ରୁହ ନାହିଁ ।'

'ପୋଲିସବାଲା କ'ଣ ଏଠିକୁ ଆସିଥିଲେ ?'

'ଆସିବେ । ଯେତେବେଳେ ଆସିବେ ସେତେବେଳେ - - - - - । ଆଚ୍ଛା, ଭାଇ, ଡେରି କର ନାହିଁ । ଯାଅ !' - ସେ ଚାପା ସ୍ୱରରେ କାନ୍ଦିବାକୁ ଲାଗିଲା ।

ଗଳିରେ ପଦଧ୍ୱନି ଶୁଣିବାକୁ ମିଳିଲା । ଅନ୍ନା ଡରିଯାଇ କହିଲା - 'ହେଇ ସେମାନେ ଆସିଗଲେ ! ଯାଅ, ଭାଇ ; ଯାଅ !'

ରଙ୍କି ଅଗଣା ଉପରକୁ ଆସି ଦୌଡି ପଳାଇବାକୁ ଉଦ୍ୟତ ହେଉଛି, ଏତିକିବେଳେ ପତଳାଲୋକ ଆସି ପହଞ୍ଚିଲା । ସେ ପଚାରିଲା -

'ରଙ୍କି କିରେ ?'

'ହଁ ।'

ସେ ରଙ୍କି ପାଖକୁ ଯାଇ ତାର ହାତ ଧରିନେଲା । ତାପରେ ସେ ଅନ୍ନାକୁ ଆଜ୍ଞା ଦେବାପରି ଧୀର ସ୍ୱରରେ କହିଲା -

'ଭିତରକୁ ଯାଅ ଆଉ କବାଟ ବନ୍ଦ କରିଦିଅ ।' 'ଆସ !' - ସେ ପୁଣି ରଙ୍କିର ହାତ ଧରି ଭିଡି ନେଲା ।

ସେ ଦୁହେଁ ଘରୁ ଗଳିକୁ ଆସିଲେ ଏବଂ ଚାଲୁ ଚାଲୁ ଆଖି ଆଗରୁ ଅଦୃଶ୍ୟ ହୋଇଗଲେ ।

ଗୋଟିଏ ଲମ୍ବା ଦୀର୍ଘଶ୍ୱାସ ଛାଡି ଅନ୍ନା କୁଡିଆ ଭିତରକୁ ଚାଲିଗଲା । କବାଟ ବନ୍ଦକରି ଦେଲା । ସେ ଚଟେଇ ଉପରେ ଶୋଇଗଲା । ସେ ସେଇ ପତଳା ଲୋକଟିକୁ ବୁଝିବାର ଚେଷ୍ଟା କରୁଥିଲା ।

'ସେ କେମିତିକା ଲୋକ ! ତାର ପ୍ରତ୍ୟେକ ଶବ୍ଦ ଏବଂ କାର୍ଯ୍ୟ କଳାପ କେମିତି ଅର୍ଥପୂର୍ଣ୍ଣ ମନେହୁଏ ।' କେବେ କେବେ ସେଇ ଉଜ୍ଜ୍ୱଳ ଆଖିରୁ ଜୁଳୁଜୁଳିଆ ପୋକ ବାହାରୁଥାଏ ତ କେବେ କେବେ ସେଥିରେ କରୁଣା, ପ୍ରେମ ଏବଂ ଆର୍ଦ୍ରତା ଭର୍ତ୍ତି ହୋଇ ରହିଥାଏ । ଯେତେବେଳେ ସେ ପାଖକୁ ଆସେ ସେତେବେଳେ କେମିତି ଗୋଟିଏ ନିରୀହ ମେଷ ଶାବକ ପରି ଜଣାପଡେ । ଆଉ ଯେତେବେଳେ ସେ ପାଖରୁ ଦୂର ହୋଇଯାଏ ସେ ଆସ୍ତେ ଆସ୍ତେ ସିଂହର ରୂପ ଧାରଣ କରେ ।

'କ'ଣ ମୃତ୍ୟୁ ଆଡକୁ ଧରିଛି ?' - ଅନ୍ନା ନିଜେ ନିଜକୁ ପ୍ରଶ୍ନ କଲା ।'

'ଯଦି ହୋଇଥାଏ ତାହେଲେ - - - - - '

ସେ ଆଖିରେ ସ୍ନେହର ଆର୍ଦ୍ରତା ଦେଖାଯାଏ କାହିଁକି ? ଯେତେବେଳେ ତାର ବାପା ମରିଗଲେ ଏବଂ ଦୁଇଭାଇ ଜେଲକୁ ଚାଲିଗଲେ, ସେତେବେଳେ ସେଇ ପତଳା ଲୋକଟି ତାକୁ ଏବଂ ତାର ମା'ର ଭରଣ ପୋଷଣ ସକାଶେ ପ୍ରତ୍ୟେକଦିନ ଆର୍ଥିକ ସାହାଯ୍ୟ ଦେଉଥିଲା କାହିଁକି ? ମାଆକୁ ଖୋଜିବା ପାଇଁ ଅର୍ଦ୍ଧରାତ୍ରରେ ସେ କାହିଁକି କଷ୍ଟ ସହି ଉଠି ଆସିଥିଲା ? ଯେତେବେଳେ ଘରେ ନିଆଁ ଲଗାଇ ଦିଆଗଲା ସେତେବେଳେ ସେ କାହିଁକି ଚାରିପାଖଜଣଙ୍କ ସାଙ୍ଗରେ ଏକୁଟିଆ ଲଢୁଥିଲା ? ତାର ସେଇ ଅବସ୍ଥାରେ ସେ କାହିଁକି ପ୍ରତ୍ୟେକଦିନ ଚାଉଳ ଏବଂ ପରିବା କିଣି ଦେଉଥିଲା ?

'ଏଇ କ'ଣ ସେଇ ଲୋକ ଯେ ସେମାନଙ୍କୁ ମୃତ୍ୟୁ ଆଡକୁ ଟାଣି ନେଉଛି ?' - ସେ ନିଜେ ପୁଣି ସେଇ ପ୍ରଶ୍ନ କଲା ।

ହୃଦୟର ଗଭୀର ପ୍ରଦେଶରେ ଏକ ମଧୁର ଅନୁଭୂତି ଏବଂ ସାମାନ୍ୟ କଷ୍ଟ ! ଏ କ'ଣ ସେ ନିଜେ ମଧ୍ୟ ଜାଣି ନଥିଲା । କଷ୍ଟ ତ ନିଶ୍ଚୟ, କିନ୍ତୁ ମଧୁର !

ସେ ପତଳା ଲୋକ ଫେରି ଆସିବ ବୋଲି ଅନ୍ନାକୁ ଲାଗିଲା । ସେ ଉଠିଲା । କବାଟ ଖୋଲିଲା । ଅଗଣାରେ ଆସି ଛିଡା ହେଲା ।

ଗଳିର ଧୂଳିରେ ଶବ୍ଦ ଶୁଣାଗଲା ! ଅନ୍ନାକୁ ଲାଗିଲା ଯେମିତି ଗୋଟିଏ ମଧୁର ଅନୁଭୂତି ଦେହସାରା ଖେଳିଯାଉଛି । ସେ ପୁଲକିତ ହୋଇ ଉଠିଲା ।

'କ'ଣ ତୁମେ ଭିତରକୁ ଯାଇନଥିଲ ?' - ସେ ପ୍ରଶ୍ନ ଏକ ଆଦେଶାତ୍ମକ ପ୍ରଶ୍ନ ଥିଲା । ପତଳା ଲୋକଟି ପାଖକୁ ଆସିଲା । ସେ ଦ୍ୱିତୀୟଥର ସେ ପ୍ରଶ୍ନ ପଚାରିଲା -

'ଭିତରକୁ ଯାଇନଥିଲ କାହିଁକି ?'

'ଯାଇ ତ ଥିଲି । କବାଟ ମଧ୍ୟ ବନ୍ଦ କରିଥିଲି ।' ସେ ଧୀର ସ୍ୱରରେ କହିଲା ।

'ତାହେଲେ ?'

'ସେତେବେଳେ ଭାବିଲି ଯେ, ବାହାରକୁ ଆସେ'- ସେ ମୁଣ୍ଡ ତଳକୁ କରି ଏକଥା କହିଲା । ଏକ ଅଖଣ୍ଡ ନୀରବତା ।

'ଅନ୍ନା !'

'ହଁ ।'

ପୁଣି ସେଇ ଦୀର୍ଘ ନୀରବତା ।

'ଅନ୍ନା !'

'ହଁ ?'

'ଭିତରକୁ ଯାଇ କବାଟ ବନ୍ଦ କରିଦିଅ ।'

'ହଁ ।'

ସେ ଅଗଣାରୁ ଗଳିକୁ ଆସିଲା । ପୁଣି ଆସ୍ତେ ଆସ୍ତେ ଚାଲିବାକୁ ଲାଗିଲା । ଅନ୍ନା ଭିତରକୁ ଯାଇ କବାଟ ବନ୍ଦକଲା ।

## 20

ଜନତାର ଗୋଟିଏ ଶ୍ରେଣୀ ଯେଉଁମାନେ ଏପର୍ଯ୍ୟନ୍ତ ଦମନ, ଶୋଷଣ, ଏବଂ ଦାସତ୍ୱରେ ବୁଡି ରହିଥିଲେ ସେମାନେ ଜାଗି ଉଠୁଥିଲେ, ମୁଣ୍ଡ ଟେକୁଥିଲେ ।

ଯେତେବେଳେ ଦାସତ୍ୱର ଶୃଙ୍ଖଳକୁ ଛିନ୍ନ କରିବାର ଚେଷ୍ଟା ହୁଏ ସେତେବେଳେ ହାତ, ଗୋଡରେ ସାମାନ୍ୟ ଆଘାତ ଲାଗିବାର ସମ୍ଭାବନା ମଧ୍ୟ ଥାଏ । ଏ ତ ଅନିବାର୍ଯ୍ୟ ଘଟଣା । ସେ ସମୟରେ ଚିନ୍ତା କରିବା, ପୁନର୍ବିଚାର କରିବାକୁ ବେଳ ମିଳେନା । ଜାଗୃତି ଏବଂ ଉନ୍ନତି ବିରୁଦ୍ଧରେ ଯାହା ଥିବ ତାକୁ ସବୁ ଛାଙ୍ଗିରୁଜି ଦିଆଯାଏ ।

ସବୁଦିନ ପରି ସେଦିନ ମଧ୍ୟ ଆଖପାଖର ଝରଣା ଓ ନଦୀ ପରି ଜନସ୍ରୋତ ସହର ଆଡକୁ ଚାଲିଥିଲା । ଯେଉଁ ଝରଣାଗୁଡିକ ମୌନ ଅଥବା ମର୍ମର ନାଦରେ ବୋହୁଥିଲେ ସେମାନେ ବର୍ତ୍ତମାନ ଶବ୍ଦାୟମାନ ହୋଇ ବୋହିବାକୁ ଆରମ୍ଭ କଲେ । ଲୋକମାନଙ୍କର ପ୍ରତିଜ୍ଞା, ରୋଷଭରା ଅଟ୍ଟହାସ୍ୟ, ସ୍ୱାତନ୍ତ୍ର୍ୟର କଳି ବିବାଦ ଏ ସବୁ ସହିତ ସେହି ପ୍ରବାହମାନ ଜନ ସମୁଦ୍ର ଏସବୁ ଆତ୍ମସାତ୍ କରି କାରଖାନା ଭିତରେ ପଶି ଚାରିଆଡେ ବିଚ୍ଛୁରିତ ହେଲା । ମାଲିକମାନେ କ୍ରୋଧାନ୍ୱିତ ଏବଂ ସେବକମାନେ ଭୟାକ୍ରାନ୍ତ ହେଲେ ।

ଦିନ ସାରା ଅନ୍ନା ଉତ୍କଣ୍ଠିତ ରହିଲା ବା ଅନ୍ଧାର ହେବାପରେ ସେ ପତଳା ଲୋକ ଆସିବ, ବା ଭାଇମାନେ ଆସିବେ ଏବଂ ସେ ନିଜେ ସବୁ ଖବର ଶୁଣିପାରିବ, ସେଇ ପ୍ରତୀକ୍ଷାରେ ସେ ସମୟ ବିତାଉଥିଲା ।

ବେଲାୟୁଧନ୍‌ର ମା ଆସି ତାକୁ ପଚାରିଲା -

'ଝିଅ, ତୁ କ'ଣ ଏମିତି ବସି ରହିବୁ ?'

'ମୋର ଆଉ କ'ଣ କରିବା ଉଚିତ ?'

'ଚାଉଳ ଅଛି କି ?'

'ହଁ ।'

'ତାହେଲେ କାଞ୍ଜି ତିଆରି କରି ଖାଉନୁ କାହିଁକି ?' ଅନ୍ନା କାଞ୍ଜି ତିଆରି କରି ଖାଇଲା । ସନ୍ଧ୍ୟାବେଳେ ବେଲାୟୁଧନର ମା ପୁଣି ଆସିଲା । ସେ କହିଲା-

'ଝିଅ, ତୁ ଏଠାରେ ଏକୁଟିଆ ଶୋଇବା ଉଚିତ ନୁହେଁ, ତୁ ଆମ ଘରକୁ ଚାଲିଆ', ନ ହେଲେ ମୁଁ ଏଠିକି ଆସିବି ।'

'ଭଗବାନ ମୋ ସାଙ୍ଗରେ ଅଛନ୍ତି ।'

'ଭଗବାନ ତୋ ସହିତ ଅଛନ୍ତି, କେବଳ ଏତିକି କହି ରହିଲେ - - - - - '

'ରହିଲେ କ'ଣ ହେବ ?'

'ଯଦି ଘରେ କେହି ପଶିଯାଏ ତାହେଲେ ?'

'ପଶି ଆସିଲେ କ'ଣ ହେବ ?'

'ଯଦି ସେମାନେ ଜବରଦସ୍ତ ଧରି ନିଅନ୍ତି, ବଳାତ୍କାର କରନ୍ତି ତାହେଲେ ?'

'ମୋତେ କାହିଁକି ଧରି ନେବେ ? ମୁଁ କ'ଣ କାହାକୁ ମାରିଛି ? ମୁଁ କ'ଣ କାହାରି କିଛି ଧନ ସମ୍ପତ୍ତି ଚୋରି କରିଛି ?'

'ବଢ଼ିଲା ଝିଅମାନଙ୍କୁ ସେମାନେ ଏଇଥିପାଇଁ ଧରନ୍ତି ଯେ - - - - - -'

ଅନ୍ନାର ମୁଖମଣ୍ଡଳରେ ଗମ୍ଭୀରତା ପ୍ରକାଶ ପାଇଲା । ସେ ଦୃଢ଼ ସ୍ୱରରେ କହିଲା –

'ଯଦି କେହି ଜବରଦସ୍ତି ଧରେ ସେବେଳେ ଜାଣିବ, କାହାକୁ ଧରିଛି ।'

ତାପରେ ବେଲାଧ୍ୱ ଧନର ମା ଆଉ କିଛି କହିଲା ନାହିଁ । କନିଚ କୋଲେଙ୍ଗର ଭଗବତୀଙ୍କୁ ଡାକି ତାଙ୍କୁ ବିନତି କରି ସେଠାରୁ ଚାଲିଗଲା ।

ରାତି ହେଲା । ଦଶଟା ମଧ୍ୟ ବାଜି ଗଲା । ଅନ୍ନା କୁଡ଼ିଆର କବାଟ ଜୋରରେ ବାନ୍ଧକରି ଭିତରେ ଗଡ଼ୁଥିଲା । ସେ କିନ୍ତୁ ନିଦରେ ଶୋଇ ନଥିଲା ।

ଅଗଣାରେ କାହାର ପାଦ ଶବ୍ଦ ଶୁଣିବାକୁ ପାଇଲା । ଅନ୍ନା ସେ ପାଦ ଧ୍ୱନିକୁ କାନ ଡେରି ଶୁଣିଲା । ତାକୁ ଜଣାପଡିଲା ଯେମିତି ଏକରୁ ଅଧିକ ଲୋକ ଅଗଣାରେ ଚଲାବୁଲା କରୁଛନ୍ତି । ସେ ଉଠିଲା । ଦୁଆର ପାଖରେ ଯାଇ କାନ ପାତି ଶୁଣିଲା ।

କିଛି ଲୋକ ଘରର ଚାରିପାଖରେ ବୁଲୁଥିଲେ । ସେ କିଛି ପଚାରିବାକୁ ଚାହୁଁଥିଲା । କିନ୍ତୁ ଶବ୍ଦ ନ ବାହାରିବାରୁ ସେ ଆଉ ପଚାରି ପାରିଲା ନାହିଁ ।

'ଏଇ ! ଭିତରେ କିଏ ଅଛି ?' - ସେ ଏକ ଆଦେଶର ସ୍ୱରରେ କହିଲା । ଅନ୍ନା ଏହି ସ୍ୱର ସହିତ ଆଦୌ ପରିଚିତ ନଥିଲା ।

'କିଏ ସେ ?' - ଅନ୍ନା ଧୀର ସ୍ୱରରେ ପଚାରିଲା ।

'କବାଟ ଖୋଲ !' - ସେ ଏକ ଆଦେଶ ଥିଲା ।

ଅନ୍ନା ଦିଆସିଲି ନେଇ ଡିବି ଜଳାଇଲା । ପୁଣି କବାଟ ଖୋଲି ନେଇ ବାରଣ୍ଡାରେ ଆସି ଛିଡ଼ା ହେଲା । ସେ

ତରିଗଲା ! ଯମଦୂତ ପରି ଚାରିଜଣ ପୋଲିସ ଅଗଣାରେ ଛିଡା ହୋଇଥିଲେ । ଜଣେ ଲୋକ ବାରଣ୍ଡାରେ ଚଢିଗଲା ଏବଂ ଅନ୍ନା ହାତରୁ ଦୀପ ଛଡାଇ ନେଇ ଘର ଭିତରକୁ ପଶିଗଲା । ଘର ତଲାସି କରି ଫେରିବା ପରେ ସେ ଗମ୍ଭୀର ହୋଇ ଅନ୍ନାକୁ ପଚାରିଲା -

'ଆରେ, ରକ୍କି କୋଉଠି ଅଛି ?'

'ସାନଭାଇ ନାହିଁ । ଏଠିକୁ ସେ ଆସିନାହିଁ ।' - ସେ ସାହସର ସହିତ ଏହା କହିଲା ।

'ସେ କୋଉଠି ଅଛି ବୋଲି ମୁଁ ତୋତେ ପଚାରୁଛି ?' - ପୋଲିସ ଜଣକ ଉଚ୍ଚସ୍ୱରରେ କହିଲା ।

'ମୁଁ କେମିତି ଜାଣିବି ?' - ଅନ୍ନା ଡରି ନଯାଇ କହିଲା ।

'ସତରେ ଜାଣିନୁ ?' - ପୋଲିସବାଲାର ମୁହଁରେ କ୍ରୁରତା ଫୁଟି ଉଠିଲା ।

'ମୁଁ ଜାଣେ ନାହିଁ ।'

'ସତ କହିବା ଭଲ ।'

'ମୁଁ ସତ କହି ସାରିଛି ।'

ଅଗଣାରେ ଛିଡା ହୋଇଥିବା ପୋଲିସବାଲାମାନେ ବାରଣ୍ଡା ଉପରକୁ ଚଢିଗଲେ । ସେଥିମଧ୍ୟରୁ ଜଣେ କହିଲା -

'ଖୁବ୍ ସୁନ୍ଦରୀ ଝିଅ । ତାକୁ ଡରାଅ ନାହିଁ । - - - - ଆଚ୍ଛା, ତୋର ନାମ୍ କ'ଣ ?'

'ଅନ୍ନା ।'

'ବାଃ, ଭଲ ନାମ ତ !' - ସେ ଅନ୍ନାର କାନ୍ଧ ଉପରେ ହାତ ରଖିଲା ।

ଅନ୍ନା ହଠାତ୍ ପଛକୁ ଘୁଞ୍ଚିଗଲା ।

'ମୁଁ ଏଇଠି ଅଛି !' - ଗଳିରୁ କେହି ପାଟିକରି କହିଲା ।

'କିଏ ରେ ?' - ପୋଲିସବାଲା ସମସ୍ତେ ସମସ୍ୱରରେ ପଚାରିଲେ ।

'ମୁଁ ହେଉଛି - ରକ୍କି !'

'ଧର ଧର ତାକୁ ଧର !' - ପୋଲିସବାଲାମାନେ ଏକା ସାଙ୍ଗରେ ଗଳି ଉପରକୁ ଡେଇଁ ପଡିଲେ ।

''ଧରି ପାରିଲେ ଧର '' - ଗଳିରେ ଛିଡା ହୋଇଥିବା ଲୋକ ପବନ ବେଗରେ ଦୌଡିବାକୁ ଆରମ୍ଭ କଲା ।

ପୋଲିସ ବାଲା ପଛରେ ଦୌଡିଲେ ।

'ହେ ଯୀଶୁ !' - ଅନ୍ନା ଆକାଶକୁ ହାତ ଉଠାଇ ଯୀଶୁଙ୍କୁ ଡାକିଲା । କିଛି ସମୟ ପର୍ଯ୍ୟନ୍ତ ସେ ସେଇ ଭଙ୍ଗୀରେ ରହିଗଲା । ଏହିଭଳି ଭାବରେ କିଛି ସମୟ ବିତିଗଲା ।

'ଏ କ'ଣ ? ମୋର ସାନଭଉଣୀ !'- ଏ କଥା କହି ରକ୍କି ଉଦ୍‌ବେଗର ସହିତ ବାରଣ୍ଡା ଉପରକୁ ଆସି... ।

ସେ ଯେ ରକ୍କି, ଅନ୍ନା ଏକଥା ବିଶ୍ୱାସ କରିପାରୁ ନଥିଲା । ରକ୍କି ଖୁବ୍ ନିକଟକୁ ଆସିଥିଲେ ମଧ୍ୟ ସେ ରକ୍କିକୁ ପଚାରିଲା -

'କିଏ ସେ ?'

'ସାନ ଭଉଣୀ, ମୁଁ ଆସିଛି ! ମୁଁ !'

'କ'ଣ ସାନଭାଇ ?'

'ହଁ ।'

'କ'ଣ ପୋଲିସବାଲା ତମକୁ ଧରିପାରିଲେ ନାହିଁ ?'

'କୋଉ ପୋଲିସବାଲା ? ସେମାନେ ଆସିଥିଲେ କି ? ମୋତେ ଧରିବାକୁ ଆସିଥିଲେ ?'

'ସତେ ତାହେଲେ ତମେ କିଛି ଜାଣନାହିଁ ?'

'ମୁଁ କେମିତି ଜାଣିବି ? ମୁଁ ତ ବର୍ତ୍ତମାନ ଏଠିକୁ ଆସୁଛି ।'

'ତାହେଲେ ଗଳିରୁ କିଏ ବାହାରି କହିଲା ଯେ, ମୁଁ ଏଇଠି ଅଛି ?'

'ଏଁ ?'

'ମୁଁ ଏଇଠି କହି ତମେ ଦୌଡ଼ିବାର ମୁଁ ଶୁଣିଛି ।'

'ତୁ ହୁଏତ ସ୍ୱପ୍ନ ଦେଖୁଥିବୁ ।'

'ତାହେଲେ ଏମିତି ପାଟିକରି କିଏ ଦୌଡ଼ିଥିଲା ?'

'ଆରେ ପାଗଳୀ, ତୋତେ ମିଛଟାରେ ଏମିତି ଲାଗିଥିବ !'

'ଯଦି ମୋତେ ମିଛଟାରେ ଏମିତି ଲାଗିଥିଲା ତାହେଲେ ପୋଲିସବାଲା କାହିଁକି ପଛରେ ଦୌଡୁଥିଲେ ?'

'କ'ଣ ପୋଲିସବାଲା ଏଠାକୁ ଆସିଥିଲେ ?'

'ରକ୍କି କୋଉଠି ଅଛି' କହି ଯେତେବେଳେ ପୋଲିସବାଲା ମୋତେ ଧରିବାକୁ ଆରମ୍ଭ କଲେ, ସେତେବେଳେ ଗଳିରୁ କିଏ ଜଣେ ପାଟିକରି କହିଲା ।

ରକ୍କି ବର୍ତ୍ତମାନ ମହାଚିନ୍ତାରେ ପଡିଗଲା ।

ପୁଣି କହିଲା -

'ତାହେଲେ ସେ ପବନ ହୋଇଥିବ ।'

'ହଁ, ମୋତେ ମଧ୍ୟ ଏମିତି ଲାଗୁଛି । ପୋଲିସବାଲାଙ୍କୁ ହଟାଇବା ପାଇଁ ସେ ଏମିତି କୌଶଳ କରିଥିବ ।'

ରାସ୍ତାରେ, କିଛି ଦୂରରେ ପାଦଶବ୍ଦ ଶୁଣାଗଲା । ଅନ୍ନା ଡରିଯାଇ କହିଲା - 'ଆସୁଛନ୍ତି, ପୋଲିସବାଲା ଆସୁଛନ୍ତି ! ସାନଭାଇ, ଚାଲିଯାଅ !'

'ମୁଁ କୁଆଡେ ଯିବି ? ସେମାନେ ଆସନ୍ତୁ । ମୋତେ ଧରିନେଇ ଯାଆନ୍ତୁ ।'

ସେଇ ପତଳା ଲୋକ ଅଗଣା ଉପରକୁ ଆସିଲା । ଅନ୍ନା ଦୀର୍ଘଶ୍ୱାସ ଛାଡିଲା । ସେ ପଚାରିଲା -

'କିଛି ସମୟ ପୂର୍ବରୁ ଆପଣ ଗଳିରେ କିଛି କହିଥିଲେ ?'

'ହଁ ।'

'ପୋଲିସବାଲା ମାନେ କୋଉଠି ଅଛନ୍ତି ?'

'ସେମାନଙ୍କୁ ଭୁଲେଇ ଦେଇ ଆସିଛି ।' ସେ ରକ୍କିର ହାତଧରି ପଚାରିଲା -

'ମୁଁ କହିଥିଲି ନା, ଏଠିକୁ ଆସିବା ଉଚିତ ନୁହେଁ ?'

'ମୋ ସାନ ଭଉଣୀ - - - - -' - ରକ୍କିର ଗଳା ଗଦ୍‌ଗଦ୍ ହୋଇ ଉଠିଲା ।

'ଆସ ! ତାକୁ ତ କୌଣସି ବିପଦ ଆସିବ ନାହିଁ ।' ସେ ଚାଲିଗଲା । ରକ୍କି ମଧ୍ୟ ସାଙ୍ଗରେ ଗଲା । ଗଳିକୁ ଯାଇ ସେ ପତଳା ଲୋକ ଅନ୍ନାକୁ କହିଲା -

'ଭିତରକୁ ଯାଇ କବାଟ ବନ୍ଦକରି ଦିଅ ।'

'ହେ ଯୀଶୁ !' - ଅନ୍ନା ଆକାଶକୁ ହାତ ଉଠାଇ ଏ କଥା କହିଲା ।

## 21

ନିଜ ପାଦ ତଳେ ଥିବା ଜମିରେ ମଧ୍ୟ ବିଦ୍ରୋହର ସ୍ୱର ଉଠିଲା । ହରତାଳ ଚାରିଆଡେ ବ୍ୟାପିଗଲା । ପୁଞ୍ଜିପତି ଏବଂ ପୋଲିସବାଲାଙ୍କ ଧମକର କୌଣସି ପ୍ରଭାବ ଏ ଆନ୍ଦୋଳନ ଉପରେ ପଡିଲାନାହିଁ ।

ସେ ପ୍ରବାହର ବିରୁଦ୍ଧରେ ଏକ ବିରାଟ ପ୍ରତିବନ୍ଧକ ଥିଲା । ଯାହାକୁ ଅସାଧ୍ୟ ବୋଲି ପ୍ରତୀୟମାନ ହେଉଥିଲା ତାହା ସାଧ୍ୟ ବୋଲି ଜଣାଗଲା । ବର୍ତ୍ତମାନ ସୁଦ୍ଧା ସନ୍ଦେହଥିଲା, ଯେ ହୁଏତ ପ୍ରବାହର ଗତିପଥ ଓଲଟା ହୋଇଯାଇପାରେ । ଯେଉଁମାନେ ପ୍ରବାହର ସ୍ରୋତ ସହିତ ବୋହିଯିବାରେ ଅଭ୍ୟସ୍ତ ଥିଲେ, ସେମାନେ ପ୍ରବାହର ଏବଂ ସ୍ରୋତର ପ୍ରତିକୂଳରେ ଥିବା ଲୋକଙ୍କ ପ୍ରତି ସହାନୁଭୂତି ପ୍ରକଟ କରିବାରେ ଲାଗିଲେ । ଏହିପରି ଭାବରେ ଶ୍ରମିକମାନଙ୍କୁ ସଂଗଠିତ ଶକ୍ତିର ଏକ ଅନୌପଚାରିକ ସ୍ୱୀକୃତି ମିଳିଗଲା ।

ସାଥୀ ନୀଳକଣ୍ଠନ୍ ଶ୍ରମିକ ସଂଗଠନର ନେତା ହୋଇଗଲେ । କାରଣ ସେ ଉଚ୍ଚଶିକ୍ଷିତ ଏବଂ ଉଚ୍ଚକୁଳ ସମ୍ଭୂତ ଥିଲେ । ଏହି କାରଣରୁ ତାଙ୍କ ନେତୃତ୍ୱରେ ଗଢି ଉଠିଥିବା ଶ୍ରମିକ ସଂଗଠନ ଉପରେ ପୁଞ୍ଜିପତି ତଥା ଅନ୍ୟାନ୍ୟ କର୍ମଚାରୀମାନଙ୍କ ଦୋଷାରୋପ କରିବା ଅସମ୍ଭବ ହୋଇ ପଡିଲା । ବର୍ତ୍ତମାନ ଜେଲରେ ଥିବା ଶ୍ରମିକ ମାନଙ୍କୁ ଜାମିନରେ ଆଣିବା ଏବଂ ସେମାନଙ୍କ ବିରୁଦ୍ଧରେ ଥିବା ମୋକଦ୍ଦମା ଚଳାଇବାର ତଦ୍‌ବୀର କରିବା କାର୍ଯ୍ୟ ଆରମ୍ଭ ହେଲା ।

ତାର ଦୁଇଭାଇ ଫେରି ଆସନ୍ତୁ ବୋଲି ଅନ୍ନା ସର୍ବଦା ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଥିଲା । ସେହି ପତଳା ଲୋକଟି ପ୍ରତ୍ୟେକ ଦିନ ରାତିରେ ଆସୁଥିଲା ଏବଂ ଟଙ୍କା କିମ୍ବା ଚାଉଳ ଦେଇ ଚାଲିଯାଉଥିଲା । ଯେତେବେଳେ ସେଇ ପତଳା ଲୋକ ଆସୁଥିଲା ସେତେବେଳେ କେତେକ କଥା ପଚାରିବା ସକାଶେ ଅନ୍ନାର ମନରେ ପ୍ରଶ୍ନ ଉଠୁଥିଲା । କିନ୍ତୁ ସେ କିଛି ପଚାରି ପାରୁ ନଥିଲା ।

ଦିନେ ରାତିରେ ସେଇ ପତଳା ଲୋକଟି ସବୁଦିନପରି ଅଗଣାରେ ଆସି ଧିରେ ଧିରେ କାଶିଲା । ଅନ୍ନା ଡିବି ଲଗାଇ କବାଟ ଖୋଲି ବାହାରକୁ ଆସିଲା । ସେଇ ଲୋକ ଗୋଟିଏ ବ୍ୟାଗ ବାହାରେ ରଖିଲା । ବ୍ୟାଗରେ ଚାଉଳ ଏବଂ ଅନ୍ୟାନ୍ୟ ଜିନଷ ଥିଲା । ଅନ୍ନା ସଙ୍କୋଚର ସହିତ ପ୍ରଶ୍ନ କଲା -

'କେତେ ଦିନ ପର୍ଯ୍ୟନ୍ତ, ଏଭଳି ଚାଲିଥିବ !'

'କେବଳ ଆଜି ପର୍ଯ୍ୟନ୍ତ ।'

'କାହିଁକି ?'

'କାଲି ସେମାନେ ଆସିବେ ।'

'ଆସିବେ ? ମୋର ଦୁଇ ଭାଇ ଆସିବେ ?' - ସେ ଆନନ୍ଦର ସହିତ ପଚାରିଲା ।

'ସେମାନେ ଆସିବେ । ଦୁଇଭାଇ ଯାକ ଆସିବେ ।' ଅନ୍ନାର ଚେହେରା ମଳିନ ହୋଇ ଆସିଲା । ସେ ପଚାରିଲା -

'ଯଦି ସେମାନଙ୍କୁ ପୁଣି ଧରି ନେଇଯାଏ, ତାହେଲେ ?'

'ଯଦି ସେମାନଙ୍କୁ ପୁଣି ଧରି ନେଇଯାଏ, ତାହେଲେ ମୁଁ ପୁଣି ଆସିବି ।'

'ଦିନ - ପରେ - ଦିନ ଏଇ ଭଳି ଭାବରେ - - - - - - '

'ଏଭଳି ଭାବରେ ?'

'ଯଦି ଆସେ ତାହେଲେ - - - - - -'

'ଆସିଲେ କ'ଣ ହେବ ?'

'କ'ଣ ମୋର ନିଜ ଲୋକ ?'

'ମୁଁ କ'ଣ ଅନ୍ନାର କେହି ନୁହେଁ ?'

'ହଁ' - ସେ ମୁଣ୍ଡ ନୁଆଁଇଲା ।

'ଅନ୍ନା ।' - ସେ ଅନ୍ନାର ପାଖକୁ ଆସିଲା ।

'ହଁ ?' - ସେ ମୁହଁ ଉଠେଇଲା ।

ତାରାର ଉଜ୍ଜଳ ଆଲୋକରେ ଚାରିଚକ୍ଷୁ ମିଳିତ ହେଲା ।

ଏକ ନୀରବତା ! - ସେ ନୀରବତା ବାଚାଳ ଥିଲା । ସେ ଲୋକ ପଚାରିଲା - 'ମୁଁ ଯିବି ?'

'ଆସନ୍ତାକାଲି ଦୁଇଭାଇ କେତେବେଳ ସୁଦ୍ଧା ଆସିବେ ?'

'କାଲି ଯେ କୌଣସି ମୁହୂର୍ତ୍ତରେ ଆସି ପାରନ୍ତି ।'

'କ'ଣ ସେମାନଙ୍କ ସାଙ୍ଗରେ ଆସିବେ ?'

'କିଏ ? ମୁଁ ?'

'ହଁ ।'

'ନା, ଆସିବିନି ।'

'ତା ପରେ ଆସିବେ ?'

'ନାଁ ।'

ଏକ ନୀରବତା । ସେ ନୀରବତାକୁ ଭାଙ୍ଗିବାକୁ ସେ ପଚାରିଲା -

'ଅନ୍ନା !'

'ହଁ ?'

'ମୁଁ କ'ଣ ଯିବି ?'

କୌଣସି ଉତ୍ତର ନଥିଲା ।

ସେ ବୁଲି ଚାଲିଗଲା । ଗଳି ପର୍ଯ୍ୟନ୍ତ ଚାଲିଗଲା ପରେ ସେ ବୁଲି ଦେଖିଲା । ଅନ୍ନା ମଧ୍ୟ ତାର ଯିବା ପଥକୁ ଅନେଇ ରହିଥିଲା । ସେ କିଛି କହିବାକୁ ଚାହୁଁଥିଲା । କିନ୍ତୁ ସେ କିଛି କହିପାରିଲା ନାହିଁ । ଗଳିରେ ଚାଲିବାକୁ ଆରମ୍ଭ କଲା ।

ଜେଲରେ ରଖାଯାଇଥିବା ସମସ୍ତ ଲୋକଙ୍କୁ ଜାମିନରେ ଛାଡ ମିଳିଗଲା । ରକ୍ସିଙ୍କୁ ମଧ୍ୟ ଜାମିନ୍ ମିଳିଲା । ସନ୍ଧ୍ୟାରେ ପ୍ରତ୍ୟେକ ଲୋକ ନିଜ ନିଜର ଘର ଅଦାଲତରେ ହାଜର ହେଲେ ।

ଅନ୍ନା ଭାତ ଓ ତରକାରୀ ରାନ୍ଧି ତାର ଭାଇମାନଙ୍କୁ ଅପେକ୍ଷା କରି ରହିଥିଲା । ସେମାନଙ୍କୁ ଦେଖି ସେ ଚାପା କଣ୍ଠରେ କାନ୍ଦିବାକୁ ଲାଗିଲା । ରକ୍ସି ମଧ୍ୟ କାନ୍ଦିଲା । ଏଣ୍ଟୋନି ନିଶ୍ଚୁଳ ହୋଇ ଛିଡା ହୋଇଥିଲା ।

ଅନ୍ନା ଖାଇବା ସକାଶେ ଭାତ ବାଢିଲା । ଏଣ୍ଟୋନି ପଚାରିଲା -

'ଏ କୁଆଡୁ ଆସିଲା ?'

'ଏ ? ଏ ତ - - - - - -'

'କ'ଣ 'ପବନ' ଏହାକୁ ଆଣି ଦେଇଥିଲା ?'

ରକ୍ସି ପଚାରିଲା ।

'ହଁ ।'

'ତମେମାନେ ଏତେଦିନ ଚଳିଲ କେମିତି ?' - ଏଣ୍ଟୋନି ପଚାରିଲା ।

'ସେ ଆଣି ଦେଉଥିଲେ, ଏମିତି ଭାବରେ ଚଳିଗଲା ।'

'ତାହେଲେ ସେ ଗଲା କୁଆଡେ ?'

'ଗତକାଲି ରାତିରେ ଚାଉଳ ଏବଂ ଅନ୍ୟାନ୍ୟ ଜିନିଷ ଦେଇଗଲା ବେଳେ ସେ କହିଲେ ଯେ, ଆଜି ତମ ମାନଙ୍କର ଆସିବାର ଅଛି । ପୁଣି ସେ ସିଧା ଚାଲିଗଲେ ।'

ଏଣ୍ଟୋନି ଏହାପରେ ଆଉ କିଛି ପଚାରିଲା ନାହିଁ । ଖାଇ ସରିବାପରେ ରକ୍ସି ବାରଣ୍ଡାରେ ଚଟେଇ ବିଛେଇ ଶୋଇଗଲା । ଅନ୍ନା ଭିତରକୁ ଯାଇ କବାଟ ବନ୍ଦ କଲା । ଏଣ୍ଟୋନି ଅଗଣାରେ ଟହଲିବାକୁ ଲାଗିଲା ।

ମଣ୍ଡାଯ୍ନୀ ଏବଂ ସାଇମନ୍ ସନ୍ଧ୍ୟାପରେ ନିଜ ନିଜ ଘରେ ପହଞ୍ଚି ଥିଲେ । ସେମାନେ ଦେଖିଲେ ଯେ, ଘରର କବାଟ ବନ୍ଦ ଅଛି । ବାରଣ୍ଡାରେ ଝାଡୁ ଦେଇ ବେଶ ସଫା କରାଯାଇଥିଲା । ମଣ୍ଡାଯ୍ନୀ ପଚାରିଲା - 'ବାରଣ୍ଡାରେ ଏବଂ ଅଗଣାରେ କିଏ ଝାଡୁ ଦେଇ ସଫା କରିଛି ?'

'ଏ ହୁଏତ ଅନ୍ନା କରିଥିବ, ତା ନହେଲେ ବେଲାଯ୍ୟୁଧନର ମା କରିଥିବ ।'

ମଣ୍ଡାଯ୍ନୀ କବାଟରେ ବନ୍ଦ ହୋଇଥିବା ଦଉଡି ଖୋଲିଦେଲା । ଘରର ଭିତରେ ମାଟିର କିଛି ଆସବାବପତ୍ର, କଳସୀ, ବାପାଙ୍କର ଖଟ, ଚଟେଇ ଇତ୍ୟାଦି ସମସ୍ତ ଜିନିଷ ଥିଲା । କିନ୍ତୁ ଅନ୍ଧାର ଥିବାରୁ କିଛି ଜିନିଷ ଦେଖାଯାଉ ନଥିଲା ।

ଯେଉଁ ସ୍ଥାନରେ ପିତାଙ୍କର ମରଶରୀର ରଖାଯାଇଥିଲା ସେଇ ସ୍ଥାନରେ ବଡଭାଇ ଓ ସାନଭାଇ ଦୁଇଜଣଯାକ ମୁଣ୍ଡ ନୁଆଁଇଲେ । ସେମାନଙ୍କର ଆଖିରେ ଅଶ୍ରୁଧାର ବୋହି ଯାଉଥିଲା । ସେମାନେ ଈଶ୍ୱରଙ୍କୁ ପ୍ରାର୍ଥନା କରି କହିଲେ ଯେ, ତାଙ୍କ ପିତାଙ୍କ ମୁଖ ସ୍ୱର୍ଗରେ ଦେଖିବାକୁ ମିଳୁ ।

ସେମାନେ ଉଠିଲେ । ଆଖିରୁ ଅଶ୍ରୁ ପୋଛି ପକାଇଲେ । ବଡଭାଇ ସାନକୁ କହିଲା -

'ତମେ ପଡୋଶୀ ଘରକୁ ଯାଇ ନଡିଆକତାର ମଶାଲ ଜଳାଇ ଆଣ ।'

'ଦିଆସିଲି ଏବଂ ଡିବି ଭିତରେ ଅଛି' - ଅଗଣାରେ ଅନ୍ଧାରରେ ଥିବା ପତଳା ଲୋକଟି ସେ କଥା କହିଲା ।

'ସେ କିଏ ?' - ଦୁଇଭାଇ ଏକ ସାଙ୍ଗରେ ପ୍ରଶ୍ନ କଲେ ।

'ମୁଁ ।'

'କ'ଣ ପବନ ?' - ମଭାଯ୍ୱୀ ପଚାରିଲା ।

'ହଁ ।'

'ତୁମେ କ'ଣ ପ୍ରତ୍ୟେକ ଦିନ ଏଠାକୁ ଆସୁଥିଲ ?'

'ହଁ ।'

'ତୁମେ କ'ଣ ପ୍ରତ୍ୟେକ ଦିନ ଏଠାକୁ ଆସୁଥିଲ ?'

'ହଁ ।'

'ମଭାଯ୍ୱୀ କୋଠରୀ ଭିତରକୁ ଗଲା । 'ପବନ' ତାକୁ ଡାକି କହିଲା -

'ଦିଆସିଲି ଏବଂ ଡିବି ଖଟ ଉପରେ ଅଛି । ତା ପାଖରେ ଥିବା ଗୋଟିଏ ବ୍ୟାଗରେ ଚାଉଳ ଏବଂ ଅନ୍ୟାନ୍ୟ ଜିନିଷପତ୍ର ମଧ୍ୟ ଅଛି ।'

ଭିତରେ ଦିଆସିଲି ଜଳାଗଲା । ଚାରିଆଡେ ଆଲୋକିତ ହେଲା । ମଭାଯ୍ୱୀ ଦୀପ ନେଇ ବାହାରକୁ ଆସିଲା । ସେ ଅଗଣା ଚାରିପଟେ ଦେଖିଲା । ପଚାରିଲା –

'କୁଆଡେ ଗଲ ?'

ପବନ ଗଳିରୁ ରହି ଉତ୍ତର ଦେଲା -

'ପୁଣି ପରେ ଆସିବି ।'

## 22

**ଏମିତି କିଛି ଲୋକ ଅଛନ୍ତି, ଯେଉଁମାନେ ଯୁଦ୍ଧକ୍ଷେତ୍ରରେ ଭୀଷଣ ଗର୍ଜନ ତର୍ଜନ କରୁଥିଲେ ହେଁ ଏକାନ୍ତରେ ସେମାନେ ବସି କାନ୍ଦନ୍ତି । ଆହୁରି ଏମିତି କିଛି ଲୋକ ଅଛନ୍ତି ଯେଉଁମାନେ ସେମାନଙ୍କର ଛାତିରେ ଛୁରୀ**

ଚାଲିଗଲା ପରେ ମଧ୍ୟ ଚୁଁ କି ଚାଁ କରନ୍ତି ନାହିଁ । କିନ୍ତୁ ଅନ୍ୟର କଷ୍ଟ ଲାଘବ କରିବା ସକାଶେ ସେମାନେ ନିଜର ଜୀବନ ଦେବାକୁ ଆଦୌ ହେଳା କରନ୍ତି ନାହିଁ । କେତେ ବିପରୀତ ଧର୍ମୀ ଏ ଦୁଇଟି ଶ୍ରେଣୀର ଚରିତ୍ର !

ସ୍ନେହ ଏବଂ ଦ୍ୱେଷ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ ବୋଲି ଅନେକ ସମୟରେ କୁହାଯାଏ । ହୁଏତ ଠିକ୍ କଥା । ତା ନହେଲେ ସ୍ନେହ ଏବଂ ଦ୍ୱେଷ ମଧ୍ୟରେ ପାର୍ଥକ୍ୟ କରିବା ଅସାଧ୍ୟ ହୋଇଯିବ । ଏଇ ଦୁଇଟି ମଧ୍ୟରେ ବିଭାଜନର ରେଖା ଟାଣିବାକୁ ହୁଏତ ଆଜିଯାଏ କେହି ସଫଳ ହୋଇପାରିନାହାନ୍ତି ।

କିଛି ଲୋକଙ୍କର ସ୍ନେହ ଅନ୍ତର୍ମୁଖୀ ଥାଏ । ତାହାର ସ୍ନେହ ବ୍ୟକ୍ତିର ସଙ୍କୁଚିତ ପରିଧି ମଧ୍ୟରେ ବୁଝା ପଡେ । ଯେଉଁ ଯେଉଁ ଜିନିଷ ନିଜର ବ୍ୟକ୍ତିଗତ ସୁଖ ଏବଂ ରକ୍ଷାର ବିରୁଦ୍ଧରେ ପ୍ରତୀୟମାନ ହୁଏ, ସେ ସବୁଥିରେ ସେ ଦ୍ୱେଷ ମନୋଭବ ପୋଷଣ କରେ । ସେ ସବୁର ବିନାଶ କରିବା ସକାଶେ ଚିନ୍ତା କରେ ଏବଂ ଅନ୍ୟାୟ ମାଧ୍ୟମରେ ନିଜର କାର୍ଯ୍ୟ ହାସଲ କରିବା ସକାଶେ ମଧ୍ୟ ପ୍ରସ୍ତୁତ ହୋଇଯାଏ ।

ଏପରି ଆହୁରି କିଛି ଲୋକ ଅଛନ୍ତି ଯେଉଁମାନେ ସ୍ନେହର ସୀମାକୁ ଆହୁରି ବିସ୍ତୃତ କରିଛନ୍ତି । ଯେଉଁ ଯେଉଁ ସ୍ଥାନରେ ସ୍ନେହର ପାତ୍ର ଏବଂ ସ୍ନେହର ପ୍ରକୃତ ଅଧିକାରୀ ରହନ୍ତି ସେଇ ସ୍ଥାନମାନଙ୍କରେ ସେମାନଙ୍କର ସ୍ନେହ ପ୍ରକଟିତ ହୁଏ । ସେମାନଙ୍କ ସ୍ନେହର ଲକ୍ଷ୍ୟ ଏବଂ ଅର୍ଥ ହେଉଛି ଯେଉଁମାନେ ପରିଶ୍ରମ କରୁଛନ୍ତି ସେମାନଙ୍କର ଶ୍ରମ ଲାଘବ କରିବା ଏବଂ ପୀଡିତମାନଙ୍କୁ ଆଶ୍ୱାସନା ଦେବା । ଏଇ କାରଣରୁ ସେମାନେ ମିହନ୍ତ କରୁଥିବା ତଥା କଷ୍ଟ ଦେଉଥିବା ଲୋକମାନଙ୍କ ପ୍ରତି ଦ୍ୱେଷଭାବ ପୋଷଣ କରନ୍ତି । ସେଇ ଦ୍ୱେଷ କେବେ କେବେ ହିଂସା ଏବଂ ଅତ୍ୟାଚାରର ଉତ୍ତେଜନା ମଧ୍ୟ ସୃଷ୍ଟି କରିଥାଏ ।

ଭଲ ଏବଂ ମନ୍ଦ ଠାରୁ ଉପରେ ଯେଉଁମାନେ କେବଳ ମନୁଷ୍ୟତ୍ୱକୁ ହିଁ ଦେଖନ୍ତି, ସେପରି ଖୁବ୍ କମ ସଂଖ୍ୟକ ବ୍ୟକ୍ତି ଅଛନ୍ତି । ସେମାନେ ପ୍ରତ୍ୟେକ ମଣିଷ ଦେହରେ ଭଲ ଏବଂ ଖରାପ ଗୁଣ ଦେଖିଥାଆନ୍ତି । ପ୍ରତ୍ୟେକ ମନୁଷ୍ୟ ତଥା ସମାଜର ଭଲଗୁଣତକ ବଢାଇବା ଏବଂ ଖରାପ ଜିନିଷ କମାଇବାକୁ ମଧ୍ୟ ଚେଷ୍ଟା କରନ୍ତି । କିନ୍ତୁ ସେ କାର୍ଯ୍ୟ କରିବା ସକାଶେ ସେମାନେ ଠକେଇ ଏବଂ ଅନ୍ୟାୟର ଆଶ୍ରୟ ତଥା ସାହାଯ୍ୟ ନିଅନ୍ତି ନାହିଁ । ହଁ, ଅନ୍ୟାୟର ବିନାଶ ସକାଶେ ଚେଷ୍ଟା କରିବା ସମୟରେ ସେମାନେ ଆତ୍ମ ଉତ୍ସର୍ଗ କରିବାପାଇଁ କେବେହେଲେ କୁଣ୍ଠିତ ହୁଅନ୍ତି ନାହିଁ ।

ଏମାନଙ୍କ ମଧ୍ୟରେ ଶେଷ ଶ୍ରେଣୀର ଲୋକ ଥିଲା ଏଣ୍ଟୋନି । ରକ୍କି ଅନ୍ୟଶ୍ରେଣୀର ଲୋକ ଥିଲା । ରକ୍କି ମିସ୍ତ୍ରୀର ଘରେ ପଶି ବାଡେଇ ଥିଲା ଏବଂ ସାନମାଲିକଙ୍କୁ ପଥରମାରି ମଟର ସାଇକେଲରୁ ଖସାଇ ପକେଇଥିଲା । ଏସବୁ ଏଣ୍ଟୋନି ପସନ୍ଦ କରୁନଥିଲା । ଏଇଳି ଭାବରେ ସେଇ ପତଳା ଲୋକ, ଯେ ଶ୍ରମିକମାନଙ୍କ ମଧ୍ୟରେ ପବନ ବେଗରେ ପହଞ୍ଚି ବିପ୍ଳବ ସୃଷ୍ଟି କରିବା ସକାଶେ ଉତ୍ତେଜନା ସୃଷ୍ଟି କରୁଥିଲା, ଅନ୍ନାକୁ ଆସି ଏକାନ୍ତରେ ଦେଖାକରିବା ସଙ୍ଗେ ସଙ୍ଗେ ତାକୁ ପଇସା ଏବଂ ଚାଉଳ ଦେଉଥିଲା - ଏଇଳି କାର୍ଯ୍ୟ ତାର ପସନ୍ଦ ଥିଲା ।

ଅଗଣାରେ ଟହଲୁ ଟହଲୁ ସେ ହଠାତ୍ ବିଡି ବିଡି ହୋଇ କହିଲା ।

'ଏପ୍ରକାର ଚଳିବା ଠିକ୍ ନୁହେଁ । ଏଇଭଳି ଭାବରେ ଚାଲିଲେ - - - - - '

'ବଡ ଭାଇ, କ'ଣ ବିଡି ବିଡି ହୋଇ କହୁଛ ?' - ରକ୍କି ଚଟେଇରୁ ଉଠି ବସିଲା ।

'ମୁଁ କହୁଛି ଯେ, ଏ ଭଳି ଚଳିବା ଠିକ୍ ନୁହେଁ ।'

'କେଉଁଭଳି ଚଳିବା ?'

'ଘରେ ବସିଥିବା ଲୋକଙ୍କୁ ମାଡଦେବା ଏବଂ ରାସ୍ତାରେ ଚାଲୁଥିବା ଲୋକଙ୍କୁ ପଥର ମାରିବା ଇତ୍ୟାଦି ଯେଉଁ କାର୍ଯ୍ୟ ।'

'ଘରେ ନିଆଁ ଲଗାଇବାଟା କ'ଣ ଠିକ୍ କାର୍ଯ୍ୟ, ସେ କଥା ଦୟାକରି କହନ୍ତୁ ? ଆମକୁ ପୋଲିସବାଲା ହାତରେ ଧରାଇଦେବା କ'ଣ ଠିକ୍ କାର୍ଯ୍ୟ ?' - ରକ୍କି ଏ କଥା କହୁ କହୁ ଅଗଣାକୁ ଓହ୍ଲାଇ ପଡିଲା ।

'ତମେ ଏମିତି - ସେମିତି କଥାବାର୍ତ୍ତା ପଚାର ତ - - - - -'

'ତାହେଲେ କେମିତି ପଚାରିବି ?'

'ଘରେ ନିଆଁ ଲଗାଇବାର ପ୍ରତିଶୋଧ ଯଦି ମିସ୍ତ୍ରୀକୁ ମାଡ ଦେଇ ନିଆଯାଏ ତାହେଲେ ନିଆଁ କ'ଣ ଲିଭିଯି?'

'ନିଆଁ ଲଗାଇବା ଦେଖି ଯଦି ହାତ ଗୋଟେଇ ବସାଯାଏ ତାହେଲେ ନିଆଁ କ'ଣ ଲିଭିଯିବ ?'

'ରକ୍କି ତୁ ଏଆଡୁ ସେଆଡୁ ବାଜେକଥା କହନାହିଁ !'

'ତାହେଲେ ତମେ କ'ଣ କହୁଛ ?'

କବାଟ ଖୋଲି ଅନ୍ନା ବାହାରକୁ ଆସିଲା । ସେ ରକ୍କିକୁ ପଚାରିଲା -

'ସାନଭାଇ ମିସ୍ତ୍ରୀକୁ ବାଡେଇ ଥିବାରୁ ପୋଲିସବାଲା ବଡ ଭାଇକୁ ଧରି ନେଇଯାଇଥିଲେ । ଠିକ୍ ନା ?'

'ସେ - - - - ସେ ତ - - - - - ?' - ଏ ପ୍ରଶ୍ନର ଉତ୍ତର ନ ସରୁଣୁ ତାର ମୁହଁର ରଙ୍ଗ ଫିକା ପଡିଗଲା । ଏଣ୍ଟୋନି ଅନ୍ନାକୁ ଆକଟ କଲା -

'ତୁ ଚୁପ୍ ରହ । ଆମେ କଥାବାର୍ତ୍ତା କରିବୁଁ । ତୁ ଯାଇ ଶୋଇପଡ ।'

'ମୁଁ ତ କେବଳ ଏଇକଥା ପଚାରିଥିଲି । '

'ତୁ ଯାଇ ଶୋଇପଡ ।'

ଅନ୍ନା ଭିତରକୁ ଯାଇ କବାଟ ବନ୍ଦ କଲା । ଏଣ୍ଟୋନି ରକ୍କିକୁ ପଚାରିଲା -

'ଛୋଟ ମାଲିକଙ୍କୁ କିଏ ପଥର ମାରିଥିଲା ?'

'ସେ - - - - ସେ ତ - - - - - - '

'ମୁଁ ପଚାରୁଛି, ତୁ କ'ଣ ସେ କାମ କରିଥିଲୁ ?'

'ନା ।'

'ତାହେଲେ କିଏ ସେ କାମ କରିଥିଲା ?'

'ପବନ ! ତା ସହିତ ଆଉ କିଏ କିଏ ଥିଲେ ।'

'ସେ ନିଜେ ମରିବାକୁ ଏବଂ ମାରିବାକୁ ପ୍ରସ୍ତୁତ ଥିଲା ।'

'ତା ବଦଳରେ ଅନ୍ୟ ଯଦି କେହି ହୋଇଥାଆନ୍ତା ତା ହେଲେ - - - - - - '

'ସେ ନ ହୋଇ ଅନ୍ୟ କେହି ହୋଇଥିଲେ କ'ଣ ହୋଇଥାନ୍ତା ?'

'ତାହେଲେ ଆମ ଭଉଣୀକୁ ପୋଲିସବାଲା - - - - - '

'ପୁରା କହ ।'

'ତାକୁ ଡାକି ପଚାରି ନିଅ !'

'ଅନ୍ନା, ଏଠିକୁ ଆ !'

ଅନ୍ନା କବାଟ ଖୋଲି ବାହାରକୁ ଆସିଲା । ଏଣ୍ଟୋନି ପଚାରିଲା -

'କ'ଣ ପୋଲିସବାଲା ଏଠିକୁ ଆସିଥିଲେ ?'

'ହଁ ।'

'ଦିନରେ ନା ରାତିରେ ?'

'ରାତିରେ ।'

'ତାପରେ ?'

'ତାପରେ - - - - ଜଣେ ପୋଲିସବାଲା ମୋତେ ଧରିବାକୁ ଆସିଲା ।'

'କ'ଣ ଧରିନେଲା ?'

'ନା', ଧରି ପାରିଲା ନାହିଁ । ରକ୍ସି କୁଆଡେ ଯାଇଛି ବୋଲି ଜଣେ ପୋଲିସବାଲା ପଚାରୁ ପଚାରୁ ମୋ ପାଖକୁ ଆସିଲା ? ଯେତେବେଳେ ମୁଁ କହିଲି ଯେ, ସେ ଏଠାରେ ନାହିଁ, ସେତେବେଳେ ସେ ମୋତେ ଧରିବାକୁ ଆସିଲା । ଏତିକିବେଳେ ଜଣେ କିଏ ଗଳିରୁ ବାହାରି କହିଲା ଯେ, ମୁଁ ଏଠାରେ ଅଛି । ଏତିକି କହି ସେ ଦୌଡିବାକୁ ଆରମ୍ଭ କଲା । ପୋଲିସବାଲା ମଧ୍ୟ ତା ପଛେ ପଛେ ଦୌଡିଲେ ।'

'ଏ କଥା କହି କିଏ ଦୌଡିଥିଲା ? କ'ଣ ସେ ପବନ ?'

'ଆଜ୍ଞା, ହଁ ।'

'ବାସ, ତୁ ଯାଇ ଶୋଇପଡ ।'

ଅନ୍ନା ଭିତରକୁ ଯାଇ କବାଟ ବନ୍ଦ କଲା । ଏଣ୍ଟୋନି ଟହଲିବାକୁ ଲାଗିଲା ।

ରାତି ଅଧ ହୋଇଯାଇଥିଲା । ତଥାପି ଏଣ୍ଟୋନି ଟହଲୁ ଥିଲା । ପଡୋଶୀ ମାନେ ସମସ୍ତେ ଶୋଇ ପଡିଥିଲେ କେବଳ ରକ୍ସିର ଘୁଙ୍ଗୁଡି ହିଁ ଅର୍ଦ୍ଧରାତ୍ରିର ନୀରବତାକୁ ଭଙ୍ଗ କରୁଥିଲା ।

କୁଡିଆର କବାଟ ଖୋଲିଗଲା । ଅନ୍ନା ବାହାରକୁ ଆସି ଏଣ୍ଟୋନି ପାଖକୁ ଗଲା । ସେ ପଚାରିଲା -

'ବଡ ଭାଇ, ତମେ କ'ଣ ବର୍ତ୍ତମାନ ସୁଦ୍ଧା ଶୋଇନାହଁ ?'

ଏଣ୍ଟୋନି ନିଜ ଛାତି ଉପରେ ଦୁଇ ହାତ ଛନ୍ଦି ଛିଡା ହୋଇ ରହିଲା । ଅନ୍ନାର ମୁହଁକୁ ଅନେଇ ସେ ପଚାରିଲା ।

'କ'ଣ ସେ ପ୍ରତ୍ୟେକଦିନ ଏଠାକୁ ଆସୁଥିଲା ?'

'କିଏ ? ପବନ ?'

'ହଁ ।'

'କାଲି ରାତିରେ ସେ ଆସି ଗୋଟିଏ ବ୍ୟାଗରେ ଚାଉଳ ଏବଂ ଅନ୍ୟାନ୍ୟ ଜିନିଷପତ୍ର ଆଣି ରଖି ଚାଲିଯାଇଥିଲେ, ପୁଣି ବର୍ତ୍ତମାନ ପର୍ଯ୍ୟନ୍ତ ଆସି ନାହାନ୍ତି ।'

'ସେ କ'ଣ ତୋ ସହିତ କଥାବାର୍ତ୍ତା କରୁଥିଲା ?'

'କେବେ କେବେ ମୁଁ କିଛି ପଚାରୁଥିଲେ, ସେ ଉତ୍ତର ଦେଇ ଦେଉଥିଲେ । ନ ହେଲେ ଚାଉଳ ନ ହେଲେ ପଇସା ଦେଇ ସେ ସିଧା ଚାଲିଯାଉଥିଲେ ।'

ଏଣ୍ଡ୍ରୋନି ଆଉ କିଛି ପଚାରିଲା ନାହିଁ । ଅନ୍ନା ପଚାରିଲା -

'ବଡଭାଇ, ତମେ କାହିଁକି ତାଙ୍କ ବିଷୟରେ ପଚାରୁଥିଲ ? ସେ - - - - - - '

'ନା, ଏମିତି ଖାଲି ପଚାରୁଥିଲି । ଛାଡ ! ତୁ ଯାଇ ଶୋଇପଡ ।'

ଅନ୍ନା ଭିତରକୁ ଚାଲିଗଲା । ଏଣ୍ଡ୍ରୋନି ତଥାପି ଚହଲୁଥିଲା ।

## 23

ଆନ୍ଦୋଳନର କ୍ଷେତ୍ର ଶାନ୍ତ ହେଲା । କିନ୍ତୁ ସେଇ ଶାନ୍ତି ଅଧିକ ତେଜ ଏବଂ ଲମ୍ବା ଆନ୍ଦୋଳନର କ୍ଷେତ୍ର ପ୍ରସ୍ତୁତି କରିବାର ସୂଚନା ଦେଉଥିଲା ।

ଶ୍ରମିକ ସଂଗଠନ ଇସ୍ପାତର ଦୁର୍ଗପରି ଶକ୍ତ ହେବାକୁ ଲାଗିଲା । କାରଖାନା ରୂପୀ ଶତ୍ରୁ କେନ୍ଦ୍ରରେ ସେନାବାହିନୀ ଆକ୍ରମଣ ସକାଶେ ପ୍ରସ୍ତୁତ ହୋଇ ଛିଡା ହୋଇଥିଲେ । ଶ୍ରମିକମାନଙ୍କର ପ୍ରତିକୂଳ ହେଉଥିବା ପ୍ରତ୍ୟେକଟି ଶବ୍ଦ, ଦୃଷ୍ଟି, ଚାଲିଚଳଣ ପ୍ରତି ସତର୍କ ଦୃଷ୍ଟି ରଖାଯାଇଥିଲା । ପୁଞ୍ଜିପତି ଏବଂ ସେମାନଙ୍କର ଲୋକେ ଆକ୍ରମଣ ସ୍ଥାନରୁ ପଛକୁ ହଟିଯାଇ ଆତ୍ମରକ୍ଷା କରିବା ସକାଶେ ମଧ୍ୟ ବିବଶ ହୋଇ ପଡିଲେ ।

ଶ୍ରମିକମାନଙ୍କର ଆକ୍ରମଣର ଉଦ୍ଦେଶ୍ୟ ଏବଂ ଦାବୀର ଆମୂଳଚୂଳ ପରିବର୍ତ୍ତନ ହେଲା । ପ୍ରଥମେ ସେମାନଙ୍କର ଦାବୀ ଥିଲା, ଯେ ସେମାନଙ୍କୁ କମ୍ ମଜୁରୀ ମିଳିବା ଉଚିତ ନୁହେଁ । ପୁଞ୍ଜିପତିଙ୍କର ଇଚ୍ଛା ଅନୁସାରେ ସେମାନଙ୍କୁ ବରଖାସ୍ତ କରା ନଯାଉ । ସେମାନଙ୍କୁ ମାଡ ଦିଆ ନ ଯାଉ ତଥା ସେମାନଙ୍କର ସ୍ତ୍ରୀ ମାନଙ୍କର ସତୀତ୍ୱ ନିଆ ନ ଯାଉ । ବର୍ତ୍ତମାନ ସେମାନଙ୍କର ଦାବୀ ବଦଳିଗଲା । ବର୍ତ୍ତମାନ ସେମାନଙ୍କର ଦାବୀ ଥିଲା ଯେ, ମଜୁରୀ ବଢାଇ ଦିଆଯାଉ । କାମ କରିବାର ସୁବିଧାର ପରିମାଣ ମଧ୍ୟ ବଢାଇ ଦିଆଯାଉ । କାମର ସ୍ଥିରତା ହୋଇଯାଉ ଏବଂ ଶ୍ରମିକମାନଙ୍କ ପ୍ରତି ନ୍ୟାୟୋଚିତ ବ୍ୟବହାର କରାଯାଉ । ସେଇ ଦାବୀ ଏବଂ ଉଦ୍ଦେଶ୍ୟ ବ୍ୟତୀତ ବର୍ତ୍ତମାନ ଏକ ଉଦ୍ଦେଶ୍ୟର ମଧ୍ୟ ସୂତ୍ରପାତ ହେଲା । ବର୍ତ୍ତମାନ ସେମାନଙ୍କର ଶେଷ ଲକ୍ଷ୍ୟ ହେଉଛି, ଏପରି ଏକ ସାମାଜିକ ବ୍ୟବସ୍ଥା ପ୍ରତିଷ୍ଠିତ ହେଉ, ଯେଉଁଥିରେ ଉଚ୍ଚ - ନୀଚର ଭେଦଭାବ ନରହୁ, ଦମନ ଏବଂ ଶୋଷଣ ନରହୁ, ଏବଂ ସେହି ସମାଜ, ସମତା ତଥା ସମୃଦ୍ଧି ଉପରେ ଆଧାରିତ ହେଉ । ମଜୁରୀ ବୃଦ୍ଧି ତଥା, କାମ ମିଳିବାର ଆନ୍ଦୋଳନ

ବର୍ତ୍ତମାନ ବାକି ଆନ୍ଦୋଳନର ଏକମାତ୍ର ଅଙ୍ଗ ହେଲା ।

ଏଣ୍ଟୋନି, ମଖାସ୍ୱୀ, ପଦ୍ମନାଭନ୍, ଅଚ୍ଯୁତନ, ଯୋଶେଫ୍ ଆଦି ବ୍ୟକ୍ତି ଶ୍ରମିକମାନଙ୍କର ନେତା ହେଲେ ଏବଂ ସେମାନେ ଶ୍ରମିକ ସଂଗଠନର ଶକ୍ତିଶାଳୀ କାର୍ଯ୍ୟକର୍ତ୍ତା ମଧ୍ୟ ହେଲେ ।

ସାଧାରଣ ଜନସଭା, ଆଲୋଚନାଚକ୍ର, ଗୁପ୍ତ ସଭା ! ଭାଷଣ, ଭାଷଣ ! ଦାସତ୍ୱ ଏବଂ ଅଭାବ ଅସୁବିଧାର ଗହ୍ୱର ମଧ୍ୟରୁ । କେମିତି କେଜାଣି କେଉଁ ଶକ୍ତିର କାରଣରୁ ଶ୍ରମିକଶ୍ରେଣୀ କ୍ରମଶଃ ଉପରକୁ ଉଠୁଥିଲେ । ସେମାନେ ଅନ୍ଧକାରରୁ ଆଲୁଅକୁ ଆସୁଥିଲେ । ଅକିଞ୍ଚନତାରୁ ସମୃଦ୍ଧି ଆଡକୁ ଆସିବାର ଶୋଭାଯାତ୍ରାରେ ଯୋଗ ଦେଇଥିଲେ । ଶତାବ୍ଦୀର ବିଶ୍ୱ ଇତିହାସରେ ଏକ ମହତ୍ତ୍ୱପୂର୍ଣ୍ଣ ଘଟଣାର ଏକ ନୂତନ ଅଧ୍ୟାୟ ଲେଖା ଯାଉଥିଲା । ଆଲପୁଝା ସହରର ଶ୍ରମିକମାନେ ସେଇ ନୂଆ ଐତିହାସିକ ନାଟକର କିଛିମାତ୍ର ଅଭିନେତା ଥିଲେ ।

'ପବନ' କୁହାଯାଉଥିବା ସେଇ ପତଳା ଲୋକର ସ୍ୱର କ୍ରମଶଃ ଉଚ୍ଚ ହୋଇ ଉଠୁଥିଲା । ଚା ଦୋକାନ, ଚଉତରା, ଚଟ୍ଟାମଣ୍ଡଳ, ଏବଂ ଗୁପ୍ତ ସଭା - ସବୁଠାରେ ତାର ଭାଷଣ ଓ କଥାମାନ ଗୁଞ୍ଜରି ଉଠୁଥିଲା । ପ୍ରତ୍ୟେକ ଶ୍ରମିକର କଣ୍ଠରେ ସେ ପବନର ରଣ ହୁଙ୍କାର ପ୍ରତିଧ୍ୱନିତ ହେଉଥିଲା -

'ଆମର ନଷ୍ଟ ହେବାର କିଛି ନାହିଁ । ବରଂ ଏକ ନୂତନ ସଂସାର ପାଇବାର ଓ ଗଠନ କରିବାର ଅଛି ।'

କେବଳ ଗୋଟିଏ କଣ୍ଠରୁ ବାହାରିବାର ଶବ୍ଦ - ଏଣ୍ଟୋନିର ଶବ୍ଦ - ସେଇ ହୁଙ୍କାରରୁ ଅଲଗା ଥିଲା । ତାର ସ୍ଲୋଗାନ୍ ଅନ୍ୟମାନଙ୍କଠାରୁ ତ ଅଲଗା ଥିଲା । ଶୋକାପ୍ଲୁତ ହୋଇ ତଥା ନିଜକୁ ସମ୍ଭାଳି ନେଇ ସେ ନିଜକୁ ଯେପରି ଚଳାଇଥିଲା ତାହା ବେଶ ହୃଦୟସ୍ପର୍ଶୀ ଥିଲା । ଶ୍ରମିକମାନଙ୍କର ଦୁଃଖ କଷ୍ଟକୁ ସେ ନିଜର ଗାଉଁଲୀ ଭାଷାରେ ବର୍ଣ୍ଣନା କଲାପରେ ଏଣ୍ଟୋନି ସେଇ ବିରାଟ ଜନ ସମୁଦ୍ରର ସଦସ୍ୟ ମାନଙ୍କୁ ପ୍ରଶ୍ନ କରୁଥିଲା ଯେ-

'ଆମ୍ଭେମାନେ କ'ଣ ମନୁଷ୍ୟ ? ମୁଁ ପଚାରୁଛି, ଆମ୍ଭେମାନେ କ'ଣ ମନୁଷ୍ୟ ? ଯଦି ଆମ୍ଭେମାନେ - - - -' ବାକ୍ୟ ପୁରା ନକରି ସେ କହୁଥିଲା -

'ତିଳ ତିଳ୍ ହୋଇ ମରିବା ଅପେକ୍ଷା ଆମେ ସମସ୍ତେ ଏକ ସାଙ୍ଗରେ ମରିବା ଉଚିତ ।'

ସଭାର ଗୋଟିଏ କୋଣରେ ବସିରହିଥିବା ରଙ୍କି ବିଡି ବିଡି ହୋଇ କହୁଥିଲା -

'ମରିବା କାହିଁକି ? ମରିବା ଅପେକ୍ଷା ମାରିବା ଅଧିକ ଭଲ ।'

ଏହା ସେଇ 'ପବନ'ର ଶବ୍ଦର ପ୍ରତିଧ୍ୱନି ଥିଲା ।

ଏଣ୍ଟୋନିର ଘର ଗୁପ୍ତ ସଭାର କେନ୍ଦ୍ର ହୋଇଗଲା । ସନ୍ଧ୍ୟାପରଠାରୁ ଅର୍ଦ୍ଧରାତି ପର୍ଯ୍ୟନ୍ତ ସେଇ କୁଡିଆରେ ଆଲୁଅ ଦେଖା ଯାଉଥିଲା ଓ କଥାବାର୍ତ୍ତା ମଧ୍ୟ ଶୁଣା ଯାଉଥିଲା । ମଖାସ୍ୱୀ, ସାଇମନ୍, ପଦ୍ମନାଭନ୍, ଅଚ୍ଯୁତନ, ଶଙ୍କୁ, ଯୋଶେଫ୍, ଏଣ୍ଟୋନି, ରଙ୍କି ଆଦି ସମସ୍ତେ ସେଇ ଗୁପ୍ତ ସଭାରେ ଭାଗ ନେଉଥିଲେ । ସେଇ ପତଳା ଲୋକର ନିୟନ୍ତ୍ରିତ ତଥା ସ୍ୱଳ୍ପ ଭାଷଣ ସେଇ ସଭାମାନଙ୍କରେ ଗୁଞ୍ଜରି ଉଠୁଥିଲା ।

ସେଇ ଲୋକମାନଙ୍କୁ 'କଳାକଫି' ତିଆରି କରିଦେବା, ବିଡି ପାନ ଦେବା, ଡିବିରେ ତେଲ ସରିଗଲେ ସେଥିରେ ପୁଣି ତେଲ ଦେବା ଇତ୍ୟାଦି ବିଭିନ୍ନ କାର୍ଯ୍ୟ କରୁଥିଲା ଅନ୍ନା ।

ସେଇ ଗୁପ୍ତ ସଭାକୁ ଆଉ ଦୁଇ ତିନି ଜଣ ଆସିବାକୁ ଆରମ୍ଭ କରିଥିଲେ । ଅନ୍ନା ସେମାନଙ୍କୁ ଜାଣି ନଥିଲା ।

ସେମାନଙ୍କୁ ସେ କେବେହେଲେ ଦେଖି ମଧ୍ୟ ନଥିଲା । ଯଦିଓ ସେମାନେ ମଇଳା ଲୁଗାପଟା ପିନ୍ଧିଥିଲେ ତଥାପି, ଭଲଭାବେ ଦୃଷ୍ଟିଦେଲେ ଜଣା ପଡୁଥିଲା, ଯେ ସେମାନେ କେବେହେଲେ ଶ୍ରମିକ ନଥିଲେ । ସେମାନଙ୍କ ମଧ୍ୟରୁ ଜଣେ ସୁନ୍ଦର ବ୍ୟକ୍ତି ସେଇ ଗୁପ୍ତ ସଭାରେ ଭାଷଣ ମଧ୍ୟ ଦେବାକୁ ଆରମ୍ଭ କଲା । ସେ ନିଜର ସଭ୍ୟ, ସୁସ୍ପଷ୍ଟ, ତଥା ସୁଦୃଢ଼ ଭାଷ୍ୟରେ ବ୍ୟକ୍ତ କରିଥିଲା, ଯେ ଶ୍ରମିକମାନଙ୍କର ଅନ୍ତିମ ଲକ୍ଷ୍ୟ କ'ଣ ହେବା ଦରକାର । ସେ କାର୍ଲ ମାର୍କସ୍, ଲେନିନ୍, ଏବଂ ରୁଷ ବିପ୍ଳବ ସମ୍ବନ୍ଧରେ ଲମ୍ବା ଚୌଡ଼ା ଭାଷଣ ଦେଉଥିଲା ।

ସେଇ ହର୍ଷମୁଖର ଯୁବକଜଣକ ରୁଷରେ ଲେନିନ୍ ବିପ୍ଳବର ସୃଷ୍ଟିକର୍ତ୍ତାବୋଲି କହିବା ସଙ୍ଗେ ସଙ୍ଗେ ଶ୍ରମିକମାନେ ପୁଞ୍ଜିପତିମାନଙ୍କ ବିରୁଦ୍ଧରେ ବିପ୍ଳବପାଇଁ କିଭଳି ଶକ୍ତି ଠୁଳ କରିଥିଲେ, ତଥା କାମ ମିଳିବାର ସୁବିଧା ଆନ୍ଦୋଳନ କିପରି ସାମୁହିକ ରାଷ୍ଟ୍ରୀୟ ବିପ୍ଳବରେ ପରିଣତ କରିଥିଲେ, ସେ ବିଷୟରେ ମଧ୍ୟ ଭାଷଣ ଦେଇଥିଲା । ତାର ପ୍ରତ୍ୟେକଟି ଶବ୍ଦ, ଗୋଟିଏ ଗୋଟିଏ ଦୃଷ୍ଟି, ଗୋଟିଏ ଗୋଟିଏ ସ୍ପନ୍ଦନ – ସବୁଥିରେ ବିପ୍ଳବର ଅଗ୍ନିଜ୍ୱାଳା ଜଳୁଥିଲା । ସେ ନାଟକୀୟ ଢଙ୍ଗରେ କହୁଥିଲା -

'ସମତା ସ୍ଥାପନ କରିବା ସକାଶେ, ଭ୍ରାତୃଭାବ ସୃଷ୍ଟି କରିବା ସକାଶେ ଓ ପ୍ରେମ ସକାଶେ, ଆମକୁ ମାରିବାକୁ ପଡିବ, ରକ୍ତର ନଦୀ ବୁହାଇବାକୁ ପଡିବ ଏବଂ ରକ୍ତର ନଦୀରେ ଚିତା ଲଗାଇବାକୁ ପଡିବ ।'

'ସେ କେମିତି ?' – ଏଣ୍ଟୋନି ଅଜାଣତରେ ପଚାରି ପକାଉଥିଲା । ତାର ମୁର୍ଦ୍ଧରେ ଶବ୍ଦର ଧାରା ଫୁଟି ପଡୁଥିଲା ।

'ମାରିବା କେବେ ଭଲ ପାଇବାରେ ପରିଣତ ହୋଇପାରେ ? ମାରିବାରେ କିଭଳି ସମତା ସ୍ଥାପନ ହୋଇପାରେ' - ରକ୍କି ମଝିରେ କହି ଉଠିଲା ।

'କେମିିତି ? - - - - ଏହାର ଉତ୍ତର ହେଉଛି, ଏବଂ ଏହାର ଉଦ୍ଦେଶ୍ୟ ହେଉଛି, ଭଲ ନ ପାଇବା ଲୋକଙ୍କୁ ମାରିପକାଇବା ଦରକାର । ସେମାନେ ଏକଥା କହିଛନ୍ତି ।'

'ସେମାନଙ୍କୁ ମାରିବା ପରେ - - - ?'

'ମାରିବା ପରେ ଆମେ ରାଜତ୍ୱ କରିବା ।'

'ମୁଁ ପଚାରୁଛି ଯେ, ସେମାନଙ୍କୁ ନ ମାରି, ଏବଂ ରକ୍ତର ନଦୀ ନ ବୁହାଇଲେ କ'ଣ ଏ କାର୍ଯ୍ୟ ସମ୍ଭବ ହେବନାହିଁ ?'

ପଦ୍ମନାଭନ୍ ସେ ପ୍ରଶ୍ନର ଉତ୍ତର ଦେଉଥିଲା –

'ସମ୍ଭବ ନୁହେଁ - କାରଣ - - - - - -'

ରକ୍କି ଅସହିଷ୍ଣୁ ହୋଇ କହି ପକାଉଥିଲା -

'ଯେଉଁ ସାପ ଫଣା ଟେକି ଚୋଟ ମାରିବାକୁ ଆସୁଛି ତାକୁ ଚୁମ୍ବନ କରିବା ଉଚିତ ବୋଲି ବଡଭାଇ କହୁଛନ୍ତି ।'

ଏଣ୍ଟୋନି ଏହାପରେ ଆଉ କିଛି କହୁ ନଥିଲା ।

## 24

ଅନ୍ନା ପୂର୍ଣ୍ଣ ସନ୍ତୁଷ୍ଟ ଥିଲା । ତାର ଦୁଇଭାଇ ବର୍ତ୍ତମାନ ଜେଲରେ କିମ୍ବା ଗୁପ୍ତ ସ୍ଥାନରେ ନଥିଲେ । ସେମାନେ ପ୍ରତ୍ୟେକ ଦିନ ଘରକୁ ଆସୁଥିଲେ । ଘର ଖର୍ଚ୍ଚ ମଧ୍ୟ ବହନ କରୁଥିଲେ । [illegible] ଛଡା ସେମାନେ ଘରେ ଶୋଉ ଥିଲେ । ଏ ସବୁଥିରେ ତାର ସନ୍ତୋଷ ଥିଲା । ବର୍ତ୍ତମାନ ଘରେ ନିର୍ଭୟରେ ସେ ଯେ ଶୋଇ ପାରୁଥିଲା ଏ ଥିଲା ତା ପାଇଁ ସବୁଠାରୁ ବଡ ସନ୍ତୋଷର କାରଣ ।

ସେ ପ୍ରତ୍ୟେକଦିନ ଭର୍ଜିନ୍ ମେରୀ (କୁମାରୀ ମେରୀ)ଙ୍କ ମୂର୍ତ୍ତି ସାମନାରେ ବସି ପ୍ରାର୍ଥନା କରୁଥିଲା - ନିଜ ପିତା ଏବଂ ମାତାଙ୍କ ଚିର ଶାନ୍ତି ସକାଶେ । ତା ଛଡା ତାର ଦୁଇଭାଇଙ୍କୁ ସବୁପ୍ରକାର ବିପଦରୁ ରକ୍ଷା କରିବା ସକାଶେ ସେ ଦେବ କନ୍ୟା ମେରୀଙ୍କୁ ପ୍ରାର୍ଥନା କରୁଥିଲା ।

ଏଣ୍ଟୋନି ଏବଂ ରର୍କ୍କି କ'ଣ କରୁଛନ୍ତି ସେଥିପ୍ରତି ସେ ଆଦୌ ଧ୍ୟାନ ଦେଉ ନଥିଲା । ସେଥିପାଇଁ ତାର ଆଗ୍ରହ ମଧ୍ୟ ନଥିଲା । ସେମାନେ ତାକୁ ଭଲ ପାଆନ୍ତୁ ଏବଂ ସେ ମଧ୍ୟ ସେମାନଙ୍କୁ ଭଲ ପାଉ - କେବଳ ସେ ଏତିକି ମାତ୍ର ଚାହୁଁଥିଲା । ବିତି ଯାଇଥିବା ଘଟଣା ଗୁଡିକୁ ମନେ ପକାଇ ସେ ପ୍ରାର୍ଥନା କରୁଥିଲା –

'ହେ ସର୍ବଗୁଣ ସମ୍ପନ୍ନା ମେରୀ, ମୋର ଭାଇମାନଙ୍କୁ ସବୁ ପ୍ରକାର ବିପତ୍ତିରୁ ବଞ୍ଚାଇ ନିଅ ।'

ରାତିରେ ଗୁପ୍ତ ସଭା ଶେଷ ହେବା ପରେ, ଏଣ୍ଟୋନି ଏବଂ ରର୍କ୍କିକୁ ଖାଇବାକୁ ଦେବା ପରେ ହିଁ ସେ କିଛି ଖାଉଥିଲା । ଏଣ୍ଟୋନି ଏବଂ ରର୍କ୍କି ବାରଣ୍ଡାରେ ଚଟାଇ ବିଛାଇ ଶୋଉଥିଲେ । ସେ ଘରେ ଶୋଉଥିଲା । କେବେ କେବେ ସେ ଦ୍ୱାର ପାଖରେ ଲୁଚି ଗୁପ୍ତ ସଭାରେ ହେଉଥିବା ଭାଷଣ ଶୁଣି ନେଉଥିଲା । ସେ କିଛି ବୁଝି ପାରୁ ନଥିଲା । ତଥାପି ସେ ସେଇ ପତଳା ଲୋକଟିର ଭାଷଣ ବଡ ଧ୍ୟାନ ସହକାରେ ଶୁଣୁଥିଲା । କାରଣ ସେଇ ପତଳା ଲୋକଟି ତାକୁ ଏବଂ ତାର ମାତାଙ୍କୁ ପଇସା ଦେଉଥିଲା, ତାକୁ ଚାଉଳ ଏବଂ ଅନ୍ୟାନ୍ୟ ଆନୁସଙ୍ଗିକ ଜିନିଷପତ୍ର ମଧ୍ୟ ଦେଉଥିଲା । ତାକୁ ସେ ତାର ଏକାକୀତ୍ୱରୁ ରକ୍ଷା କରିବା ସଙ୍ଗେ ସଙ୍ଗେ ପୋଲିସର ଅତ୍ୟାଚାରରୁ ବଡ କୁଶଳତାର ସହିତ ତାର ସତୀତ୍ୱ ରକ୍ଷା କରିଥିଲା । ସେ ନିଶ୍ଚଳ ଭାବରେ ବସି ରହି ସେଇ ଲୋକର ମୁଖ ନିସୃତ ପ୍ରତ୍ୟେକଟି ଶବ୍ଦର ଅର୍ଥ ବାହାର କରିବାକୁ ଚେଷ୍ଟା କରୁଥିଲା । କିନ୍ତୁ ବିଶେଷ କିଛି ବୁଝି ପାରୁ ନଥିଲା । ସେ କେମିତି ତଥାପି ତାକୁ ଦେଖି ବସି ରହୁଥିଲା । ସେ ଭାଷଣ ଶୁଣିବା ତା ପାଇଁ ଏକ ଆନନ୍ଦ ଦାୟକ କାର୍ଯ୍ୟ ଥିଲା ।

ଦିନେ ରାତିରେ ଅନ୍ନା ରୋଷେଇ ଘରେ 'କଳା କଫି' ତିଆରି କରୁଥିଲା । ବାହାରେ ସେଇ ସୁନ୍ଦର ଯୁବକ ଜଣକ ଭାଷଣ ଦେଉଥିଲେ । ଶେଷରେ ସେ ନିଜର ମନ୍ତ୍ର ଦୋହରାଉ ଥିଲେ -

'ମାରିବାକୁ ପଡିବ, ରକ୍ତ ବୁହାଇବାକୁ ପଡିବ, ଏବଂ ରକ୍ତର ନଦୀରେ ଡେଇଁବାକୁ ପଡିବ ।'

ଅନ୍ନା ଚମକି ପଡିଲା । ସେ ପ୍ରଥମେ ଏଇ କଥା ଶୁଣିଥିଲା । ସେ ସେଠାରୁ ଉଠି ଚାଲିଗଲା । ପୁଣି ସେ ଦ୍ୱାର

ପାଖରେ ଲୁଚି ସେ ବିପ୍ଳବୀ ଯୁବକର ମୁହଁକୁ ଥରେ ଦେଖିଲା - ଯୁବକର ଆଖିରେ ଅଗ୍ନି ବର୍ଷା ହେଉଥିଲା, ସେ ପୁଣି ସେଇ ପତଳା ଲୋକଟିକୁ ଦେଖିଲା - ସେ ଆଖି ବନ୍ଦକରି ନିଜର ଚିନ୍ତା ରାଜ୍ୟରେ ବୁଡି ଯାଇଥିଲା । ସେ ପୁଣି ଆଉଥରେ ରକ୍କିକୁ ଦେଖିଲା - ସେ ଆଖି ଖୋଲି ଏବଂ ଦାନ୍ତ ଚୋବାଇ ବସିଥିଲା । ସେ ଡରିଗଲା । ସମସ୍ତଙ୍କ ମୁହଁରେ କ୍ରୂରତା ଫୁଟି ଉଠୁଥିଲା । କେବଳ ଏଣ୍ଟୋନି ମୁଣ୍ଡ ନୁଆଁଇ ବସିଥିଲା ଏବଂ ନିଜ ଆଙ୍ଗୁଳି ସାହାଯ୍ୟରେ ଚଟାଣରେ କିଛି ଲେଖୁଥିଲା ।

କିଛି ସମୟ ପାଇଁ ସଭାସ୍ଥଳ ନୀରବ ହୋଇଗଲା । ହଠାତ୍ ଏଣ୍ଟୋନି ମୁଣ୍ଡ ଉଠାଇ କିଛି ପ୍ରଶ୍ନକଲା -

'କ'ଣ ମାରିବା ଦରକାର ?'

ପଦ୍ମନାଭନ୍ ଉତ୍ତର ଦେଲା-

'କହିବାର ତାତ୍ପର୍ଯ୍ୟ ଏହି, ଯେ ଦରକାର ପଡିଲେ ହୁଏତ ମାରିବାକୁ ପଡିପାରେ ।'

'ଦରକାର କାହିଁକି ପଡେ ?'

'ଦରକାର ? - - - - ଯେତେବେଳେ ଏମିତି ସମୟ ଆସେ, ସେତେବେଳେ ବିନା ମାରିବାରେ କାମ ଚଳେ ନାହିଁ, ସେ କ୍ଷେତ୍ରରେ ମାରିବା ଉଚିତ ।'

'ମୁଁ ପଚାରୁଛି, ଯେ କାହିଁକି ମାରିବା ଦରକାର ?'

'ବର୍ତ୍ତମାନ ଯୁଦ୍ଧ କୁହାଯାଇଥିବା କଥା କ'ଣ ତମେ ଶୁଣିନାହିଁ ?'

'ହଁ, ଶୁଣିଛି । ଏଇଥିପାଇଁ ପଚାରୁଛି । ଶେଷରେ କେମିତି ଭାବରେ ମାରିବା ଦରକାର ?'

ରକ୍କି ଅସହିଷ୍ଣୁ ହୋଇ ଉଠି ଛିଡା ହେଲା । ସେ ଏଣ୍ଟୋନିକୁ ଅଙ୍ଗୁଳି ଦେଖାଇ ଗର୍ଜି ଉଠି କହିଲା -

'ଯେ ଏଭଳି ପ୍ରଶ୍ନ କରୁଛି, ସେଭଳି ଲୋକକୁ ମାରିବା ଦରକାର ।'

ସଭା ସ୍ତବ୍ଧ ହୋଇଗଲା । ଦ୍ୱାର ସେପଟେ ଲୁଚି ରହିଥିବା ଅନ୍ନା ସାମନାକୁ ଆସିଗଲା । ତାକୁ ଭୂତ ଲାଗିଥିବା ପରି ସେ କମ୍ପି କମ୍ପି ରକ୍କିକୁ ପଚାରିଲା -

'କାହାକୁ ? - - - - କାହାକୁ ମାରିବା ଉଚିତ ?

କୁହ, ସାନଭାଇ, କାହାକୁ ମାରିବା ଉଚିତ ?'

'ରକ୍କିର ମୁଣ୍ଡ ନଇଁଗଲା । ଏଣ୍ଟୋନି ଉଠି ଅନ୍ନାର ପାଖକୁ ଗଲା । ସେ ଶାନ୍ତହୋଇ ସ୍ନେହ ମିଶ୍ରିତ ଗଳାରେ କହିଲା -

'ତୁ ଭିତରକୁ ଚାଲି ଯା, ଛୋଟ ପିଲା ! ସେ ସେମିତି ମଜା କରୁଥିଲା ।'

ଅନ୍ନାର ଆଖି ବଡ ବଡ ହୋଇଗଲା । ସେ ଗଦ୍‌ଗଦ୍ ହୋଇ ପଚାରିଲା -

'କ'ଣ ତମେମାନେ ମାରିବାକୁ ଏବଂ ଅନ୍ୟକୁ ମରେଇବାକୁ ପ୍ରତ୍ୟେକଦିନ ଏଠାକୁ ଆସୁଛ ?'

ଏଣ୍ଟୋନି ଅନ୍ନାକୁ ଆକଟ କଲା -

'ତୁ କାହିଁକି ଏଠାକୁ ଆସିଲୁ ? ତୋତେ କ'ଣ କେହି ଡାକିଥିଲା ? ଯା, ଭିତରକୁ ଯା !'

ଅନ୍ନା ରୋଷେଇ ଘର ଭିତରକୁ ଗଲା । ସଭା ନିଶ୍ଚଳ ଏବଂ ନିସ୍ତବ୍ଧ ଥିଲା । ରକ୍କି ମୁଣ୍ଡ ନୁଆଁଇ ବସିଥିଲା ।

ପତଳା ଲୋକଟି ଆସ୍ତେ ଆସ୍ତେ ଉଠିଲା । ସେ ଶାନ୍ତ ଭାବରେ କହିଲା -

'ବନ୍ଧୁଗଣ, ଆମ୍ଭେମାନେ ଯିବା । ଏହାପରେ ଭବିଷ୍ୟତରେ ସଭା ଆଉ ଏଠି ହେବ ନାହିଁ ।'

ସେ ଚାଲିଗଲା । । ସମସ୍ତେ ତା ପଛେ ପଛେ ଚାଲିଲେ । ଏଣ୍ଡ୍ରୋନି ଅଗଣା ଉପରକୁ ଓହ୍ଲାଇ ଆସି ଛାତି ଉପରେ ହାତ ରଖି ଟହଲିବାକୁ ଲାଗିଲା ।

ଅଧରାତି ହୋଇଗଲା । ରକ୍ସି ବାରଣ୍ଡାରେ ଚିତ୍ ହୋଇ ଶୋଇଥିଲା । ଏଣ୍ଡ୍ରୋନି ଏବେ ମଧ୍ୟ ଟହଲୁଥିଲା । ଅନ୍ନା ହାତରେ ଡିବି ନେଇ ଅଗଣାକୁ ଆସିଲା । ସେ ଧିରେ ଧିରେ ଏଣ୍ଡ୍ରୋନି ପାଖରେ ଯାଇ ପହଞ୍ଚିଲା ।

'ବଡ ଭାଇ !'

'ହଁ ?'

'କାଞ୍ଜି ପିଇବ ତ ?'

'ତୁ କ'ଣ ଖାଇ ସାରିଛୁ ?'

'ନାଁ ।'

'ତାକୁ ଡାକି କାଞ୍ଜି ଖୁଆ । ତାପରେ ତୁ ମଧ୍ୟ ଖାଇନେ ।'

'ଆଉ ତୁମେ ?'

'ମୋତେ ଭୋକ ଲାଗୁ ନାହିଁ ?'

'ଭୋକ କାହିଁକି ଲାଗୁ ନାହିଁ ।'

'ସାନ ଭଉଣୀଟା ପରା, ତୁ ଏ ସବୁ କଥା ପଚାରନି । ତୁ ତାକୁ ଡାକି ଖାଇବାକୁ ଦେ, ଏବଂ ନିଜେ ମଧ୍ୟ ଖାଇନେ, ବାସ୍ ।'

'ବଡଭାଇ, ମୁଁ ସେତେବେଳେ ଯାହା କହିଲି, ସେ ସବୁ କ'ଣ ଭୁଲ ଥିଲା ?' - ଅନ୍ନାର ଗଳା ରୁନ୍ଧି ହୋଇଗଲା । ସେ କାନ୍ଦି କାନ୍ଦି କହିଲା - 'ଯଦି ଏହା ମୋର ଭୁଲ ଥିଲା, ତାହେଲେ ମୁଁ ତାଙ୍କର ଗୋଡ ଧରି କ୍ଷମା ମାଗିବା ପାଇଁ ପ୍ରସ୍ତୁତ ଅଛି ।'

ଏଣ୍ଡ୍ରୋନି ତାର କାନ୍ଧରେ ହାତ ଥାପି ଆଶ୍ୱାସନା ଦେଲା -

'ତୁ କିଛି ଭୁଲ କହି ନଥିଲୁ । ଯାହା କହିବାର ଥିଲା, ଠିକ୍ ତାହାହିଁ କହିଛୁ ।'

'ଭୁଲ ତ କହିଛି ମୁଁ ନିଜେ' - ଏ କଥା କହି ରକ୍ସି ଅଗଣା ଉପରକୁ ଚାଲି ଆସିଲା । ଢେପ ଢୋକି ଗଦ୍‌ଗଦ୍ ସ୍ୱରରେ ସେ କହିଲା -

'ମୁଁ ତ କହିଥିଲି ମୋର ଭାଇକୁ ମାରିବା ଦରକାର । ଭୁଲ ମୋ ପାଟିରୁ ହିଁ ବାହାରିଥିଲା । ବଡଭାଇ, କ୍ଷମା କରିଦିଅ ।'

'ଉଠ ! - - - - - ଉଠ ଭାଇ, ଉଠ !' - ଏଣ୍ଡ୍ରୋନି ଗଳା ଗଦ୍‌ଗଦ୍ ହୋଇ ଉଠିଲା ।

'ହେ ଯୀଶୁ ! - - - - ' ଅନ୍ନା ଆକାଶକୁ ଅନାଇ ଏ କଥା କହିଲା ।

## 25

କେରଳର କୋଲ୍ଲବର୍ଷମ୍ । ଗ୍ରାମରେ କନ୍ୟା ମାସର ସମୟ । (ସେ ହେଉଛି 1938 ମସିହା ସେପ୍ଟେମ୍ବର ମାସର କଥା) । ଦ୍ୱିତୀୟ ବିଶ୍ୱଯୁଦ୍ଧର କଳାମେଘ ଆକାଶରେ ଛାଇ ହୋଇ ରହିଥିଲା । ଭାରତ ମଧ୍ୟ ସ୍ୱାଧୀନତା ଆନ୍ଦୋଳନରେ ଜଳି ଉଠୁଥିଲା । ଭାରତର ବିଭିନ୍ନ ରାଜ୍ୟ ତଥା ଗଡଜାତ ଅଞ୍ଚଳଗୁଡିକରେ ମଧ୍ୟ ଏ ଆନ୍ଦୋଳନ ବ୍ୟାପି ଯାଇଥିଲା । ବିଶେଷକରି ତ୍ରିଭାଙ୍କୁର ଅଞ୍ଚଳରେ ଏହା ତ ତୋଫାନ ପରି ମାତି ଯାଇଥିଲା । ସେଇ ଝଡର କେନ୍ଦ୍ରବିନ୍ଦୁ ଥିଲା ଆଲପୁଷା ସହର । ସେ ଆନ୍ଦୋଳନର ନେତୃତ୍ୱ ଦେଇଥିଲେ ସ୍ୱୟଂ ଶ୍ରମିକ ଶ୍ରେଣୀ ।

ସେ ଦିନ ତ୍ରିଭାଙ୍କୁର ମହାରାଜାଙ୍କର ବାର୍ଷିକ ଜନ୍ମଉତ୍ସବ ଥିଲା । ସେ ଦିନଟିକୁ ତ୍ରିଭାଙ୍କୁରର ଲୋକମାନେ ସବୁଠାରୁ ବଡ ପୁଣ୍ୟ ପର୍ବରୂପେ ପାଳନ କରୁଥିଲେ । ସେ ଦିନ କୁଡିଆଠାରୁ ଆରମ୍ଭକରି ରାଜମହଲ ପର୍ଯ୍ୟନ୍ତ ଏବଂ ବିଦ୍ୟାଳୟ ଠାରୁ ଆରମ୍ଭ କରି ରାଜମହଲ ପର୍ଯ୍ୟନ୍ତ ସବୁସ୍ଥାନରେ ମହାରାଜଙ୍କର ଜୟଗୀତି ଗାନ କରାଯାଉଥିଲା । କିନ୍ତୁ ସେ ବର୍ଷ ଏହି ବାର୍ଷିକ ଉତ୍ସବଟିକୁ ଆନନ୍ଦ ଉତ୍ସବ ସହକାରେ ପାଳନ କରା ଯାଇ ନଥିଲା କିମ୍ବା ରାଜାଙ୍କର ଜୟଗୀତ ଗାନ କରାଗଲା ନାହିଁ । ପ୍ରତିବଦଳରେ ଜନତା ସେ ଦିନଟିକୁ ପ୍ରତିଶୋଧ ଏବଂ ଶୋକଦିବସ ରୂପେ ପାଳନ କଲେ ।

ଯେଉଁ ଦେୱାନ ରାଜାଙ୍କର ପ୍ରତିନିଧି ହୋଇ ଶାସନ କରୁଥିଲେ, ତାଙ୍କ ବିରୁଦ୍ଧରେ ଶ୍ରମିକମାନେ ପ୍ରତିଶୋଧ ପରାୟଣ ମନୋଭାବ ନେଇ "ସାଧାରଣ ଧର୍ମଘଟ" ଘୋଷଣା କଲେ । ସେ ଦିନ କାରଖାନାର ଚିମ୍ନୀରେ ଧୂଆଁ ବାହାରିଲା ନାହିଁ । ସହରର ଆଖପାଖରୁ ଯେଉଁ ଜନସମୁଦ୍ର ସହର ଆଡକୁ ମୁହାଁଉଥିଲା, ସେହି ଶ୍ରମିକ ଶ୍ରେଣୀରେ ଜନ ସମୁଦ୍ର ପ୍ରଯତ୍ନ ଶକ୍ତିର ବଦଳରେ ସଂହାର ଶକ୍ତିର ପ୍ରତିନିଧିତ୍ୱ କରୁଥିଲା । ଗଳିରେ, ସଡକ ଓ ରାସ୍ତାରେ ଶ୍ରମିକମାନେ ହାତ ଉଠାଇ ରାଜା ଏବଂ ରାଜ୍ୟଶାସନ ବିରୁଦ୍ଧରେ ଜୋରରେ ଧ୍ୱନିମାନ ଦେଉଥିଲେ ।

ଏଣେ ସ୍ୱାଧୀନତାର ଆନ୍ଦୋଳନକୁ ପ୍ରତିରୋଧ ତଥା ଧୂଳିସାତ୍ କରିବାପାଇଁ ପ୍ରଶାସନିକ କର୍ମଚାରୀମାନେ ସହରରେ ହିଂସାତ୍ମକ ଉପକରଣମାନ ଠୁଳ କରୁଥିଲେ । ସିପାହୀ ମାନଙ୍କର ଗାଡିଗୁଡିକ ସବୁବେଳେ ସହରର ଚତୁର୍ଦ୍ଦିଗରେ ପ୍ରଦକ୍ଷିଣ କରୁଥିଲା । ପୋଲିସବାଲା ଲାଠି ଧରି ପ୍ରତି ଗଳିରେ ପହରା ଦେଉଥିଲେ । କିନ୍ତୁ ଶ୍ରମିକ ଶ୍ରେଣୀ ଲାଠି ଏବଂ ବନ୍ଧୁକର ବ୍ୟବହାରର ପ୍ରତିବାଦ ଜଣାଇବା ସଙ୍ଗେ ସଙ୍ଗେ ତା ବିରୁଦ୍ଧରେ ଧ୍ୱନିମାନ ମଧ୍ୟ ଦେଉଥିଲେ ।

ସେଇ ପତଲାଲୋକଟି ବିଜୁଳି ପରି ସବୁ ସ୍ଥାନରେ ପ୍ରତୀୟମାନ ହେଉଥିଲା । ଥରେ ଦେଖା ଦେଇ ଲୁଚିଯିବା, ପୁଣି ଦେଖାଦେବା, ପୁଣି ଲୁଚିବା - ଏହିପରି ଲୁଚକାଳି ଖେଳମଧ୍ୟରେ ସେ ସମସ୍ତଙ୍କ ଦେହରେ ତୋଫାନର ଶକ୍ତି ଠୁଳ କରି ଦେଉଥିଲା । ତାର ଏହିପରି ଯାଦୁ ଭଳି କାଣ୍ଡ ଦେଖି କି ବନ୍ଧୁ କି ଶତ୍ରୁ ସମସ୍ତେ ଆଶ୍ଚର୍ଯ୍ୟ ।

ଅନ୍ନା ଏକୁଟିଆ ଘରର ବାରଣ୍ଡାରେ ବସିରହି ରାସ୍ତାକୁ ଅନେଇ ରହିଥିଲା । ଗତ ତିନିଦିନ ଧରି ତାର

ଭାଇମାନେ ଘରକୁ ଆସି ନାହାନ୍ତି । ଗତ ତିନି ଦିନ ହେଲା ସେ କିଛି ଖାଇ ନାହିଁ । ସେ ଆଦୌ ଶୋଇ ବି ନ ଥିଲା । ସେ ପ୍ରତ୍ୟେକ ଦିନ ରାତିରେ ଦୀପ ଜଳାଇ - ଭାଇମାନଙ୍କର ପ୍ରତୀକ୍ଷାରେ ବସି ରହୁଥିଲା । ଖାଇବାକୁ ଯେ କିଛି ନଥିଲା ତାହା ନୁହେଁ, କିନ୍ତୁ ସେ କିଛି ନ ଖାଇ ଭାଇମାନଙ୍କର ଆସିବା ପଥକୁ ଚାହିଁ ରହିଥିଲା ।

ବେଲାୟୁ ଧନର ମା ତଥା ଆଉ କେତେଜଣ ପଡୋଶୀଙ୍କ ଠାରୁ ସେ କେତେକ କଥା ଶୁଣୁଥିଲା । ସେ ଶାସନ ବ୍ୟାପାର ବିଷୟରେ ବିଶେଷ କିଛି ଜାଣି ନଥିବାରୁ, ସେ କଥାଗୁଡିକର ଅର୍ଥ ମଧ୍ୟ ଭଲଭାବରେ ଜାଣି ନଥିଲା, ସେ ବୁଝିବାକୁ ଚେଷ୍ଟା ମଧ୍ୟ କରୁ ନଥିଲା । ତାର ଦୁଇ ଭାଇ ପ୍ରତ୍ୟେକଦିନ ଘରକୁ ଆସନ୍ତୁ ଏବଂ ତା ପ୍ରତି କୌଣସି ବିପତ୍ତି ନ ଆସୁ ତାହାହିଁ ଏକମାତ୍ର ତାର ଇଛା ଥିଲା ।

ଗତି ତିନି ଦିନ ଧରି ସେ ରାତିରେ ଦୀପ ଲଗାଇ ତା ଭାଇମାନଙ୍କୁ ପ୍ରତୀକ୍ଷା କରୁଥିଲା । ସେତିକିବେଳେ ସେଇ ପତଳା ଲୋକ ଦିନେ ରାତିରେ ଘର ଉପରକୁ ଯାଇ ତାକୁ ଚାହିଁଛି ବୋଲି ସେ ସ୍ୱପ୍ନ ଦେଖିଲା । ସେ ମଧ୍ୟ ତାକୁ ଚାହିଁଥିଲା । ଏଭଳି ଅବସ୍ଥାରେ ଅନ୍ନା ହଠାତ୍ ଉଠି ବସିଲା । କିନ୍ତୁ ତତ୍‌କ୍ଷଣାତ୍ ସେ ଲୋକଟି ଉଭେଇ ଯାଏ । ଗତକାଲି ରାତିରେ ସେ ଯେତେବେଳେ ଢୁଳଉଥିଲା, ସେତେବେଳେ ସେ ପଚାରିଲା -

'ମୋ ବଡଭାଇ ଏବଂ ସାନଭାଇ କୋଉଠି ଅଛନ୍ତି ?'

'ଆସିବେ' - କେବଳ ଏତିକି କହି ସେଇ ପତଳା ଲୋକଟି ହଠାତ୍ ଅଦୃଶ୍ୟ ହୋଇଗଲା ।

ସକାଳ ଓଳିକୁ ଏଣ୍ଟୋନି ଗେଟ୍ ଡେଇଁ ଭିତରକୁ ଆସିଲା । ଅନ୍ନା ହଠାତ୍ ଚମକି ଉଠି ପଡିଲା । ସେ କହିଲା - 'ତମମାନଙ୍କୁ ଅପେକ୍ଷା କରି ଆଖିରୁ ପାଣି ମରିଗଲାଣି, ସାନଭାଇ କୋଉଠି ?'

'ସେ କ'ଣ ଆସିନାହିଁ ?'

'ନାଁ ତ ।'

'ତାର ଏଠାନେ ରହିବା ଉଚିତ ବୋଲି ମୁଁ ତାକୁ କହିଥିଲି ।'

'ତାହେଲେ ସେ କାହିଁକି ଆସିଲା ନାହିଁ ?'

ଏଣ୍ଟୋନି ଗଭୀର ଭାବରେ ଚିନ୍ତିତ ହୋଇ ପଡିଲା । ଅନ୍ନା ପଚାରିଲା -

'ବଡ ଭାଇ କ'ଣ ଭାବୁଛନ୍ତି ?'

'ଭାବୁଛି - - - ଭାବୁଛି - - - ଯେ - - '

'ବଡ ଭାଇ, ତମେ କାହିଁକି ଏଠାକୁ ଆସୁ ନଥିଲ ?'

'ଏଇଥିପାଇଁ ଆସୁ ନଥିଲି ଯେ - - ଆସି ନ ପାରିବାର କାରଣ - - - - -'

'ତମେ ପୁରା କଥାଟା କହୁନ କାହିଁକି ?'

'ଏଇଥିପାଇଁ କହୁନାହିଁ ଯେ - - - ପୁରା କଥା ନ କହିବାର କାରଣ - - - -' — ସେ ବୁଲି ପଡି କହିଲା - 'ମୁଁ ବର୍ତ୍ତମାନ ଆସୁଛି ।'

'ସକାଳ ପହରୁ ପୁଣି କୁଆଡେ ଚାଲିଲ ?'

'ଯାଉଛି - - - । ହଁ, ମୁଁ ଶୀଘ୍ର ଫେରି ଆସିବି ।'

ସେ ଗଳି ଆଡକୁ ଯେମିତି ସ୍ୱପ୍ନାବିଷ୍ଟ ହୋଇ ଚାଲିଗଲା ।

ଅନ୍ନା ଗୋଟିଏ ଦୀର୍ଘଶ୍ୱାସ ଛାଡିଲା । ଗଳିରେ ଶବ୍ଦ ଶୁଣାଯିବାରୁ ସେ କାନ ଡେରି ଶୁଣିଲା ।

'କିଏ ସେ ?'

'ମୁଁ ।'

'ରକ୍କି ? ତମେ କୋଉଠି ଥିଲ ?'

'ମୁଁ - - - - ମୁଁ ତ - - - - - - '

'ମୁଁ କହିଛି କି ନାହିଁ, ତମେ ତା ସହିତ ଜମା ସାଙ୍ଗ ହେବ ନାହିଁ ।'

'ତାର ସାଙ୍ଗହେବା ଠିକ୍ ନୁହେଁ କାହିଁକି ?'

'ହାଣ-କାଟ ଠିକ୍ ଆମକୁ ପୋଷାଏ ନାହିଁ । ସେ ସବୁବେଳେ ଅନ୍ୟକୁ ମାରିବାକୁ ଆଉ ମ ରିବାକୁ ପ୍ରସ୍ତୁତ । ତା ସଙ୍ଗେ ମିଶିବାଟା, ମୋତେ ଜମା ଭଲ ଲାଗେ ନାହିଁ ।'

'ମୋ ନିଜ କଥା ମୁଁ ନିଜେ ବୁଝିନେବି ।' - ରକ୍କି ଦୃଢ଼ ସ୍ୱରରେ ଏକଥା କହିଲା ।

ଅନ୍ନା ଗଳି ଆଡକୁ ଦୌଡିଗଲା । ସେ ପଚାରିଲା -

'ସାନଭାଇ, ତମେ କାହିଁକି ଏମିତି କହିଲ ?'

ଏଣ୍ଟୋନି ଅନ୍ନାକୁ ଆକଟ କରି କହିଲା -

'ତୁ ଯା ! ତୁ ଘରକୁ ଯା !'

ଏଣ୍ଟୋନି ମୁଣ୍ଡ ନୁଆଁଇ ଚାଲିଗଲା । ରକ୍କି ମୁଣ୍ଡ ଉଠାଇ ବିପରୀତ ଦିଗକୁ ଗଲା । ଅନ୍ନା ଗୋଟିଏ ଦୀର୍ଘଶ୍ୱାସ ଛାଡିଲା । ସେ ଘରକୁ ଚାଲିଗଲା ।

ଅନ୍ନା ଅଗଣାରେ ଛିଡା ହୋଇ ରହିଥିଲା । ରକ୍କି ଯେ ଏଣ୍ଟୋନି ସହିତ ଗତ କେଇଦିନ ହେଲା ଏଭଳି ଧୃଷ୍ଟତାର ସହିତ କଥାବାର୍ତ୍ତା କରୁଥିଲା ସେ କଥା ସେ ଦେଖୁଥିଲା । ରକ୍କିକୁ ସେଇ ପତଳା ଲୋକର ନିକଟରୁ କିଭଳି ଅଲଗା କରାଯିବ ସେ ଚେଷ୍ଟା ମଧ୍ୟ ଏଣ୍ଟୋନି କରୁଥିବାର ଅନ୍ନା ଦେଖିପାରିଛି । କିନ୍ତୁ ସେଇ ପତଳା ଲୋକକୁ ''ମାରିବା ଏବଂ ମରେଇବା'' ଲୋକ ବୋଲି କାହିଁକି କୁହାଯାଏ ସେ କଥା ଅନ୍ନା ସେପର୍ଯ୍ୟନ୍ତ ଆଦୌ ବୁଝି ପାରି ନଥିଲା । ସେ ଲୋକ ବାସ୍ତବରେ କଷ୍ଟ ପାଉଥିବା ଲୋକଙ୍କୁ ଯେ ଉଦ୍ଧାର କରେ ସେ କଥା ନିଜେ ଅନ୍ନା ମଧ୍ୟ ଉପଲବ୍ଧି କରିଛି ।

'କ'ଣ ସେମାନେ ଆସିଗଲେ ?'

ଶବ୍ଦ ଶୁଣି ଅନ୍ନା ବୁଲି ଅନାଇଲା । ସେ ପତଳା ଲୋକଟି ଗଳିରୁ ଥାଇ ପଚାରୁଥିଲା । ଅନ୍ନା ଉତ୍ତର ଦେଲା-

'ହଁ, ଆସିଗଲେ ।'

'ତା'ପରେ ?' - ସେ ପତଳା ଲୋକ ଅଗଣାକୁ ଆସିଗଲା ।

'ତାପରେ ଚାଲି ବି ଗଲେ ।'

ସେ ଚୁପ୍ ହୋଇ ଛିଡା ହେଲା । ଅନ୍ନା କହିଲା -

'ସମସ୍ତେ କହୁଛନ୍ତି ଯେ ଲୋକଙ୍କୁ ମାରିବାକୁ ଆଉ ନିଜେ ମରିବାକୁ ଯାଉଛନ୍ତି ।'

'କିଏ ? ମୁଁ ?'

'ହଁ ।'

'ଏ କଥା କ'ଣ ତମର ବିଶ୍ୱାସ ହେଉଛି ?' - ଏ କଥା କହି ସେ ଅନ୍ନାର ଆହୁରି ପାଖକୁ ଆସିଲା !

'ନାଁ !'

'ମୁଁ କହୁଚି ଏ କଥା ସତ । ମାରିବାକୁ ଏବଂ ମରିବାକୁ ମୋର ତିଳେହେଲେ ଦ୍ୱିଧା ନାହିଁ ।' ଘାତକର ସ୍ୱର ପରି କଠୋର କଥା ତାର ।

ଅନ୍ନା ଡରିଗଲା । ସେ କହିଲା - 'ମିଛ କଥା ।'

'କିନ୍ତୁ' - ସେ ଅଧିକ ଆନନ୍ଦର ସହିତ କହିଲା -

'ମୁଁ କେବଳ ମରିବାକୁ ବା ମାରିବାକୁ ଜାଣେ ତା ନୁହେଁ, ମୁଁ ପ୍ରେମ ମଧ୍ୟ କରି ଜାଣେ ।'

ସେ ଅନ୍ନା ଆଡକୁ ହାତ ବଢାଇଲା ।

ଅନ୍ନା ମଧ୍ୟ ତାହାର ହାତକୁ ଧରିନେଲା । ଅନ୍ନାର ହାତ ଥରି ଉଠୁଥିଲା ।

## 26

ସନ୍ଧ୍ୟା ହେଲା । ସେ ଦିନ ସମୁଦ୍ର ପ୍ରତ୍ୟେକଦିନ ଅପେକ୍ଷା ଅଧିକ ଉଗ୍ରତାର ସହିତ ଗର୍ଜନ କରୁଥିଲା । ସମସ୍ତରାସ୍ତା ସମୁଦ୍ର କୂଳକୁ ପହଞ୍ଚିବାର ରାସ୍ତା ହୋଇ ଯାଇଥିଲା । ଶ୍ରମିକମାନଙ୍କର ପ୍ରଯତ୍ନ ଶକ୍ତି ବୋହି ଯାଉଥିଲା। ସମୁଦ୍ର କୂଳରେ ମନୁଷ୍ୟମାନଙ୍କର ଆଉ ଏକ ବିରାଟ ଜନସମୁଦ୍ର ତିଆରି ହୋଇଗଲା । ଏବଂ ସେଇ ବିରାଟ ଜନସମୁଦ୍ର ବାସ୍ତବିକ୍ ସମୁଦ୍ର ଅପେକ୍ଷା ଅଧିକ ବିଶାଳ ଏବଂ ଅଗାଧ ଥିଲା ।

ଅନ୍ନା ଅଗଣାରେ ଛିଡା ହୋଇଥିଲା । ସେ ଭାବୁଥିଲା, ଯେ କୌଣସି ଘଟଣା ଘଟିପାରେ । ସେ ଘଟଣା ସହ ନିଜ ଦୁଇଭାଇଙ୍କ ଯେ ହାତ ଅଛି, ସେକଥା ସେ ନିଜେ ମଧ୍ୟ ଜାଣିଥିଲା । ସେଇ ପତଳା ଲୋକ ? କେବଳ ତା ବିଷୟରେ ସେ କିଛି ଜାଣି ନଥିଲା ।

ବେଲାୟୁଧନ୍‌ର ମା ତାକୁ ଗଳିକୁ ଡାକି ପଚାରିଲା -

'ଝିଅ, ତୁ ସମୁଦ୍ରକୂଳ ଆଡକୁ ଆସୁଛୁ ତ ?'

'ହଁ, ମୁଁ ଆସୁଛି' - କହି ସେ ଶୀଘ୍ର କୁଡିଆର ଦ୍ୱାର ବାନ୍ଧି ଗଳି ଆଡକୁ ଦୌଡିଲା ।

ସେମାନେ ଜୋରରେ ଚାଲିବାକୁ ଆରମ୍ଭ କଲେ । ବେଲାୟୁଧନ୍‌ର ମା କହିଲା -

'ସିପାହୀମାନେ ପାଗଳ କୁକୁରପରି ଚାରିଆଡେ ପଇଁତରା ମାରୁଛନ୍ତି !'

'ସେମାନେ କାହିଁକି ଏଭଳି ଭାବରେ ବୁଲୁଛନ୍ତି ?'

'ଦଙ୍ଗା ହ ଙ୍ଗାମା ହବ ବୋଲି ସେମାନେ ଭାବୁଥିବେ ।'

'ଦଙ୍ଗାହଙ୍ଗାମା କରିପାରନ୍ତି ?'

'ଶ୍ରମିକମାନେ ।'

'କାହିଁକି ?'

'ଶାସନର ଅଧିକାର ଆମକୁ ମିଳିବା ଉଚିତ ବୋଲି ଆମେ କହୁଛୁ ।'

'କ'ଣ ସେମାନେ ଏହାକୁ ମାନିନେବେ ?'

'ନାଁ । ସେଇଥିପାଇଁ ତ ଏ ଝଗଡା, ଗଣ୍ଡଗୋଳ ।'

ଚାରିଆଡେ ତୋଫାନ ବୋହିଗଲା । ଦୁହେଁ ରାସ୍ତାର ଗୋଟିଏ ପାଖରେ ଚାଲୁଥିଲେ । ଛକ ଉପରେ ଛିଡା ହୋଇଥିବା ପୋଲିସବାଲାଙ୍କ ମଧ୍ୟରୁ ଜଣେ ଅନ୍ନାକୁ ପଚାରିଲା -

'ତୁ ରକ୍ଷିର ଭଉଣୀ ତ ?'

ଅନ୍ନା ଉତ୍ତର ଦେଲାନାହିଁ । ସେ ଚୋରା ଚାହାଣୀରେ ତା ଆଡକୁ ଅନେଇଲା । ଅନ୍ନା ଚମକିଗଲା । ଏ ହେଉଛି କିଛିଦିନ ତଳେ ଅନ୍ନାକୁ ଧରିବାକୁ ଆସିଥିବା ସେଇ ପୋଲିସବାଲା । ସେଥିମଧ୍ୟରୁ ଜଣେ ପୋଲିସବାଲା ଆଉ ଜଣକୁ ପଚାରିଲା - 'କ'ଣ ସେ ତମର ପରିଚିତ ?'

'ହଁ ।'

'କ'ଣ ଭଲ ?'

'କିଛି ଯାଏ ଆସେ ନାହିଁ ।'

ଅନ୍ନାର ହାତ ଧରି ବେଲାଯ୍ୟୁଧନର ମା ଶୀଘ୍ର ଶୀଘ୍ର ଚାଲିବାକୁ ଆରମ୍ଭ କଲା ; ପୋଲିସବାଲା ନିଜ ବନ୍ଧୁଙ୍କୁ କହୁଥିଲା -

'ଚାଲ, ତାର ପିଛା କର, ପାଇଯିବୁ ।'

ବେଲାଯ୍ୟୁଧନର ମା ଅନ୍ନାକୁ ପଚାରିଲା -

'ଝିଅ, ତୁ କ'ଣ ତାକୁ ଜାଣିଛୁ ?'

'ହଁ, ଦିନେ ରାତିରେ ସେ ମୋ ଘରକୁ ଆସି ମୋତେ ଧରିବାକୁ ଚେଷ୍ଟାକରିଥିଲା ।'

'ଧରିଥିଲା ?'

'ନା, ଧରି ପାରି ନଥିଲା । ସେଇ ପତଳା ଲୋକଟି ମୋତେ ସେ ଦିନ ବଞ୍ଚାଇଥିଲା ।'

'ପବନ ତ ସବୁ ଗଣ୍ଡଗୋଳର ମୂଳ, ସେ ତ ମୋ ପୁଅମାନଙ୍କୁ ମାଡ ମରାଇଥିଲା । '

'ଏଁ !'

ହଠାତ୍ ଏକ ଭୟଙ୍କର ଶବ୍ଦ ! — ସମୁଦ୍ର ଯେପରି କୂଳକୁ ଆକ୍ରମଣ କରୁଛି, ସେପରି ଜଣା ପଡୁଥିଲା । ଗର୍ଜନ - ତର୍ଜନ !-

ବାଘ, ସିଂହ, ହାତୀ ସବୁ ମିଶି ଗର୍ଜନ କରୁଥିବା ପରି ଜଣାପଡୁଥିଲା ।

କ୍ରନ୍ଦନ ! - ମଡା କାନ୍ଦଣା - ଏବଂ ଚିତ୍କାର ଶୁଣାଗଲା ! କ'ଣ କ'ଣ ଭାଙ୍ଗୁଛି, କ'ଣ ସବୁ ଧସେଇ ପଶୁଛି କିଏ ଜାଣେ !

ଜୋରରେ ଶବ୍ଦ ଶୁଣାଗଲା ! ବେଲାୟୁ ଧନ୍‌ର ମା ଅନ୍ନାର ହାତ ଧରି ରାସ୍ତା କଡ଼ର ଗୋଟିଏ କୋଣରେ ଛିଡ଼ା ହୋଇ ରହିଲା । ଅନ୍ନା ପାଗଳୀ ପରି କହୁଥିଲା -

'ମୋର ଦୁଇଭାଇ ! - - - - ସେମାନଙ୍କୁ ମାରି ପକାଇଲା ? ମାରି ପକାଇଲା ?'

ସେ ହାତ ଛଡ଼ାଇ ନେଇ ଦୌଡ଼ି ପଳାଇବାର ଚେଷ୍ଟା କରୁଥିଲା ।

ବେଲାୟୁ ଧନ୍‌ର ମା ତାର ହାତକୁ ଆହୁରି ଜୋରରେ ଧରି ତାକୁ ବୁଝାଇବାକୁ ଲାଗିଲା ।

'ଯାଆନା, ଝିଅ ଯାଆନା !'

'ବହୁତ ଲୋକ ଆଗକୁ ମାଡ଼ି ଚାଲି ଆସୁଥିଲେ । ବେଲାୟୁ ଧନର ମା ଅନ୍ନାକୁ ରାସ୍ତାର ଗୋଟେ ପାଖକୁ ଟାଣି ନେଇଗଲା ।'

ପ୍ରାୟ ଦଶ କୋଡ଼ିଏ ଜଣ ଲୋକ ମୃତ୍ୟୁ ଭୟରେ ଦଉଡ଼ି ପଳାଉଥିଲେ । ସେଥିମଧ୍ୟରୁ ଜଣେ ରାସ୍ତାରେ ଝୁଣ୍ଟି ତଳେ ପଡ଼ିଗଲା । ଅନ୍ୟମାନେ ତାକୁ ଉଠାଇ ପୁଣି ଦୌଡ଼ି ପଳାଇବାକୁ ଆରମ୍ଭ କଲେ ।

'ରକ୍ତ ! - - - - - ରକ୍ତ ବୋହି ଯାଉଛି । ଦେଖିଲ ?' - ଅନ୍ନା ପଚାରିଲା ।

'ଚୁପ୍ ରହ ! - - - - ମୋ ସହିତ ଆ ।'

ସେମାନେ ଦୁଇଜଣ ବହୁତ ଜୋରରେ ଚାଲିବାକୁ ଆରମ୍ଭ କଲେ ।

ସେମାନେ କାଠ ପୋଲ ଦ୍ୱାରା ନାଳ ପାର ହୋଇଗଲେ ।

'ଢୋ ! ଢୋ ! ଢୋ !' – ଆକାଶରେ ଏହି ଶବ୍ଦ ପ୍ରତିଧ୍ୱନିତ ହୋଇ ଉଠୁଥିଲା ।

'ସିପାହୀମାନେ ଗୁଳି ଚଳାଉଛନ୍ତି' - ବୋଲି ବେଲାୟୁ ଧନର ମା କହିଲା ।

'ସେମାନେ ସମସ୍ତଙ୍କୁ ମାରିପକାଉଛନ୍ତି' ବୋଲି - ଅନ୍ନା ସମର୍ଥ ନ କରି କହିଲା ।

'ଆସ' - ବେଲାୟୁ ଧନ୍‌ର ମା ଅନ୍ନାର ହାତ ଧରି ଦୌଡ଼ିବାକୁ ଆରମ୍ଭ କଲା ।

ସେତେବେଳକୁ ଗୁଳିର ଶବ୍ଦ ଆଖପାଖରେ ପ୍ରତିଧ୍ୱନିତ ହୋଇ ଉଠୁଥିଲା ।

* * *

ଅଧରାତି ହେଲା । ସହରରେ ଭୟାନକ ନୀରବତା ବିରାଜମାନ କରିଥିଲା । କେବଳ ସାମରିକ ବାହିନୀ ଓ ପୋଲିସର ଜୋରରେ ଗାଡ଼ି ଚାଲିବାର ଶବ୍ଦ, ହର୍ଣ୍ଣ ବଜାଇବାର ଶବ୍ଦ, ନୀରବତାକୁ ଭଙ୍ଗ କରୁଥିଲା । ଅନ୍ନା ଏକୁଟିଆ ଅଗଣାରେ ଛିଡ଼ା ହୋଇଥିଲା । ଗଳିରେ ଯେମିତି କେହି ଏ ଆଡ଼କୁ ଚାଲିଆସୁଛି ବୋଲି ତାକୁ ଜଣାପଡ଼ିଲା । ସେ ସେଦିଗକୁ ଆଉଟିକେ ମନଦେଇ ଶୁଣିଲା । ପୁଣି ପଚାରିଲା -

'କିଏ ସେ ?' -

'ମୁଁ' - ରଙ୍କି ଅଗଣାକୁ ଆସିଲା ।

'ବଡ ଭାଇ କୋଉଠି ଅଛନ୍ତି ?'

'ଏଁ ?'

'ବଡଭାଇଙ୍କୁ ଦେଖି ନାହଁ ?'

'ନାଁ !' - ସେ ଅଣ୍ଟାରୁ ଦିଆସିଲି ବାହାରକରି ପୁଣି କହିଲା –

'ଦୁଇ-ତିନିଟା ଦିଆସିଲି କାଠି କ'ଣ ହେବ ?'
'ବିଡ଼ି ଲଗାଇବା ପାଇଁ ଦରକାର ।'
'ସାନଭାଇ, ତମେ କ'ଣ ଖାଇବନି ?'
'ମୁଁ କହୁଛି, ଦିଆସିଲି କାଠି ନେଇ ଆସିଲୁ ' -
ସେ ଆଦେଶର ସ୍ୱରରେ କହିଲା ।

ଅନ୍ନା ଭିତରକୁ ଗଲା ଏବଂ ସେ ଦିଆସିଲି କାଠି ନେଇ ଆସିଲା । ରଙ୍କି ସେ ଦିଆସିଲି କାଠି ନେଇ ଗଳି ଆଡେ ଆଗେଇ ଚାଲିଲା - ଅନ୍ନା ତାକୁ ପଚାରିଲା -

'ପୁଣି କୁଆଡେ ଯାଉଛ ?'
ସେ ଉତ୍ତର ଦେଲା ନାହିଁ । ରଙ୍କି ସେଇ ଅନ୍ଧକାର ଭିତରେ ଖୁବ୍ ଶୀଘ୍ର ଉଭେଇଗଲା ।
ଅନ୍ନା ବାରଣ୍ଡାରେ ଯାଇ ବସିଲା । ବର୍ତ୍ତମାନ ପୁଣି କେହି ଗଳିରେ ଆସିବାର ଶବ୍ଦ ଶୁଣାଗଲା । ଅନ୍ନା ଉଠି ଅଗଣା ଉପରକୁ ଆସିଲା ।

ଏଣ୍ଟୋନି ଅଗଣାରେ ପହଞ୍ଚିଲା । ଅନ୍ନା ପଚାରିଲା -
'କିଏ ? କ'ଣ ବଡଭାଇ କି ?'
'ହଁ ! ତୁ କାହିଁକି ଅଗଣାରେ ଆସି ଛିଡା ହୋଇଛୁ ?'
'ତମକୁ ଅପେକ୍ଷା କରୁଅଛି ?'
'ରଙ୍କି ଆସିଥିଲା କି ?'
'ଆସିଥିଲେ ଏବଂ ବର୍ତ୍ତମାନ ଦିଆସିଲି ନେଇ ଚାଲିଗଲେ ।'
'ଏଇନା ଦିଆସିଲିର କ'ଣ ଏତେ ଜରୁରୀ କାମ ଥିଲା । '
'ବିଡି ଲଗାଇବେ ବୋଲି କହୁଥିଲେ ।'
'ସେ ତ ଆଦୌ ବିଡି ପିଏ ନାହିଁ ।' ଏଣ୍ଟୋନି ଚିନ୍ତାରେ ପଡିଗଲା । ସେ ପଚାରିଲା -
'ଏଠିକୁ କ'ଣ ସେ ପବନ ଆସିଥିଲା ?'
'ନାଁ ତ ।'
କିଛି ଦୂର ସ୍ଥାନରେ ବେଶ ଉଜ୍ଜଳ ଆଲୋକ ଦେଖାଗଲା ! ଖୁବ୍ ଜୋରରେ ସେ ଆଲୋକ ଆହୁରି ଉଜ୍ଜଳ ହେଲା ଏବଂ କିଛି ସମୟପରେ ଅଗ୍ନିର ଲେଲିହାନ ଶିଖା ଦେଖାଗଲା !

'ସେ ଠକିଦେଲା !' - ଏଣ୍ଟୋନି ନିଜ ଛାତି ବାଡେଇଲା ।
ଅନ୍ନା ଉଦ୍‌ବିଗ୍ନ ହୋଇ ପଚାରିଲା –
'କଥା କ'ଣ, ବଡ ଭାଇ ! କ'ଣ ହୋଇଛି ?'
'ସେ - - - - ସେ କାରଖାନାରେ ନିଆଁ ଲଗେଇ ଦେଇଛି !'
ଡାକ, ହାକ, ଏବଂ ଚିତ୍କାରର ଶବ୍ଦ ଶୁଣିବାକୁ ମିଳିଲା, ତାପରେ ପୋଲିସ ଏବଂ ସାମରିକ ବାହିନୀର ଗାଡି ଚାଲିବାର ଏବଂ ହର୍ଣ୍ଣ ବାଜିବାର ଶବ୍ଦ ଶୁଣାଗଲା ।

ଗଳିରେ କିଛି ଲୋକଙ୍କର ଦୌଡ଼ିବାର ଶବ୍ଦ ଶୁଣାଗଲା । ପୁଣି ଅନେକ ଲୋକଙ୍କର ଗର୍ଜନ ଶବ୍ଦ । ଶେଷରେ ଗୋଟିଏ କରୁଣ ଡାକ !

'ଛୋଟ ଭାଇ ! ଛୋଟ ଭାଇ ହିଁ ଡାକୁଛି !' -- ଅନ୍ନା ଗଳି ଆଡ଼କୁ ଦୌଡ଼ିଲା ।

ଏଣ୍ଡ୍ରୋନି ତାକୁ ଅଟକାଇଲା । ସେ ତାକୁ ନେଇ ଘରେ ଗୋଟିଏ କୋଠରୀରେ ବନ୍ଦ କରିଦେଲା । ତା'ପରେ ପୁଣି କବାଟ ଠିକ୍ ଭାବରେ ବନ୍ଦ କଲା । ଶବ୍ଦ ଶୁଣି ଅନ୍ନା ବୁଝି ପାରିଥିଲା ଯେ, ଏଣ୍ଡ୍ରୋନି ହିଁ ସେ ଶବ୍ଦ ଆସୁଥିବା ଦିଗକୁ ଦୌଡ଼ୁଥିଲା ।

ଗର୍ଜନ ତର୍ଜନ ଏବଂ ଉଚ୍ଚ ସ୍ୱରରେ ଶବ୍ଦ ବେଶୀ ପରିମାଣରେ ଶୁଣାଯାଉଥିଲା । ସେ କ୍ରମେ କ୍ରମେ ଦୂର ଦୂରାନ୍ତରୁ ଧିରେ ଧିରେ ଶୁଣିବାକୁ ମିଳୁଥିଲା । ଶେଷରେ ସବୁ ଶାନ୍ତ ହେଲା । ନୀରବତା ମଧ୍ୟ ବିରାଜମାନ କଲା । ଅନ୍ନା ଦ୍ୱାର ପାଖରେ କାନ ଡେରି ଛିଡା ହୋଇଥିଲା । ଅଗଣାରେ କିଛି ଲୋକଙ୍କ ପାଦଶବ୍ଦ ଶୁଣାଗଲା । ଅନ୍ନା ଧିର ସ୍ୱରରେ ପଚାରିଲା -

'କିଏ ? ବଡ଼ଭାଇ ?'

'ହୁଁ' - ଗୋଟିଏ ଗମ୍ଭୀର ଉତ୍ତର ।

ବାରଣ୍ଡାରେ କେହି ଜଣେ ଚଢ଼ିଗଲା । କୁଡ଼ିଆର ଦ୍ୱାର ଖୋଲିଯାଇଥିଲା । ଅନ୍ନା ସେଠାରେ ଶୀଘ୍ର ଦୀପ ଲଗାଇଲା ।

କୁଡ଼ିଆର ଦ୍ୱାର ଖୋଲିଗଲା । ଖାକି ପୋଷାକ ଦେଖି ଅନ୍ନା ପଛକୁ ହଟିଗଲା । ଏକ ଲୌହ ହସ୍ତ କାନ୍ଧରେ ପଡ଼ିଲା !

'ଆଃ !' - କହି ସେ ଜୋରରେ ଚିତ୍କାର କଲା ।

ହଠାତ୍ କେହି ଜଣେ କୋଠରୀ ଭିତରକୁ ଡିଆଁମାରି ପଶିଗଲା । ଏକ ଭୀଷଣ ଗର୍ଜନ । ଏକ ମାଡ ! ଖାକି ପୋଷାକବାଲା ପଛକୁ ବୁଲି ଦେଖିଲା । ସେଇ ପତଳା ଲୋକ ହାତରେ ଗୋଟିଏ ଛୁରୀ ଧରି ତାକୁ ମାରିବାକୁ ଉଦ୍ୟତ ହେଉଥିଲା । ଖାକି ପୋଷାକବାଲା ହଠାତ୍ ଗୋଟିଏ ଧକ୍କା ଦେଇ ତାକୁ ପଛକୁ ଠେଲି ଦେଲା । ଛୁରୀ ତଳେ ପଡ଼ି ଭାଙ୍ଗିଗଲା ଏବଂ ସେ ବିଜୁଳିବେଗରେ ସେ ପତଳା ଲୋକକୁ ବୁଲି ଧରି ପକାଇଲା । ସେ ଖାକି ପୋଷାକବାଲାର ଲୌହ ମୁଷ୍ଟିରେ ତାର ହାତ ପେଷି ହୋଇଗଲା ।

ଖାକି ପୋଷାକବାଲା ବାନ୍ଧିବା ଦଉଡ଼ି ନେଇ ସେ ପତଳାଲୋକକୁ ବାନ୍ଧି ପକାଇଲା । ଦୀପ ଲିଭିଗଲା । ଅନ୍ନା ଚମକି ପଡ଼ିଲା । ପତଳା ଲୋକଟି ଉଚ୍ଚ ସ୍ୱରରେ ଗର୍ଜନ କରି ଉଠିଲା ।

'ହେ ଯୀଶୁ !' - ଅନ୍ନା ବଡ ଦୁଃଖର ସହିତ ପ୍ରାର୍ଥନା କଲା । ଏକ ଗର୍ଜନ ! ସାହସର ଏକ ପ୍ରତୀକ ।

କୁଡ଼ିଆକୁ ସମ୍ଭାଳୁଥିବା ବାଉଁଶର ଖମ୍ବ ହଠାତ୍ କଡ଼ମଡ ଶବ୍ଦ କରି ଭାଙ୍ଗି ପଡ଼ିଲା ଏବଂ ତଳେ ପଡ଼ିଗଲା । ଘରର ଛାତ ମଧ୍ୟ ତଳକୁ ଖସି ଆସିଲା !

ପୁଣି ଉଚ୍ଚ ସ୍ୱରରେ ଗୋଟିଏ ଗର୍ଜନ ''ହେ ଯୀଶୁ ।''

